# ବ୍ରହ୍ମବୈବର୍ତ୍ତ ପୁରାଣ

## ବ୍ରହ୍ମଖଣ୍ଡ

( ପ୍ରଥମ ଭାଗ )



ନୂତନ ମୁଦ୍ରଣ

ଶ୍ରୀ କ୍ଷେତ୍ରମୋହନ ପ୍ରଧାନଙ୍କ ଦ୍ୱାରା ପଦ୍ୟାନୁବାଦିତ



ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର୍

ଅଲିଶା ବଜାର କଟକ-୨

ପ୍ରାପ୍ତିସ୍ଥାନ:—ଧର୍ମଗ୍ରନ୍ଥ ଷ୍ଟୋର

ପ୍ରୋ: ପ୍ରା: ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର କଟକ-୨

ଫୋନ ନମ୍ବର—୨୪୭୯୬

ମୂଲ୍ୟ ଟ୪-୦୦

# ସୂଚୀପତ୍ର

**ବିଷୟ** **ପୃଷ୍ଠା**



ବ୍ରହ୍ମଖଣ୍ଡର ସୂଚୀପତ୍ର ସମାପ୍ତ

# ବ୍ରହ୍ମବୈବର୍ତ୍ତ ପୁରାଣ

## ବ୍ରହ୍ମଖଣ୍ଡ

### ମଙ୍ଗଳା ଚରଣ



ସୁରାଶ୍ଚ ଯକ୍ଷାଶ୍ଚ ନାଗାଶ୍ଚ ସାଧକାଃ ।
ଯମଶ୍ଚ ଦେବେଶ୍ଚ ସରସ୍ୱତୀ ତଥା ॥
ଭଜନ୍ତି ସର୍ବେ ମନବୋ ସମୀଶ୍ୱରଂ ।
ନମାମି ଭକ୍ତ୍ୟା ତମନନ୍ତ କାମଦମ୍ ॥
ଅକ୍ଷରଣମକରଶେ ଯୋ ଜଗତାଣ୍ଡଦିକାର ନମ୍ ।
ଫଳଦୋ ସର୍ବ ଭୂତାନାଂ ତଂ ବିଭୁଂ ପ୍ରଣମାମ୍ୟହମ୍ ॥
ଯୋଽସ୍ତି ତ୍ରିଗୁଣ ସଂଯୁକ୍ତଂ ନିର୍ବିକାରୋ ନିରଞ୍ଜନଃ ।
ଅନାଦିରାଦି ସର୍ବେଷାଂ ଇନ୍ଦ୍ରିୟାଣାମ ଗୋଚରଃ ॥
କାଳସ୍ୟାପି ମହାକାଳଃ ସର୍ବ ଭୂତାତ୍ମକେ ରତଃ ।
ମହାନପି ଅଣୁଶ୍ରେଷ୍ଠୈକ ଧାତାରଂ ତଂ ନମାମ୍ୟହମ୍ ॥
ନରାଃ ମୁନୀନ୍ଦ୍ରାଃ ଯତ୍ପୂଶ୍ଚ ସାଧବଃ ।
ସଦୈବ ଯୋଗେ ସ୍ଥିମିତୈଶ୍ଚ ଲୋଚନୈଃ ॥
ସ୍ୱମଞ୍ଚ ଦୃଷ୍ଟ୍ୱାପି ଭଜନ୍ତି ନା ସୁଖଃ ।
ଭଜାମି ତଂମେହ୍ୱଦ ଧାନରଞ୍ଜନମ୍ ।
ଯନ୍ନାମ ସ୍ମରଣେ ନେବ ଭବଖଣ୍ଡଂ ପ୍ରଜାୟତେ ।
ବନ୍ଦେ ତଂ ନିର୍ଗୁଣେ ଦେବଂ ନିଖିଳଂ ଭୁବନେଶ୍ୱରମ୍ ॥
ଶ୍ରୁତିସୁଖକରଞ୍ଚାପି ଶ୍ରୀକୃଷ୍ଣ ଗୁଣ କୀର୍ତ୍ତନମ୍ ।
ବେଦବ୍ୟାସ କୃତଞ୍ଚୈବ ତତ୍ ବ୍ରହ୍ମବୈବର୍ତ୍ତ ପୁରାଣମ୍ ॥
ଶୃଣୋତି ପଠତିଯଶ୍ଚ ତଥାଚ ବନ୍ଧୁମନ୍ୟତେ ।
ଇହଲୋକେ ସୁଖଂ ଭୁକ୍ତ୍ୱା ସ ଶ୍ରେଷ୍ଠଂ ଗତିମାପ୍ନୁୟାତ୍ ॥
ଓଁ ନାରାୟଣଂ ନମସ୍କୃତ୍ୟ ନରଞ୍ଚୈବ ନରୋତ୍ତମଂ ।
ଦେବୀ ସରସ୍ୱତୀଞ୍ଚୈବ ତତୋ ଜୟ ମୁଦୀରୟେତ୍ ॥

—*—

ତାହା ଶୁଣି ଗଣପତି ବୋଇଲେ ଯେ ତୁମ୍ଭେ
ଅସୁରଗ୍ରସ୍ତ ହୋଇବ ଶାପ ଦେଲୁ ଆମ୍ଭେ ।
ସେ ଅନ୍ତରେ ପୁଣି ବୃକ୍ଷ ସ୍ୱରୂପ ହୋଇବ
ଆମ୍ଭର ବଚନ ମଧ୍ୟ ଅନ୍ୟଥା ନୋହିବ ।
ଏମନ୍ତ ଶାପ ଦେବାର ଶୁଣିଣ ତୁଳସୀ
ଭକ୍ତିରେ ଗଣପତିଙ୍କ ସମୀପରେ ବସି ।
ରୋଦନ କରି ତାହାଙ୍କୁ ଅନୁନୟ କଲେ
ତା ଦେଖି ଶ୍ରୀ ଗଣେଶ୍ୱର ପ୍ରସନ୍ନ ହୋଇଲେ ।
ବୋଇଲେ ହେ ମାତ ତୁମ୍ଭେ ନ ହୁଅ କାତର
ବୃକ୍ଷରୂପେ ଯେବେ ମର୍ତ୍ତ୍ୟେ ହେବ ଅବତାର ।
ତୁମ୍ଭ ପତ୍ର ହେବ ସବୁ ପୁଷ୍ପରୁ ଅଧିକ
ଆଦରେ ହେବେ ପ୍ରଭୁ ଲକ୍ଷ୍ମୀଙ୍କ ନାୟକ ।
କଳାଂଶରେ ନାରାୟଣ ପ୍ରିୟା ତୁମ୍ଭେ ହେବ
ବିଶେଷରେ ଶ୍ରୀକୃଷ୍ଣଙ୍କ ପ୍ରୀତି ବଢ଼ାଇବ ।
ସକଳ ଦେବେ କରିବେ ତୁମ୍ଭଙ୍କୁ ଆଦର
କେବଳ ମୁଁ ନ ଛୁଇଁବି ବୋଲି ମନେକର ।
ଏହିରୂପ କହି ସୁରଶ୍ରେଷ୍ଠ ଗଣପତି
ବଦରିକା ଆଶ୍ରମକୁ ଗଲେ ସେ ତ୍ୱରିତି ।
ତପସ୍ୟା କରିବା ପାଇଁ ହେଲେ ତତ୍ପର
ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ ନିରନ୍ତର ।
ତୁଳସୀ ଦୁଃଖିତ ହୋଇ ଆପଣାର ମନେ
ତପସ୍ୟା କରିବାପାଇଁ ଚଳିଲେ ବହନେ ।
ପୁଷ୍କର ତୀର୍ଥକୁ ଯାଇ ସଂଯତ ଭାବରେ
ଲକ୍ଷେ ବରଷ ପର୍ଯ୍ୟନ୍ତ ରହି ନିରାହାରେ ।
ତପସ୍ୟା କରିଣ ଦିନରାତି କଟାଇଲେ
ସେ ଅନ୍ତେ ମୁନିଙ୍କ ଶାପ ପୁଣି ସେ ପାଇଲେ ।
ପୂର୍ବେ ତ ଗଣେଶ ଶାପ ପାଇଥିଲେ ଯଥା
ସେ ସକାଶୁ ହେଲେ ଶଙ୍ଖଚୂଡ଼ ପ୍ରିୟବନିତା ।
ପୁଣି ଶଙ୍ଖଚୂଡ଼ ବୀର କେତେକାଳ ଅନ୍ତେ
ଶଙ୍କର ଶରରେ ମରି ସ୍ୱର୍ଗପୁର ଯାନ୍ତେ ।
ସେ ତୁଳସୀ ଗୋଟି ବୃକ୍ଷରୂପ ହୋଇକରି
ନାରାୟଣ ଦେବଙ୍କର ହେଲେ ମନୋହାରୀ ।

ପ୍ରଣାମ କରିଣ ଶିବ ଦୁର୍ଗା ଗଣେଶଙ୍କୁ
ତପ ଲାଗି ଧର୍ମ୍ମ ଗ୍ରାମ ଗମିଲେ ବଣକୁ ।
ଯେ ଦିନୁ ସକଳ ଜନେ ପୂଜିତ ହୋଇଲେ
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କୁ କ୍ଷଣେମାତ୍ର ନ ଭୁଲିଲେ ।
ଶିବ ପାର୍ବତୀଙ୍କ ପାଶେ ରହିଲେ ଗଣେଶ
କହିଲେ ନାରଦଙ୍କର ଆଗେ ଋଷିଶ୍ରେଷ୍ଠ ।
ଗଣେଶଖଣ୍ଡ ଏଠାରେ ହୋଇଲା ସମାପ୍ତ
ଶୁଣ ଆହେ ସାଧୁଜନେ ହୋଇକରି ଶାନ୍ତ ।
ଭକ୍ତିଭରେ ଏହାକୁ ଯେ କରଇ ଶ୍ରବଣ
ରାଜସୂୟ ଯୋଗଫଳ ଲଭକରେ ଜାଣ ।
ଅପୁତ୍ରିକ ଜନ ଯେବେ ପ୍ରତ୍ୟହ ପଢ଼ଇ
ଗଣେଶ ସମାନ ପୁତ୍ର ପ୍ରାପତ ହୁଅଇ ।
ଅଷ୍ଟ ଐଶ୍ୱର୍ଯ୍ୟ ପ୍ରାପତ ହୁଅଇ ତାହାର
ଆବର ଦୀର୍ଘାୟୁ ହୋଇ ବଞ୍ଚଇ ମର୍ତ୍ତ୍ୟର ।
ବନ୍ଧ୍ୟା ରମଣୀଏ ଯେବେ ଏହାକୁ ଶୁଣିବେ
ପୁତ୍ର ପୌତ୍ରୀ କୋଳେ ଘେନି ସୁଖେ ବିଳସିବେ
ଧନ ଧାନ୍ୟରେ ଭଣ୍ଡାର ହୋଇବ ସମ୍ପୂର୍ଣ୍ଣ
ଦୟାକରିବେ ତାହାଙ୍କୁ ବ୍ରହ୍ମ ସନାତନ ।
ଜଗତ ଜନନୀଙ୍କର ପାଦ ଅନୁସରି
ଲେଖିଲି ଏ ଗ୍ରନ୍ଥ ମୁହିଁ ଅନୁଧାନ କରି ।
ସ୍ୱଭାବେ ଅଜ୍ଞାନଜନ କିଛି ନ ଜାଣଇ
ସାଧୁମାନଙ୍କ ଗହଣେ କେବେଁ ବସିନାହିଁ ।
ଯଦ୍ୟପି ଏଥିରେ ତ୍ରୁଟି ମାନ ରହିଥିବ
ଅପାରି କରୁଣା ଗୁଣେ ମୋତେ କ୍ଷମାଦେବ ।
ଏଠାରେ ଗଣେଶଖଣ୍ଡ ହୋଇଲା ସମ୍ପୂର୍ଣ୍ଣ
ଗାଡ଼ି ଛନ୍ଦେ ବିରଚିଲି କ୍ଷେତ୍ରବାସୀ ହୀନ ।
ଭିନ୍ନ ଭିନ୍ନ ଭଣ୍ଡାରୁ ସ୍ଥା କରିଣ ଗ୍ରହଣ
ଉତ୍କଳ ଭାଷାରେ ଅନୁବାଦ କଲି ଜାଣ ।
ଜଗତ ଜନନୀ ସେ ଉମାପୟଙ୍କ ପଦରେ
ମଥାନତ କରି ଜଣାଉଛି ଭକ୍ତିଭରେ ।
ଯେମନ୍ତ ଏ ଗ୍ରନ୍ଥ ସଦା ହୋଇବ ଆଦୃତ
ଏତିକି ମାଗଇ କ୍ଷେତ୍ରବାସୀ ଯୋଡ଼ହାତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ନାରାୟଣଙ୍କ ଦ୍ୱାରା ତୁଳସୀ ବୃତ୍ତାନ୍ତ ବର୍ଣ୍ଣନେ
ନାମ ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।

—*—

# ବ୍ରହ୍ମବୈବର୍ତ୍ତ ପୁରାଣ

## ବ୍ରହ୍ମଖଣ୍ଡ

### ମଙ୍ଗଳା ଚରଣ



ସୁରସ୍ତ ଯକ୍ଷଶ୍ଚ ନରସ୍ତ ସାଧକାଃ ।
ଯମସ୍ତ ଦେବେସ୍ତ ସରସ୍ୱତୀ ତଥା ॥
ଭଜନ୍ତି ସର୍ବେ ମନବୋ ସମୀଶ୍ୱରଂ ।
ନମାମି ଭକ୍ତ୍ୟା ତମନନ୍ତ କାମଜମ୍ ॥
ଅକ୍ଷରଣମକଳରେ ଯୋ ଜଗତାଣ୍ଡଦକାର ନମ୍ ।
ପଳକୋ ସର୍ବ ଭୂତାନାଂ ତଂ ସ୍ୱଭୂଂ ପ୍ରଣମାମ୍ୟହମ୍ ॥
ଯୋତ୍ର ତ୍ରିଗୁଣ ସଂଯୁକ୍ତଂ ନିର୍ବିକାରେ ନିରଞ୍ଜନଃ ।
ଅନାଦିରାଦି ସର୍ବେଷାଂ ଇନ୍ଦ୍ରିୟାଣାମ ଗୋଚରଃ ॥
କାଳସ୍ତାପି ମହାକାଳଃ ସର୍ବ ଭୂତସ୍ଥତେ ରତଃ ।
ମହାନପି ଅଣୁଶ୍ଚୈବ ଧାତାରଂ ତଂ ନମାମ୍ୟହମ୍ ॥
ନରାଃ ମୁନୀନ୍ଦ୍ରାଃ ଯତ୍ପ୍ରେକ୍ଷ୍ୟ ସାଧବଃ ।
ସଦୈବ ଯୋଗେ ସ୍ତିମିତୈସ୍ତ ଲୋଚନୈଃ ॥
ସ୍ୱମଞ୍ଚ ଦୃଷ୍ଟ୍ୱାପି ଭଜନ୍ତି ନା ସୁଖଃ ।
ଭଜାମି ତଂମେହ୍ନଦ ଧାନରଞ୍ଜିନମ୍ ।
ଯନ୍ନାମ ସ୍ମରଣେ ନୈବ ଭବଖଣ୍ଡଂ ପ୍ରଜାୟତେ ।
ବନ୍ଦେ ତଂ ନିର୍ଗୁଣେ ଦେବଂ ଅଖିଳଂ ଭୁବନେଶ୍ୱରମ୍ ॥
ଶ୍ରୁତିସୁଖକବଞ୍ଚାପି ଶ୍ରୀକୃଷ୍ଣ ଗୁଣ କୀର୍ତ୍ତନମ୍ ।
ବେଦବ୍ୟାସ କୃତଂଶ୍ରୈ ତତ୍ ବ୍ରହ୍ମବୈବର୍ତ୍ତ ପୁରାଣମ୍ ॥
ଶୃଣୋତି ପଠନ୍ତିଯସ୍ତ ତଥାଚ ବନ୍ଧମନ୍ୟତେ ।
ଇହଲୋକେ ସୁଖଂ ଭୁକ୍ତ୍ୱା ସ ଶ୍ରେଷ୍ଠଂ ଗତିମାପ୍ନୁୟାତ୍ ॥
ଓଁ ନାରାୟଣଂ ନମସ୍କୃତ୍ୟ ନରଞ୍ଚୈବ ନରୋତ୍ତମଂ ।
ଦେବୀ ସରସ୍ୱତୀଞ୍ଚୈବ ତତୋ ଜୟ ମୁଦୀରୟେତ୍ ॥

—*—

## ଜଗନ୍ନାଥଙ୍କର ପାଦ
## ବ ନ୍ଦ ନା

ବନ୍ଦଇ ଶ୍ରୀ ଜଗନ୍ନାଥ ଜଗତ ଜୀବନ
ତବ ପାଦ ପଦ୍ମତଳେ କୋଟି ନିବେଦନ ।
ଅନାଦି ଭଞ୍ଜନ ପ୍ରଭୁ ଗତିମୁକ୍ତିଦାତା
ଦୀନଜନ ମାନଙ୍କର ନିସ୍ତାର ବିଧାତା ।
ଶ୍ରୀ ନୀଳାଚଳରେ ବିଜେ କଳ୍ପବଟ ମୂଳେ
ଫରଫର ଧ୍ୱଜା ଉଡ଼େ ନୀଳଚକ୍ର ଚୂଳେ ।
ଜ୍ୟେଷ୍ଠଭ୍ରାତ ବଳରାମ ସଙ୍ଗତେ ଅଛନ୍ତି
ମଧ୍ୟରେ ଭଦ୍ରା ଭଗିନୀ ଯେ ଶୋଭା ପାଆନ୍ତି ।
ରତ୍ନସିଂହାସନେ ବିଜେ କରିଛ ଆପଣ
ମହିମା ମହିମା ଡାକ ଦିଅନ୍ତି ଭକ୍ତଗଣ ।
ଛପନ ପଉଟି ଭୋଗ ଭୁଞ୍ଜ ଅବିରତ
ଛପନ କୋଟି ଜୀବଙ୍କୁ ପଡ଼ ବାଣ୍ଟ ନିତ୍ୟ ।
ସ୍ୱୟଂ କମଳା ଦେବୀ ଯେ ଘରଣୀ ତୁମ୍ଭର
ପଡ଼ ବାଣ୍ଟିବା ଦାୟିତ୍ୱ ତାହାଙ୍କ ହସ୍ତର ।
କୀଟଠୁଁ ପତଙ୍ଗ ଯାଏ ଛନ୍ତି ଯେତେ ଜୀବ
ସମସ୍ତ ତୟାରି ତୁମ୍ଭେ କରିଅଛ ଦେବ ।
ଆବରି ପ୍ରତ୍ୟେକ ଘଟେ ବିଜେ କରିଅଛ
ଏହି ଜଗତ ଜନଙ୍କୁ ଲାଳନା କରୁଛ ।
ବ୍ରହ୍ମାଦି ତେତିଶ କୋଟି ଅମର ମଣ୍ଡଳୀ
ତବ ପାଦ ପଦ୍ମତଳେ ହୋନ୍ତି ନିଜଗ୍ଲାନି ।
ମହାଯୋଗୀ ଶିବ ସଦା ତବ ନାମ ଧ୍ୟାୟୀ
ଯୋଗ ମାୟାକୁ ଅଛନ୍ତି ଅଙ୍କରେ ବସାଇ ।
ପୁଣି ଅମର ହୋଇଣ ସେହୁ ରହିଛନ୍ତି
ମୂଳ କମଳରେ ଲୟ ଲଗାଇ ଅଛନ୍ତି ।
ତବ ଆଜ୍ଞାବଳେ ଇନ୍ଦ୍ର ଅମରାଧିପତି
ସ୍ୱରଗ ପୁରରେ ନାନା ଭୋଗ ଭୁଞ୍ଜୁଛନ୍ତି ।
ପବନ ତବ ଆଦେଶେ ମନ୍ଦମନ୍ଦ ବହେ
ଅନଳ ଆଦେଶ ପାଇ ତ୍ରିଭୁବନ ଦହେ ।
ଆଦେଶ ପାଇ କୁବେର ଭଣ୍ଡାର ଜଗିଛି
ବରୁଣ ସପ୍ତ ସାଗରେ ରାଜା ହୋଇଅଛି ॥
ଯମରାଜ ନେଉଅଛି ଜୀବଙ୍କର ପ୍ରାଣ
ଦଣ୍ଡ ଦେଉଅଛି ପାପ ପୁଣ୍ୟ ବିଚାରଣ ।
ଯୋଗିଋଷି ମାନେ କରି ପବନ ଆହାର
ତବ ନାମ ଜପୁଆନ୍ତି ଏକାଗ୍ର ଚିତ୍ତର ।

ଏହି ପରକାରେ ସର୍ବେ କରନ୍ତି ଭଜନ
କେତେ ବା ବର୍ଣ୍ଣିବ ମୁହିଁ ଅଟେ ହୀନଜନ ।
ଯେଉଁ ପାଦ ଦରଶନ କରିବାକୁ ତଳେ
ମୁନି ସୁତ ତପି ତପ କରନ୍ତି ଶାସ୍ତ୍ରଳେ ।
ତେବେହେଁ କାମନା ତାଙ୍କ ପୂର୍ଣ୍ଣ ହେଉନାହିଁ
ମୁଁ କମା ସେ ବୃଥା ଆଶା କରିବି ଗୋସାଇଁ ।
କେବଳ ଏତିକ ମାତ୍ର ବାନ୍ଧିଣ ସାହାସ
ତବ ନାମ ଗାଇବାକୁ କରୁଛି ପ୍ରୟାସ ।
ଶୁଣିଛି ଅନେକ ପାପୀ ତାପୀ ମୂଢ଼ଜନ
ମହାଘୋର ବିପଦରେ ହୋଇଣ ମଗନ ।
ତୁମ୍ଭଙ୍କୁ ଚିନ୍ତି ଅନନ୍ତ ଆହେ ଚିନ୍ତାମଣି
ରକ୍ଷିଛ ତାହାକୁ ତତକ୍ଷଣେ ଚକ୍ରପାଣି ।
ସେହିପରି ମୁହିଁ ଜଣେ ନିର୍ବୋଧ ନିର୍ଦ୍ଧନ
ନାହିଁ ମୋହଠାରେ ତିଳେ ମାତ୍ର ବୁଦ୍ଧି ଜ୍ଞାନ ।
କେବଳ ତୁମ୍ଭ ନାମକୁ ରଖି ଅଗ୍ରତର
ଅଗାଧ ସିନ୍ଧୁ ଲଙ୍ଘନେ ହେଉଛି ତତ୍ପର ।
ଜାଣେ ନାହିଁ ମୋ ଭାଗ୍ୟରେ କି ଲେଖିଛ ସାଇଁ
ଭଲ କି ଭେଲ ହୋଇବ ଯାହା ନ ଜାଣଇ ।
ବ୍ରହ୍ମବୈବର୍ତ୍ତ ବୋଲିଣ ଅଟଇ ଯେ ଗ୍ରନ୍ଥ
ସୌତି ମୁନିଙ୍କର ତାହା ଅଟେ ନିଜ କୃତ୍ୟ ।
ନୈମିଷାଅରଣ୍ୟେ ଋଷିଗଣଙ୍କର ମେଳେ
ବ୍ରହ୍ମ ଧର୍ମନ୍ଧରେ ସୌତି ମୁନି ତତକାଳେ ।
ଯାହା ବୁଝାଇଣ ଥିଲେ ସେ ବ୍ରହ୍ମବୈବର୍ତ୍ତ
ବୋଲି ଏ ଜଗତ ମଧ୍ୟେ ହୋଇଅଛି ଖ୍ୟାତ ।
ସଂସ୍କୃତ ଭାଷାରେ ତାହା ହୋଇଥିଲା ଯେଣୁ
ସର୍ବ ସାଧାରଣ ଜାଣି ନ ପାରିଲେ ତେଣୁ ।
ତାହାକୁ ପାଠ କରିଣ ଯେ ରାମଲୋଚନ
ବଙ୍ଗଳା ଭାଷାରେ କଲେ ଛାପିକରି ଲେଖନ ।
ଆବରି ବହୁ ଭାଷାରେ ହୋଇଛି ରଚିତ
ଜନ ସମାଜରେ ହୋଇବାରୁ ସମାଦୃତ ।
ଓଡ଼ିଆ ଭାଷାରେ କରିବାକୁ ଅନୁବାଦ
ବଳାଇଛି ମନ ଦୟା କର ଆହ୍ଲାଦ ।
ଆଦ୍ୟଠାରୁ ପ୍ରାନ୍ତଯାଏ ଏ ଗ୍ରନ୍ଥ ଯେପରି
ସୁନ୍ଦର ହୋଇବ ଦୟାକର ଚକ୍ରଧାରୀ ।
ପୁଣି ପ୍ରତି ଘରେ ଘରେ ସମାଦୃତ ହେବ
ବ୍ରହ୍ମନାମ ସମସ୍ତଙ୍କ ମୁଖରେ ଶୋଭିବ ।

ଏତେକ ଦୟା କରନ୍ତୁ ଜଗତ ଜୀବନ
ମାଗୁଅଛୁ ପାଦେ ଦାନେ ଧନେ ଶରଣ ।
ତବ ପଟରାଣୀ ଯେଣୁ ମାତ ସରସ୍ୱତୀ
ଯା ଆଦେଶ ଦେବେ ସେହୁ ପାଳିବେ ପ୍ରୀତେ
ଦୀନଜନ ପରେ ବାରେ ମାତ୍ର ଦୟାବନ୍ତ
ଯଦ୍ୟପି ତାଙ୍କୁ ଆଦେଶ କରନ୍ତ ଗୋସାଇଁ ।
ତାହେଲେ ଏ ଦାସ ନିଶ୍ଚେ ହୁଅନ୍ତା କୃତାର୍ଥ
କଣ୍ଠତଟେ ବସି ପଦ କହିଦ୍ୟନ୍ତେ ମାତ ।
କେବଳ ଲେଖଣୀ ମୁହିଁ କରନ୍ତି ଗ୍ରହନ
ପଦ ଆଉ ଅର୍ଥ ମାତ କରିଦ୍ୟନ୍ତେ ପୂର୍ଣ୍ଣ ।

ବ୍ରହ୍ମବୈବର୍ତ୍ତ ପୁରାଣ କାର୍ତ୍ତିକ ହୋଇଛି
ବ୍ରହ୍ମାଙ୍କର ନାମ କର୍ମ ଆଦ୍ୟରେ ରହିଛି ।
ତାହା ବିସ୍ତାରିତ ଭାବେ ସୌତି ଯେଉଁପରି
ତପସ୍ୱୀଙ୍କୁ ବୁଝାଇ ଛନ୍ତି ବ୍ୟାଖ୍ୟା କରି ।
ସେହି ପରକାରେ ଯେବେ ଉତ୍କଳ ଭାଷାରେ
ହୋଇବ ସୁନ୍ଦର ପ୍ରଭୁ ଦୟା କର ବାରେ ।
ତବ ନାମ ଜଗତରେ ହୋଇବ ବିଖ୍ୟାତ
ଏହି ବର ମାଗେ ଦୟାକର ଲକ୍ଷ୍ମୀକାନ୍ତ ।
ଏହା ବିନୁ ଆନେ ମୋର ନାହିଁ ଦରକାର
ଅଧମ କ୍ଷେତ୍ର ମୋହନ ମାଗେ ଯୋଡ଼କର ।

---

# ପ୍ରଥମ ଅଧ୍ୟାୟ

## ନୈମିଷାରଣ୍ୟରେ ସୌତିଙ୍କୁ ଦେଖି ଋଷିମାନଙ୍କର ଆନନ୍ଦ ଓ ତାଙ୍କ ଠାରୁ ପୁରାଣ ଶ୍ରବଣ କରିବା ।

ଭାରତବର୍ଷରେ ସବୁଠାରୁ ପୁଣ୍ୟସ୍ଥାନ
ଅଟଇ ନୈମିଷାରଣ୍ୟ ନାମେ ଏକ ବନ ।
ଶୌନକାଦି ମୁନି ତହିଁ ବିଶ୍ରାମ କରନ୍ତି
ସର୍ବଦା ବସନ୍ତ ବହେ କରି ମନ୍ଦଗତି ।
ବ୍ୟାଘ୍ର ସିଂହ ଗଣ୍ଡା ଆଉ ଗୟଳ ଶୂକର
ଆନନ୍ଦରେ ସେ ବନରେ କରନ୍ତି ବିହାର ।
ତପିଗଣ ମାନଙ୍କର ତପ ପ୍ରଭାବରେ
ହିଂସା ନ କରନ୍ତି ଭଲେ କେହି କାହାପରେ ।
କୁହୁ କୁହୁ ହୋଇ ନଦୀ ତହିଁ ବହିଯାଏ
ପକ୍ଷୀଗଣ ମାନଙ୍କର ସ୍ୱନ ମନ ମୋହେ ।
ଜଳୁପତି ସେ ଠାବରେ ପଶି ନ ପାରଇ
ରୋଗ ଶୋକ ଜରା ମୃତ୍ୟୁ ସେ ବନରେ ନାହିଁ ।
ଆଉ ବଶିଷ୍ଠ ଯେ ଭୃଗୁ ପୌଲସ୍ତ୍ୟ ଅତ୍ରିତେ
ଶୁକଆଦି କରି ଶ୍ରେଷ୍ଠ ଯତି ଛନ୍ତି ଯେତେ ।
ସେହି ନୈମିଷ ଅରଣ୍ୟେ ତପ ସିଦ୍ଧ କରି
ପଥ ପ୍ରଦର୍ଶକ ହୋଇଛନ୍ତି ତପସ୍ୱୀ ।
ଏକ ଦିନ କରି କଥା ଶୁଣି ମନ ଦେଇ
ସର୍ବ ତପିମାନେ ସ୍ନାନ ଶୁଚିମନ୍ତ ହୋଇ ।
ବସିଲେକ କୁଶାସନେ ହୋଇ ସମବେତ
ଏହି ସମୟେ ମିଳିଲେ ସୌତି ତପୋବନ୍ତ ।

ତାହାଙ୍କୁ ଦେଖିବା ମାତ୍ରେ ସର୍ବ ଋଷିଗଣ
ପ୍ରଣାମ ଜଣାଇ ଦେଲେ ଆସନ ତକ୍ଷଣ ।
ପୌରାଣିକ ଶାନ୍ତଶୀଳ ସୌତି ବିଜ୍ଞବର
କୁଶଳ ପୁଚ୍ଛିଲେ ତାଙ୍କୁ ହୋଇ ହର୍ଷଭର ।
ତାରକା ମଧ୍ୟରେ ଯେହ୍ନେ ଚନ୍ଦ୍ରମା ଶୋଭନ୍ତି
ତଦ୍ରୂପ ଶୋଭା ବହନ୍ତି ତପି ମଧ୍ୟେ ସୌତି ।
ଅତ୍ୟନ୍ତ ବିନୟୀ ହୋଇ ଶୌନକ ସୁଜନ
ସାଦରେ ପୁଚ୍ଛିଲେ ତାଙ୍କୁ ମଧୁର ବଚନ ।
ବୋଇଲେ କେବଣ ଠାରୁ ଆସିଲ ଏଠାକୁ
ଆବର ପ୍ରାୟରେ ଯିବ କେବଣ ସ୍ଥାନକୁ ।
କୁଶଳ ବାରତା କହି ଆମ୍ଭର ଅଗ୍ରତେ
ସଂଶୟ ଛୁଟାଅ ମନୁଁ ଆହେ ତପୋବନ୍ତେ ।
ଆଜ କେଉଁ ଭାଗ୍ୟବଳେ ପାଇଥିଲୁ ସଖା
ସେ ଯୋଗେ ଭେଟିଲୁ ମହାଜ୍ଞାନବନ୍ତ ସୌତି
ତୁମ୍ଭେ ତତ୍ତ୍ୱଦର୍ଶୀ ବିଜ୍ଞ ସୁଜାଣ ପ୍ରବର
ତବ ଦରଶନେ ବଢ଼ ସୌଭାଗ୍ୟ ଆମ୍ଭର ।
ଶୁଣି ଆନନ୍ଦିତ ହୋଇ ସୌତି ତପୋବନ୍ତ
ବୋଇଲେ ପବିତ୍ର ହେଲା ଆଜ ମୋର ଦେହ ।
କାମନା ରହିତ ତପିମାନଙ୍କ ଦର୍ଶନ
କରିବା ମାତ୍ରେ ପବିତ୍ର ହେଲା ହୃଦବନ ।

ଏହି ପରକାରେ ତପିମାନଙ୍କୁ ଉତ୍ତର
ବୋଇଲେ ମଧୁର ବାକ୍ୟେ ସୌତି ଉପଶ୍ରବା ।
ତୁମ୍ଭମାନଙ୍କର ସବୁ ଅଟଇ ମଙ୍ଗଳ
ଯଥା ସମୟରେ ମିଳୁଅଛି ଜଳ ଫଳ ।
ଦୁଷ୍ଟ ଦାନବ କରୁତ ନାହାନ୍ତି ଉତ୍ପାତ
ଯଥାଶକ୍ତ ହୁଲୁ ହୁଏନା ଆଶ୍ରମର କୃତ୍ୟ ।
ତାହା ଶୁଣି ଋଷିମାନେ ଆନନ୍ଦ ହୋଇଲେ
ସୌତିଙ୍କ ମୁଖକୁ ଚାହିଁ ସେହୁ ଉଚ୍ଚରିଲେ ।
ବୋଇଲେ ଆପଣଙ୍କର ଆଶୀର୍ବାଦ ବଳେ
କୁଶଳରେ ଆମ୍ଭେମାନେ ରହୁଛୁ ଏ ସ୍ଥଳେ ।
ପୂର୍ବ ଭାଗ୍ୟବଳେ ଆଜି ତବ ଦରଶନ
କରି ଆମ୍ଭେ ସର୍ବଋଷି ହୋଇଅଛୁ ଧନ୍ୟ ।
ଏହମତ କଥାବାର୍ତ୍ତା ହେବା ସମୟରେ
ତପି ମଣ୍ଡନ ଶୌନକ ବୋଇଲେ ସଧୀରେ ।
ଆଜ ଯେଉଁପରି ମୋର ହେଉଅଛି ମନ
ହୋଇନାହିଁ ହେବନାହିଁ ଆଉ କଦାଚନ ।
ଅନସ୍ୱାତେ ମେଘମାନ ଅକାଳରେ ଆସି
ବରଷିଲେ ଯେସନେ ତୋଷ ହୋନ୍ତି ଶସ୍ୟରାଶି ।
ସେହିପରି ଆପଣଙ୍କ ଶୁଭ ଆଗମନେ
ଆନନ୍ଦିତ ହୋଇଅଛୁ ତବ ଦରଶନେ ।
ମହା ଭୟଙ୍କର ପାପମୟ କଳିଯୁଗ
କ୍ରମେ କ୍ରମେ ଆସି କେତେ ହୋଇଲାଣି ଭୋଗ ।
ନିତ୍ୟ ସୁଖବାଞ୍ଛା କରି ଅତି ଖିନ୍ନମନେ
ଆଶାଲତା ଫଳବତୀ କୁହି ଏହିକ୍ଷଣେ ।
ଯେଣୁ ହୋଇଅଛି ଆଜି ତବ ଆଗମନ
ଆମ୍ଭ ଆଶା ଫଳବତୀ ହୋଇବ ଏକ୍ଷଣ ।
ତୁମ୍ଭେ ସାଧୁ ମନ୍ତ ଆଉ ସରଳ ସୁମତି
ପୁରାଣରେ ଅଭିଜ୍ଞତା ଲଭିଅଛ ଅତି ।
ଏଣୁ ପୌରାଣିକ ବୋଲି ଆଖ୍ୟା ପାଇଅଛ
ଭାଗ୍ୟବଳେ ତୁମ ଦେଖା ପାଇଲେ ତାପସ ।
ଆମ୍ଭର ବଚନ ବାରେ ଶୁଣ ତପିବର
କୁହ ଆମ୍ଭ ଅଗ୍ରତରେ ହରି ଭକ୍ତିଗିର ।
ସେହି ଭକ୍ତି ଉଦ୍ଦୀପିତ ହୋଇଲେ ଅନ୍ତରେ
ଭବବନ୍ଧ ଦୁଃଖ ନ ରହିବ ଏ ସଂସାରେ ।
ସଂସାର ସ୍ୱରୂପ ଦାବାନଳେ ସେଇ ଜନ
ଦଗ୍ଧ ହୋଇ ମହାକଷ୍ଟ ପାଏ ଅନୁକ୍ଷଣ ।

ସେଇ ଭକ୍ତି ଅନ୍ତରେ ଉଦ୍ରେକ ହୋଇଲେ
ଦଗ୍ଧ ହୃଦୟରେ ଶାନ୍ତି ମିଳେ ଅନୁକ୍ଷଣେ ।
ଯାର ଦୟାବଳେ ଜୀବଗଣ ଆନନ୍ଦରେ
ବିଚରଣ ଜନ୍ତୁଜନ୍ତୁ ଏ ଭବ ସଂସାରେ ।
ତା ପ୍ରତି ଅଚଳ ଭକ୍ତି ଯାହାର ଜନ୍ମଇ
ସର୍ବ ପାପ ତାପ ତାର ଦୂର ହୋଇ ଯାଇ ।
ତତ୍ତ୍ୱଜ୍ଞାନ ଯେଉଁପରି ହୋଇବଟି ଜାତ
ସେ ମାର୍ଗ ବତାଇ ଦିଅ ଆହେ ତପୋବନ୍ତ ।
ଆଉର ଯହିଁରେ ଅଛି ବ୍ରହ୍ମ ନିରୂପଣ
ତାର ଆଲୌକିକ ସୃଷ୍ଟି ହୋଇଛି ବର୍ଣ୍ଣନ ।
ସାକାର ଅଥବା ସେହୁ ହେଉ ନିରାକାର
ତାହାର ସ୍ୱରୂପ ଧ୍ୟାନ କେମନ୍ତ ପ୍ରକାର ।
କି ରୂପେ ମାନବ ଗଣ ତାହାକୁ ଭଜିବେ
କିପରି ସ୍ୱରୂପ ତାର ଦର୍ଶନ କରିବେ ।
ବୈଷ୍ଣବର ଉପାସନା କରିବେ କିପରି
ସାଧିବେ କେମନ୍ତେ ସାଧୁଯୋଗୀ ଏ ଈଶ୍ୱର ।
କେଉଁପରି ଶ୍ରେଷ୍ଠ ବୋଲି ଜାଣିବେ ସମସ୍ତ
ବେଦରେ କିରୂପେ ଅଛି ଆହେ ତପୋବନ୍ତ ।
ପ୍ରକୃତିରେ ଗୁଣ କିବା କିପରି ଲକ୍ଷଣ
ଆକାର ତାର କିଭଳି ଅଛି ନିରୂପଣ ।
ଗୋଲୋକ ବୈକୁଣ୍ଠ ପୁଣି ଶିବଙ୍କ ନଗର
ଏ ସର୍ବ ବର୍ଣ୍ଣନା ଅଛି ଯାହାର ଭିତର ।
ଅନ୍ୟ ଅନ୍ୟ ସ୍ୱର୍ଗ ଗାଥା ରହିଛି ଯହିଁରେ
ଅଂଶକଳା ନିରୂପିତ ହୋଇଛି ବିଧିରେ ।
ପ୍ରକୃତି ସ୍ୱରୂପ ଅଛି ଯହିଁରେ ବର୍ଣ୍ଣନ
ଏମନ୍ତ ପୁରାଣ ସୌତେ କରନ୍ତୁ ବଖ୍ୟାନ ।
ପ୍ରକୃତି ଅଙ୍କିତ ଆସ୍ୱାଦିତ ସଂସାରେ
ତାହାର ବର୍ଣ୍ଣନା ରହିଅଛି ଯା ଭିତରେ ।
ଦେବଗଣ ଦେବନାରୀ ସମୁଦ୍ର ସକଳ
ନଦନଦୀ ଆଦିକରି ଯେତେ ଗିରିବନ ।
ଏମାନଙ୍କ ସମୁତ୍ପତ୍ତି ଅଛି ଯେ ପୁରାଣେ
ସେହି ପୁରାଣ ପଠନ କରି ବିଦ୍ୟମାନେ ।
ପ୍ରକୃତିର ଅଂଶ କେ ବା ଅଂଶାଂଶ କେମନ୍ତ ।
ତାହାର ଚରିତ ଧ୍ୟାନ ପୂଜା ଆଦି ସ୍ତୋତ୍ର ।
ଯେଉଁ ପୁରାଣରେ ଏହା ହୋଇଛି ବର୍ଣ୍ଣିତ
ଏ ସଭା ସ୍ଥଳରେ ତାହା କର ପ୍ରକାଶିତ ।

ଗିରିଜା ପାର୍ବତୀ ଦେବୀ ଲକ୍ଷ୍ମୀ ସରସ୍ୱତୀ
ସାବିତ୍ରୀ ରାଧିକା ଆଦି ଯେତେକ ଶକତି ।
ଏମାନଙ୍କ ଉପାଖ୍ୟାନ ରହିଛି ଯହିଁରେ
ତାହା ପଠନ କରନ୍ତୁ ଏ ସଭା ସ୍ଥଳରେ ।
କରମ ବିପାକ ଆଉ ନରକ କଥନ
କର୍ମର ଖଣ୍ଡନ ପୁଣି ମୁକତି ବିଧାନ ।
ଏ ସମସ୍ତ ରହିଅଛି ଯେଉଁ ପୁରାଣରେ
ତାହା ଶୁଣାଇ ମୁକତ କରନ୍ତୁ ଆମ୍ଭରେ ।
ଯେଉଁ କେଉଁ କାର୍ଯ୍ୟକରି ସର୍ବ ଜୀବଗଣ
ଶୁଭ ଶୁଭ ସ୍ଥାନେ ଶେଷେ କରନ୍ତି ଗମନ ।
କେବଣ କର୍ମରେ କେଉଁ ଯୋନିକୁ ଲଭନ୍ତି
ଆବର କେଉଁ କର୍ମରେ ରୋଗ ଉତପତ୍ତି ।
କେଉଁ କର୍ମକଲେ ପାପୀ ହୁଅନ୍ତି ମୁକତ
ତାହା ବିସ୍ତାରିତ କରି କହ ତପୋବ୍ରତ ।
କେଉଁ କର୍ମ କଲେ ପୁନର୍ମୁକ୍ତ ହୁଏ ନର
ବିଶେଷ ବର୍ଣ୍ଣିତ ହୋଇଅଛି ଯା ମଧ୍ୟର ।
ମନସା ତୁଳସୀ ଭାଗୀରଥି କାଳୀ ଗାଥା
*ସର୍ବମଙ୍ଗଳା ସୁରଭି ବସୁମତୀ କଥା ।
ଯହିଁରେ ବର୍ଣ୍ଣିତ ହୋଇଅଛି ଏ ଆଖ୍ୟାନ
ବର୍ଣ୍ଣନ କରନ୍ତେ ସୌତି ଦ୍ୱାଦଶ ପୁରାଣ ।
ଶାଳଗ୍ରାମ ଶିଳା ଆଉ ଦାନର ବିଷୟ
ଯେ ପୁରାଣେ ଅଛି ଧର୍ମାଧର୍ମ ପରିଚୟ ।
ଗଣେଶଙ୍କ ଜନ୍ମକର୍ମ କବଚ ଚରିତ
ସ୍ତୋତ୍ର ମନ୍ତ୍ର ଯହିଁ ହୋଇଅଛି ପ୍ରକାଶିତ ।
ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ ଉପାଖ୍ୟାନ ଯହିଁ ଅଛି
ବର୍ଣ୍ଣନ କରନ୍ତୁ ଅମ୍ଭ ଅଗ୍ରତରେ ବାଛି ।

ପୁଣ୍ୟକ୍ଷେତ୍ର ଭାରତର ଯେତେ ପୁଣ୍ୟସ୍ଥାନ
ପୂର୍ଣ୍ଣବ୍ରହ୍ମ କୃଷ୍ଣଙ୍କର ଜନ୍ମ ବିବରଣ ।
ଯେବଣ ଗ୍ରନ୍ଥ ମଧ୍ୟରେ ହୋଇଛି ପ୍ରକାଶ
ତାହା ଶୁଣିବା ପାଇଁକି ବଡ଼ ଅଭିଳାଷ ।
ପୁଣି କେଉଁ ପୁଣ୍ୟବତୀ ରମଣୀର କୋଳେ
ସାର୍ଥକ ହୋଇଛି କୃଷ୍ଣ ଧରଣ ଜଠରେ ।
ସେହି ପୁଣ୍ୟଗାଥା ଯହିଁ ହୋଇଛି ବର୍ଣ୍ଣନ
ପ୍ରକାଶକରି ଶୁଣାଅ ଅମ୍ଭ ଅଗ୍ରତେଣ ।
ଜନମ ହୋଇଣ ଥିଲେ କୃଷ୍ଣ କି କାରଣେ
ସେ ତେଜ ଚଳିଲେ କମା ଅନ ଅନ ସ୍ଥାନେ ।
ଅପଣା ଅବସ୍ଥା ତହିଁ କରିଣ ସାଧନ
କି ହେତୁ ପୁନଶ୍ଚ ତଥା କଲେ ଆଗମନ ।
କାହାର କଥାରେ କରି ଭୂଭାର ହରଣ
ମାନବ ମର୍ଯ୍ୟଦା ପ୍ରଭୁ କରିଲେ ରକ୍ଷଣ ।
କି ହେତୁ ଗୋଲକ ଧାମେ କଲେ ସେ ପ୍ରୟାଣ
ଏଇ ସବୁ ଉପାଖ୍ୟାନେ ପୂର୍ଣ୍ଣ ଯେ ପୁରାଣ ।
ତାହା ପଠନ କରିଣ ଅମ୍ଭ ଅଗ୍ରତରେ
ମନର ମାଳିନ୍ୟ ସବୁ ଦୂର କର ବାରେ ।
ଶୁଣିବା ପାଇଁ ବାସନା ବଳିଛି ଅପାର
ଦୟାକର ବାରେ ମାତ୍ର ଆହେ ବଙ୍କବର ।
ଅମ୍ଭ ଅଗ୍ରତରେ ତାହା କରନ୍ତୁ ପ୍ରକାଶ
ତୁମ୍ଭେ ଯେଣୁ ମହାବିଜ୍ଞ ଶ୍ରୀଗୁରୁ ସଦୃଶ୍ୟ ।
ଅତଏବ କୃପାକରି କରନ୍ତୁ ବର୍ଣ୍ଣନ
ଲଭିବୁଁ ନିର୍ମଳ ଜ୍ଞାନ ଆହେ ତପୋଧନ ।
ଅଧମ କ୍ଷେତ୍ର ମୋହନ କହେ ଯୋଡ଼କର
ଏ ସବ ଶୁଣାଇ ଆମ୍ଭ ମନୁଁ ଦୁଃଖ ହର ।

ଇତିଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନୈମିଷାରଣ୍ୟରେ ସୌତିଙ୍କର ପ୍ରବେଶ
ହେତୁ ଋଷିମାନଙ୍କର ପୁରାଣ ଶ୍ରବଣେ ନାମ ପ୍ରଥମୋଽଧ୍ୟାୟଃ ॥



# ଦ୍ୱିତୀୟ ଅଧ୍ୟାୟ

## ଶୌନକାଦ୍ଦି ମୁନିଗଣ ମାନଙ୍କୁ ସୁତଙ୍କର ଉତ୍ତରପ୍ରଦାନ

ଶୁଣ ୨ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟନ୍ତି ମହାନ ।
ଶ୍ରଦ୍ଧା ଆଉ ଭକତିରେ ଯେ ଜନ ପଢ଼ିବେ
ଅନ୍ତକାଳେ ଯାଇଁ ବଇକୁଣ୍ଠରେ ବସିବେ ।
ବ୍ରହ୍ମ ବୋଲି କରି ଯେଉଁ ଦୁଇଟି ଅକ୍ଷର
ଏହି ବିଶ୍ୱ ବ୍ରହ୍ମାଣ୍ଡର ଅଟେ ମୂଳାଧାର ।
ବ୍ରହ୍ମ ନାମାନୁସାରେ ଯେ ବ୍ରହ୍ମାଣ୍ଡ ହୋଇଛି
ପ୍ରତ୍ୟେକ ଘଟରେ ବ୍ରହ୍ମ ପୂରି ରହି ଅଛି ।
ଏଣୁ ସୁଜ୍ଞସାଧୁଙ୍କୁ ମୁଁ କରେ ନିବେଦନ
ଏ ଗ୍ରନ୍ଥ ପଢ଼ିଣ ସ୍ୱାଦୁ କର ଆସ୍ୱାଦନ ।
ସୌତି ବୋଲି ନାମ ଅଟେ ଯେଉଁ ତପିଙ୍କର
ଲୋମହର୍ଷଣଙ୍କର ଯେ ଅଟନ୍ତି କୁମର ।
ମହାଜ୍ଞାନ ତତ୍ତ୍ୱଦର୍ଶୀ ସୌତି ମହାମତି
ପୁରାଣ ଶାସ୍ତ୍ର ତାଙ୍କଠୁଁ ଅନେକ ଉତ୍ପତ୍ତି ।
ଶୌନକାଦ୍ଦି ବିଜ୍ଞ ଋଷିମାନେ ନୈମିଷାରେ
କହିଲେ ତାହାଙ୍କୁ ଅତି ବିନମ୍ର ଭାବରେ ।
ଆହେ ମହାମନା ବାରେ ଶୁଣ ଆମ୍ଭ ଗିର
ପୁରାଣ ଶୁଣାଇ ପାପ ତାପ କର ଦୂର ।
ବ୍ରହ୍ମ ବୋଲିକରି ଯେଉଁ ଦୁଇଟି ଅକ୍ଷର
କେଉଁଠୁଁ ଉତ୍ପତ୍ତି କିଏ ମୂଳ ଅଟେ ତାର ।
ତାହା ଶୁଣିବା ନିମନ୍ତେ ବଳଅଛି ଆଶ
ଦୟାକରି କୁହ ଲୋମହର୍ଷଣଙ୍କ ଶିଷ୍ୟ ।
ଏହାଶୁଣି ସୌତି ମନେ ଆନନ୍ଦିତ ହୋଇ
ବୋଇଲେ ଶୁଣନ୍ତୁ ଅହେ ତପିଙ୍କର ସାଇଁ ।
ଯାହା ଶୁଣିବା ନିମନ୍ତେ ପଚାରିଲେ ମୋତେ
ତାହା କହୁଅଛି କର ଶ୍ରବଣ ସମସ୍ତେ ।
ପୌରାଣିକ ବ୍ୟାସ ମୁଖୁଁ ଯେ ସମସ୍ତେ ତଥ୍ୟ
ଶ୍ରବଣ କରିଛି ତାହା କରିବି ବ୍ୟକତ ।
ବ୍ରହ୍ମର ବ୍ରହ୍ମାଣ୍ଡ ଗୋଟି ହୋଇଛି ତିଆର
ସର୍ବପରି ଅଟେ ବ୍ରହ୍ମଙ୍କର ଅଧିକାର ।
କୀଟ ପତଙ୍ଗ ସ୍ଥାବର ଜଙ୍ଗମ ସହିତେ
ଯେତେ ଜୀବଗଣ ରହିଛନ୍ତି ଏ ଜଗତେ ।
ସଭିଙ୍କ ଅଙ୍ଗରେ ବ୍ରହ୍ମସତ୍ତା ରହିଅଛି
ତାହା ବିସ୍ତାରିତ ଭାବେ ବର୍ଣ୍ଣନା କରୁଛି ।
ବ୍ରହ୍ମବୈବର୍ତ୍ତ ନାମରେ ଅଟେ ଯେ ପୁରାଣ
ବିଭିନ୍ନ ଖଣ୍ଡରେ ତାହା ବ୍ୟକତଟି ଜାଣ ।
ପ୍ରଥମରେ ବ୍ରହ୍ମଖଣ୍ଡ ହୋଇଛି ତିଆର
ଯେଥିରେ ବର୍ଣ୍ଣିତ ଅଛି ବହୁ ସମାଚାର ।
ତୁମ୍ଭେମାନେ ଯେଉଁ କଥା ପଚାରିଲ ମୋତେ
ତାହା ରହିଅଛି ଜାଣ ବ୍ରହ୍ମବଇବର୍ତ୍ତେ ।
ପୁରାଣ ମାନଙ୍କ ମଧ୍ୟେ ଅଟଇ ଏ ସାର
ବହୁ ତତ୍ତ୍ୱ ଜ୍ଞାନ ପୂରି ଅଛି ସୁଧା ମଧୁର ।
ଅଧ୍ୟୟନ କରେ ଯେହୁ ଏକାନ୍ତ ଅନ୍ତରେ
ଅଥବା ଶ୍ରବଣ କରେ ଭକତିର ଭରେ ।
ତାହେଲେ କାମନା ତାର ପୂରଣ ହୁଅଇ
ଅନ୍ତକାଳେ ମୁକ୍ତିଲଭି ବୈକୁଣ୍ଠେ ବସଇ ।
ଆବର ବୈଷ୍ଣବ ହରି ଭକ୍ତି ବୃଦ୍ଧି ପାଏ
କଳ୍ପବୃକ୍ଷ ସମ ଏହା ଶୁଣ ତପିରାଏ ।
ଏକାନ୍ତ ଅନ୍ତରେ ଏହା କରିଲେ ଶ୍ରବଣ
ଆଶାଲତା ଫଳବତୀ ହୁଏ ସେହିକ୍ଷଣ ।
ତୁମ୍ଭେ ପଚାରିଲ ମୋତେ ଆହେ ତପିବର
ବିବିଧ ସାଧକଙ୍କର କେଉଁ ମତ ସାର ।
କିନ୍ତୁ ଏକକଥା ବୋଲେ ଶୁଣ ତପୋଧନ
ମତ ଭେଦ କିଛି ମାତ୍ର ନ କର ଦର୍ଶନ ।
ସତସଙ୍ଗେ ସଦୁପାଧି ଲଭେ ଜୀବଗଣ
ଯୋଗୀ ନାମ ଲଭେ ଯୋଗୀ ସଙ୍ଗ ନିବନ୍ଧନ ।
ଆଦ୍ୟରେ ଭକତଗଣ ସଙ୍ଗେ ସଙ୍ଗ ହୋଇ
ବୈଷ୍ଣବ ନାମରେ ଶେଷେ ଗଣ୍ୟ ସେ ହୁଅଇ।
ଜ୍ଞାନପରିପାକ ହେତୁ ଏମନ୍ତ ପ୍ରକାରେ
ବିଭିନ୍ନ ଉପାଧି ଜୀବଗଣ ଲାଭକରେ ।
ଅନ୍ୟାନ କିଛି ନୁହଇ ଜାଣ ସେ ଉପାଧି
ମତଭେଦ ଯହିଁ କାର୍ଯ୍ୟ ତହିଁ ନୁହେଁ ସିଦ୍ଧି ।
କରୂପେ ଦେବତାଗଣେ ଜନମ ହୋଇଲେ
ଜୀବ ଜନ୍ତୁଗଣ କେଉଁପରି ଜାତହେଲେ ।

ସକଳ ପ୍ରକାଶ ହୋଇଅଛୁ ଏ ଖଣ୍ଡରେ
ଆଶା ପୂରଣ କରିବ କହି ଏ ଠାବରେ ।
ତ ପରେ ପ୍ରକୃତି ଖଣ୍ଡ ଶୁଣିବେ ସୁଜନ
ଦେବୀଗଣ ଗାଥା ତହିଁ ହୋଇଛୁ ବର୍ଣ୍ଣନ ।
କରମ ବିପାକ କଥା ତହିଁରେ ଉକ୍ତିଛୁ
ଶାଳଗ୍ରାମ ଶିଳାତତ୍ତ୍ୱ କହିବଇଁ ବାଛୁ ।
ସ୍ତୋତ୍ର ମନ୍ତ୍ର କବଚାଦି ପୂଜା ନିରୂପଣ
ବିଶେଷ ଭାବେ ଏଥିରେ ହୋଇଛୁ ରଚନ ।
ପ୍ରକୃତି ଲକ୍ଷଣ ମାନ ବର୍ଣ୍ଣିତ ହୋଇଛୁ
କଳା ଅଂଶ ନିରୂପଣ ତହିଁ ପ୍ରକାଶିଛୁ ।
ପୁଣ୍ୟବଳେ ପୁଣ୍ୟଆତ୍ମା ସେଠାବଲୁ ଯାଏ
ପାପୀଗଣ ପାପଫଳେ ତହିଁ ଶାସ୍ତି ପାଏ ।
ରୋଗର ଲକ୍ଷଣ ପୁଣି ନରକ ବର୍ଣ୍ଣନ
ଏଇ ଖଣ୍ଡ ମଧ୍ୟେ ଅଛୁ ଆହେ ତପୋଧନ ।
ତାପରେ ଗଣେଶ ଖଣ୍ଡ ସୁରମ୍ୟ ଆଖ୍ୟାନ
ଗଣେଶଙ୍କ ଜନ୍ମ କଥା ଆହେ ତପୋଧନ ।
ତାହାଙ୍କ ଚରିତ୍ର ଆଦି ମନ୍ତ୍ର ସ୍ତୋତ୍ର ଆଦି
କବଚ ଇତ୍ୟାଦି ଅଛୁ ତା ମଧ୍ୟେ ଅବଧି ।
ଭୃଗୁଙ୍କ ସହ ଗଣେଶ କଥୋପକଥନ
ତାହା ମଧ୍ୟରେ ହୋଇଛୁ ବିସ୍ତୃତ ବର୍ଣ୍ଣନ ।
ସବୁଶେଷେ ଶ୍ରୀକୃଷ୍ଣଙ୍କ ଜନ୍ମଖଣ୍ଡ ଅଛୁ
ସୁମଧୁର ପୁଣ୍ୟଗାଥା ତନ୍ମଧ୍ୟେ ପୂରିଛୁ ।
ପରଂବ୍ରହ୍ମ କୃଷ୍ଣଚନ୍ଦ୍ର ଜନମ ଲଭିଣ
ଯେବଣ କାର୍ଯ୍ୟ କରିଲେ ଯାହା ଭବର୍ଷେଣ ।
ବିଶେଷ ଭାବେ ବର୍ଣ୍ଣିତ ହୋଇଛୁ ତହିଁରେ
ସାଧୁ ମତେ ପ୍ରକାଶିବ ତୁମ୍ଭ ସମ୍ମୁଖରେ ।
ଧରଣୀର ଗୁରୁଭାର କରିଣ ହରଣ
ସାଧୁମାନଙ୍କ ମର୍ଯ୍ୟାଦା ରଖିଲେ ଅକ୍ଷୁର୍ଣ୍ଣ ।
ଏହି ଲୀଳା ଶେଷ ଖଣ୍ଡେ ବର୍ଣ୍ଣିତ ହୋଇଛୁ
ସୁମଧୁର ଗାଥା ମାନ ତହିଁ ପୂରିଅଛୁ ।
ଚାରିଖଣ୍ଡେ ସୁବିଭକ୍ତ ଏ ମହାପୁରାଣ
ପୁରାଣମାନଙ୍କ ମଧ୍ୟେ ଶ୍ରେଷ୍ଠ ଏହା ଜାଣ ।
ସଭିଙ୍କର ମନୋବାଞ୍ଛା ପୂରଯେ ଏ ଗ୍ରନ୍ଥ
ଶୁଣିଲେହେଁ ଫଳପ୍ରଦ ନାହିଁ ଆହେ ତପୋବନ୍ତ ।
ସର୍ବାଭୀଷ୍ଟ ଫଳଦାତା ଏ ଗ୍ରନ୍ଥ ଅଟଇ
ଏଥିରେ ସନ୍ଦେହ ନାହିଁ ଆହେ ତପିସାଇଁ ।
ବେଦସମ ଏ ଗ୍ରନ୍ଥରେ କୃଷ୍ଣ ଦୟାଧର
ତାହାଙ୍କ ସ୍ୱରୂପ ତତ୍ତ୍ୱ ହୋଇଛୁ ବିସ୍ତାର ।
ଏ ଲାଗି ବ୍ରହ୍ମବୈବର୍ତ୍ତ ନାମ ହୋଇଅଛୁ
ନାନାଦି ନିଗୂଢ଼ ତତ୍ତ୍ୱ ଏ ଗ୍ରନ୍ଥ ପୂରିଛୁ ।
ଏ ପୁରାଣ ସୂତ୍ର ନେଇ ଗୋଲୋକ ବିହାରୀ
ପ୍ରଥମେ ବ୍ରହ୍ମାଙ୍କୁ ଦେଲେ ସମାଦର କରି ।
ତାପରେ ପୁଷ୍କର ତୀର୍ଥେ ବ୍ରହ୍ମା ମହାଶୟ
କହିଲେ ଧର୍ମଙ୍କୁ ଦାନ ଶୁଣ ତପିଚୟ ।
ଅନନ୍ତର ଧର୍ମ ଦେବ ସ୍ୱପ୍ରିୟ ପୁତ୍ରକରେ
ନାରାୟଣ ନାମ ଯାର ବିଖ୍ୟାତ ସଂସାରେ ।
ପରେ ନାରାୟଣ ଋଷି କରିଣ ଯତନ
ଦେବ ଋଷି ନାରଦଙ୍କୁ କରିଲେ ଅର୍ପଣ ।
ଦେବର୍ଷି ନାରଦ ପରେ ଜାହ୍ନବୀର ତୀରେ
ବେଦବ୍ୟାସେ ଅରପଣ କରିଲେ ସାଦରେ ।
ସେ ସୂତ୍ରକୁ ବେଦବ୍ୟାସ କରିଣ ବିସ୍ତାର
ରଚିଲେକ ଶ୍ଳୋକଛନ୍ଦେ ଅଠର ହଜାର ।
ପୁଣ୍ୟ ପଦ ସିଦ୍ଧକ୍ଷେତ୍ରେ କୃଷ୍ଣ ଦ୍ୱୈପାୟନ
ଆମ୍ଭକରେ ସ୍ନେହଭରେ କରିଲେ ଅର୍ପଣ ।
ସେହି ଗ୍ରନ୍ଥ ତୁମ୍ଭ ଆଗେ କରିଣ ପ୍ରକାଶ
ଘୁଞ୍ଚାଇବି ମନମଧ୍ୟୁ କଳିହେ ତାପସ ।
ଶୁଣ ଆହେ ତପୋଧନ ଆମ୍ଭର ବଚନ
ବେଦତୁଲ୍ୟ ଏ ପୁରାଣ ଯେ କରେ ପଠନ ।
ତାହା ସମ ପୁଣ୍ୟବନ୍ତ ନାହିଁ ଜେ ସଂସାରେ
ଶେଷେ ବିଷ୍ଣୁଲୋକ ମଧ୍ୟେ ସେହୁ ବାସକରେ ।
ଆଦର ଅଧ୍ୟାଏ ଯେହୁ କରିଣ ଅଭ୍ୟାସ
ପଢ଼ିବ ପ୍ରତ୍ୟହ ତାରେ ନ ଲାଗିବ କ୍ଲେଶ ।
କେବଳ ଶ୍ରଦ୍ଧାରେ ଯେହୁ କରିବ ଶ୍ରବଣ
ତାହା ପୁଣ୍ୟ କହିନୁହେଁ ମୁଖରେ ବର୍ଣ୍ଣନ ।
ଏମନ୍ତ ଅଟଇ ଏହି ପୁରାଣ ଆଖ୍ୟାନ
ଗୀତ ଛନ୍ଦେ ବିରଚିଲା କ୍ଷେତ୍ରବାସୀ ଦୀନ ।

———

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଶୌନକାଦି ମୁନିଗଣଙ୍କୁ ସୂତଙ୍କର
ଉତ୍ତରପ୍ରଦାନେ ନାମ ଦ୍ୱିତୀୟୋଽଧ୍ୟାୟଃ

# ତୃତୀୟ ଅଧ୍ୟାୟ
## ଗୋଲକ ଆଦି ସୃଷ୍ଟି ବର୍ଣ୍ଣନ ବିବରଣ

ଶୌନକ ବୋଇଲେ ବାରେ ଶୁଣ ଋଷିବର
ପ୍ରଥମରେ ବ୍ରହ୍ମଖଣ୍ଡ ଶୁଣାଅ ଏଠାର ।
ସେ ପରମ ଗାଥାମାନ ବିସ୍ତାର କରଣ
ଆମ୍ଭର ମନ କାମନା କରନ୍ତୁ ପୂରଣ ।
ସୌତି ବୋଇଲେକ ଶୁଣ ଶୁଣ ତପୋଧନ
ଆଦ୍ୟରେ ଶ୍ରୀ ଗୁରୁପାଦ କରଇ ବନ୍ଦନ ।
ହରିପାଦେ ମତି ରଖି ନମି ବିପ୍ରଗଣେ
କହିବ ସକଳ କଥା ସର୍ବ ଋଷ୍ୟମାନେ ।
ବ୍ୟାସ ମୁଖରୁ ପୂର୍ବେ ଶୁଣି ଅଛୁ ଯାହା
ବିସ୍ତାରିତ ଭାବେ ଏଥେଁ ବଖାଣିବି ତାହା
ଅଜ୍ଞାନ ତିମିର ନାଶ ବ୍ରହ୍ମଖଣ୍ଡେ ହୁଏ
ଶ୍ରବଣ ମାତ୍ରକେ ଜ୍ଞାନମାର୍ଗ ଦେଖାଯାଏ ।
ପ୍ରଳୟ କାଳରେ ସବୁ ଥିଲା ଜ୍ୟୋତିର୍ମୟ
ସେଇ ଜ୍ୟୋତି ବିଶ୍ୱବ୍ୟାପି ଥିଲା ସେ ସମୟ
କୋଟି ସୂର୍ଯ୍ୟସମ ତେଜ ଅତି ଭୟଙ୍କର
ବିଶ୍ୱର କାରଣ ଏହା ଆହେ ଋଷିବର ।
ସେଇ ଜ୍ୟୋତି ଅନ୍ୟ କିଛି ନୁହେଁ ମହାମତି
ହରିଙ୍କ ଶରୀର ପ୍ରଭା ଘୋଟିଥିଲା କ୍ଷିତି ।
ତାହା ମଧ୍ୟେ ତିନଲୋକ ହୋଇଥିଲା ଲୀନ
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ଆଦି ମିଶାଇଣ ।
ଏ ତିନଲୋକ ଉପରେ ଗୋଲକ ନଗରୀ
ଈଶ୍ୱର ସଦୃଶ୍ୟ ନିତ୍ୟ ଅତି ମନୋହାରୀ ।
ଗୋଲକ ନଗରୀ ଅଟେ ମଣ୍ଡଳ ଆକାର
ତିନି କୋଟି ଯୋଜନ ମାତ୍ର ତାହାର ବିସ୍ତାର ।
ସେ ଗୋଲକ ସମୁଜ୍ଜ୍ୱଳ ପ୍ରଭା ସଦାକାଳେ
ପ୍ରତିଭାତ କରିଅଛୁ ତ୍ରିଲୋକ ମଣ୍ଡଳେ ।
କି ଅବା ରତନ ମୟ ଅଟଇ ସେ ପୁର
ସ୍ୱପ୍ନରେ ନ ଚିନ୍ତି ପାରେ ତା ମହିମା ସୁର ।
କେବଳ ବୈଷ୍ଣବଗଣ ତା ଦେଖି ପାରନ୍ତି
ଭୁବନ ମଧ୍ୟରେ ନାହିଁ ତାହା ଅବସ୍ଥିତି ।
ଅନ୍ତରୀକ୍ଷେ ଅବସ୍ଥିତ ଗୋଲକ ନଗରୀ
ଯୋଗବଳେ ଧରିଅଛି ବିଶ୍ୱନାଥ ହରି ।
ଜରା ନାହିଁ ବ୍ୟାଧି ନାହିଁ ନାହିଁ ମୃତ୍ୟୁଭୟ
ଶୋକ ତାପ ନାହିଁ ସଦା ଅତି ସୁଖମୟ ।
ଅସଂଖ୍ୟ ମନ୍ଦିର ଦିବ୍ୟ ରତନେ ଗଠିତ
ପ୍ରଳୟ କାଳରେ କୃଷ୍ଣ କରେ ଅବସ୍ଥିତ ।
ସୃଷ୍ଟି କାଳେ ବହୁ ଗୋପ ଗୋପିକା ନିକର
କେବେ ଶୋଭା ତାହା ଅବା ବର୍ଣ୍ଣିବ କେ ନର
ଯୋଜନ ପଞ୍ଚାଶ କୋଟୀ ଗୋଲକ ଦକ୍ଷିଣେ
ବଇକୁଣ୍ଠ ନଗରୀ ଶୋଭେ ଅଧୋଗତ ସ୍ଥାନେ ।
ତାରବାମେ ଶିବଲୋକ ଅତି ମନୋହର
ଗୋଲୋକ ସଦୃଶ ତାହା ଅତୀବ ସୁନ୍ଦର ।
କୋଟୀଏ ଯୋଜନ ଅଟେ ବୈକୁଣ୍ଠ ବିସ୍ତାର
ଗୋଲୋକ ସମାନ ଏହା ମଣ୍ଡଳୀ ଆକାର ।
ସୃଷ୍ଟିକାଳେ ନାରାୟଣ କମଳାଙ୍କ ସାଥେ
ବିରାଜମାନ କରନ୍ତି ମହାସୁଖେ ଏଥେ ।
ସୃଷ୍ଟିକାଳେ ବୈକୁଣ୍ଠରେ ଲକ୍ଷ୍ମୀନାରାୟଣ
ବିରାଜମାନ କରନ୍ତି ଆନନ୍ଦ ମନେଣ ।
ଚତୁର୍ଭୁଜ ପରିଷଦ ଗୃହଦ୍ୱାରେ ରହେ
ଜରା ମୃତ୍ୟୁ ଭୟ ଏଠାବରେ ଯେ ନ ଥାଏ ।
ବାମଭାଗେ ଶିବଲୋକ ଅତି ମନୋହର
କୋଟୀଏ ଯୋଜନ ସେହୁ ଅତୀବ ସୁନ୍ଦର ।
ଜରାମୃତ୍ୟୁ କ୍ଲେଶଭୟ ନାହିଁ ଏହି ସ୍ଥାନେ
ଶଙ୍କର ବାସ କରନ୍ତି ଆନନ୍ଦିତ ମନେ ।
ସୃଷ୍ଟିକାଳେ ଦେବଦେବ ଶଶାଙ୍କ ଶେଖର
ବିହାର କରନ୍ତି ମାରକାରଙ୍କ ଅନ୍ତର ।
ଗୃହଦ୍ୱାରେ ପରିଷଦ ଗଣ ରହିଛନ୍ତି
ସେ ଶୋଭା ବର୍ଣ୍ଣିବେ ନାହିଁ କାହାର ଶକତି ।
ପ୍ରଳୟେ ବିନାଶ କିନ୍ତୁ ହୁଏ ଏହି ସ୍ଥାନ
ଶୁଣ ସର୍ବ ସାଧୁଗଣେ ଦେଇ ମନକର୍ଣ୍ଣ ।
ସେ ଗୋଲୋକପୁରୀ ଅଟେ ଅତି ଜ୍ୟୋତିର୍ମୟ
ପୁଣି ମନୋହର ତାହା ସଦାନନ୍ଦମୟ ।
ଯୋଗାସନେ ସମାସୀନ ହୋଇ ଯୋଗୀଗଣ
ଜ୍ଞାନନେତ୍ରେ ସେହି ଜ୍ୟୋତି କରନ୍ତି ଦର୍ଶନ ।

ଧ୍ୟାନମଗ୍ନ ଯୋଗୀଜନ ଏକାନ୍ତ ଅନ୍ତରେ
ସେ ବ୍ରହ୍ମ ରୂପକୁ ଧ୍ୟାନ କରନ୍ତି ସତ୍ୱରେ ।
ପରାତ୍ପର ବ୍ରହ୍ମରୂପ କରଣ ଚିନ୍ତନ
ଜ୍ୟୋତି ସେବା କରି ହୁଅନ୍ତି ଆନନ୍ଦେ ମଗନ ।
ଧ୍ୟାନେ ମଗ୍ନ ମହାତ୍ମା ଜ୍ୟୋତିର ଭିତରେ
ମନୋହର ମୂର୍ତ୍ତି ଏକ ନିରୀକ୍ଷଣ କରେ ।
ଜ୍ଞାନନେତ୍ରେ ଯୋଗୀଗଣ କରନ୍ତି ଦର୍ଶନ
ମନୋହର ରୂପ ନବ ଜଳଦ ବରନ ।
ବିରାଜ କରନ୍ତି ତହିଁ ପୁରୁଷ ଉତ୍ତମ
ନେତ୍ରପଦ୍ମ ସମନେତ୍ର ଅତି ଅନୁପମ ।
ଶୋଭିତ ଈଷତ ହାସ୍ୟ ବଦନ କମଳେ
ପୂର୍ଣ୍ଣ ଶଶୀ ହାରିଯାଏ ଦର୍ଶନ କରିଲେ ।
କୋଟୀକାମ ଜିଣିରୂପ ସୁନ୍ଦର ସୁଠାମ
ଦୁଇଭୁଜେ ଶୋଭିତ ପିତବସ୍ତ୍ର ଯେ ଉତ୍ତମ ।
ତାହା ନବ ଲୀଳାଭାବ ଅତି ମନୋହର
ମୁରଲୀ ଧରିଣଛନ୍ତି ଶ୍ରୀଭୁଜେ ସୁନ୍ଦର ।
ସହାସ୍ୟ ବଦନ ଶୋଭା ବର୍ଣ୍ଣି ନହୁଅଇ
କୁଙ୍କୁମ କସ୍ତୁରୀ ନବ ଅଙ୍ଗେ ଲିପିଛଇ ।
କୌସ୍ତୁଭ ଶୋଭିତ ବକ୍ଷେ ଅତି ମନୋହର
ଚନ୍ଦନ ଭୂଷଣେ ଶୋଭାପାଏ କଳେବର ।
ରତନ କିରୀଟି ଶୋଭା ମସ୍ତକ ଉପରେ
ସେହି ଉଜ୍ଜ୍ୱଳ ମୁକୁଟ ଜନ ମନୋହରେ ।
ବିରାଜ କରି ଅଛନ୍ତି ରତନ ଆସନ
ବର୍ଣ୍ଣମାଳା କଣ୍ଠଦେଶେ ଅତି ଶୋଭାବନ ।
ସେହି ଯେ ସଚ୍ଚିଦାନନ୍ଦ ବ୍ରହ୍ମ ପରାତ୍ପର
ସ୍ୱେଚ୍ଛାମୟ ସେହି ହରି ଦୟାରବତାର ।
ପରମାତ୍ମା ସର୍ବବୀଜ ସେହି ସର୍ବାଧାର
କିଶୋର ବୟସେ ସେହି ଗୋପର ଆକାର ।
ଏକବେ ଉଦୟ ହେଲେ କୋଟି ଶଶଧର
ସମ ନୋହିବେ ତଥାପି ରୂପକୁ ତାହାର ।
ଭକ୍ତଗଣ ଧ୍ୟାନକାରୀ ସେହି ସନାତନ
ନିର୍ଗୁଣ ନିସ୍ପୃହ ପରମ୍ ବ୍ରହ୍ମ ପୁରୁଷୋତ୍ତମ ।

ବିଶ୍ୱର ନିୟନ୍ତା ସେହି ମହା ନିର୍ବିକାର
ମନମାର ସମାଧାନ ସାରମଧ୍ୟେ ସାର ।
ଗୋପମଣ୍ଡଳାଧିପତି ସିଂହାସନ ପରେ
ଭୁବନମୋହନ ଶ୍ୟାମ ରତ୍ନ ମନ୍ଦିରେ
ଜିତେନ୍ଦ୍ରିୟ ତାରସମ ନାହିଁ ଏ ଜଗତେ
କଲ୍ୟାଣ ଦାନ କରନ୍ତି ଭକ୍ତ କୃପାଅର୍ଥେ ।
କଲ୍ୟାଣ ଜନକ ସେହି ମଙ୍ଗଳ ସ୍ୱରୂପ
ଜଗତର ଶୁଭପ୍ରଦ ଅରୂପ ସ୍ୱରୂପ ।
ସେହି ପରମ ଆନନ୍ଦ ପାତ୍ର ଏକମାତ୍ର
ଅଜ୍ଞାନ ସମ୍ଭୂତ ବ୍ରହ୍ମ ସ୍ୱରୂପ ଅବ୍ୟକ୍ତ ।
ସିଦ୍ଧିର ଈଶ୍ୱର ସେହି ସିଦ୍ଧିର ସ୍ୱରୂପ
ସିଦ୍ଧିପ୍ରଦ ଅଟନ୍ତି ସେ ସର୍ବ ବିଶ୍ୱ ରୂପ ।
ଜନମ ମରଣ ଆଦି କିଛି ତାର ନାହିଁ
ସର୍ବଶକ୍ତି ମାନ ସେହି ନିର୍ଗୁଣ ଗୋସାଇଁ ।
କାରଣ ସ୍ୱରୂପ ସେହି ପୁରୁଷ ପ୍ରଧାନ
ପ୍ରକୃତି ଅତୀତ ବେଦରାଜଙ୍କ ସମାନ ।
ତ୍ରିଲୋକ ସାମ୍ରାଜ୍ୟ ସେହି କରନ୍ତି ଶାସନ
ତାଙ୍କ ସମ ପ୍ରଭାଶୀଳ ନାହିଁ କେହି ଜନ ।
ଏକମାତ୍ର ବ୍ରହ୍ମ ସେହି ନାହିଁ ପରାପର
ସତ୍ୟରୂପୀ ସ୍ୱ ପ୍ରଧାନ ବ୍ୟାପ୍ତ ଚରାଚର ।
ସାଧୁ ବୈଷ୍ଣବ ସର୍ବଦା ଅନ୍ତର ମଧ୍ୟରେ
ଭଜନ କରନ୍ତି ପରମ୍ ବ୍ରହ୍ମଙ୍କ ହୃଦୟରେ ।
ଶୁଣ ଶୁଣ ମହାଭାଗ ଶୁଣ ତପୋଧନ
ଏକମାତ୍ର ଜ୍ୟୋତିଃ ଥିଲା ପ୍ରଳୟ କାଳେଣ ।
ପରମ ବ୍ରହ୍ମ ଅବଶେଷେ ଜ୍ୟୋତିର ଭିତରେ
ଏହିରୂପେ ନବଘନ ଶ୍ୟାମରୂପ ଧରେ ।
ଏହିରୂପ ଧରି ଶ୍ୟାମ ଚୌଦିଗେ ଦୃଷ୍ଟିଲେ
କେବଳ ବ୍ରହ୍ମାଣ୍ଡ ଶୂନ୍ୟ ନୟନେ ଦେଖିଲେ ।
ଅଧମ କ୍ଷେତ୍ର ମୋହନ କହେ ଯୋଡ଼ିକର
ଯେ ବ୍ରହ୍ମକୁ ଚିନ୍ତି ଆଜ୍ଞା ପାପ ତାପ ହର ।

---

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଗୋଲକ ଆଦି ସୃଷ୍ଟି ବର୍ଣ୍ଣନେ ନାମ
ତୃତୀୟୋଽଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

## କୃଷ୍ଣଙ୍କଠାରୁ ବ୍ରହ୍ମା ବିଷ୍ଣୁ ଓ ଶିବଙ୍କର ଉତ୍ପତ୍ତି

ଶୁଣ ଆହେ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅପୂର୍ବ ବିଧାନ ।
ଶୌନକ ମୁନି ବୋଇଲେ ସୌତିଙ୍କୁ ଅନାଇ
ତ'ହାପର କି କହିଲେ ବ୍ରହ୍ମାଣ୍ଡ ଗୋସାଇଁ ।
ବିସ୍ତାରିଣ ଆମ୍ଭ ଆଗେ କରନ୍ତୁ ପ୍ରକାଶ
ଶୁଣିବା ପାଇଁକି ତାହା ବଳିଅଛି ଆଶ ।
ସୌତି ବୋଇଲେ ଆହେ ଶୁଣ ତପୋଧନ
ଶ୍ୟାମରୂପଧାରୀ ପ୍ରଭୁ କଲେ ନିରୀକ୍ଷଣ ।
ଘୋର ନୀରବୃତ୍ତ ହୋଇଅଛି ଏ ସଂସାର
ଜୀବହୀନ ଜଳହୀନ ପବନ ଆକର ।
ସମସ୍ତ ଦେଖା ଯାଉଛି ଅତି ଭୟଙ୍କର
ନାହିଁ ବୃକ୍ଷ ନାହିଁ ଧାତୁ ନାହିଁ ଯେ ସାଗର ।
ଶସ୍ୟ ତୃଣ ପର୍ବତାଦି କିଛିମାତ୍ର ନାହିଁ
ଜଙ୍ଗମ ପଦାର୍ଥହୀନ ସର୍ବତ୍ର ଅଟଇ ।
ଏହା ଦେଖି ଏକମାତ୍ର ସ୍ୱେଚ୍ଛାମୟ ହରି
ସୃଷ୍ଟି ହେତୁ ସମୁଦ୍ୟତ ହୋଇଲେ କାଣ୍ଡାରି ।
ଅନ୍ତରେ ହୋଇଲା ଯହୁଁ ଇଚ୍ଛାର ଉଦୟ
ଇଚ୍ଛାରୁ ଜନ୍ମିଲେ ମୂର୍ତ୍ତିମାନ ଗୁଣତ୍ରୟ ।
ଦକ୍ଷିଣ ପାର୍ଶ୍ୱରୁ ତାଙ୍କ ଯେତକ ଜନମିଲା
ଜାଣିଲେ ସକଳେ ଭବ ଉଦୟ ହୋଇଲା ।
ଗୁଣ ତିନିପରେ ହୋଇଲା ଯେ ମହାତତ୍ତ୍ୱ
ମହତତ୍ତ୍ୱ ପରେ ହେଲା ଅହଂକାର ଜାତ ।
ଅହଂକାର ପରେ ପୁଣି ଯେତକ ଜନମିଲା
ରୂପରସ ଗନ୍ଧ ଆଦି ତାର ନାମ ହେଲା ।
ସତ୍ତ୍ୱ ରଜତମ ହେଲା ପ୍ରଥମରେ ଜାତ
ତ୍ରିଗୁଣ ନାମରେ ସେହୁ ହୋଇଲା ବିଖ୍ୟାତ ।
ରୂପରସ ଗନ୍ଧ ସ୍ପର୍ଶ ଶବ୍ଦ ଆଦିପରେ
ପ୍ରଭୁନାରାୟଣ ଜନ୍ମ ହୋଇଲେ ମର୍ତ୍ତ୍ୟରେ ।
ପ୍ରଭୁଙ୍କ ଦକ୍ଷିଣ ଅଙ୍ଗୁ ଜନମ ତାଙ୍କର
ବର୍ଣ୍ଣିବେ ଅକ୍ଷମ ଯାରେ ନାଗ ସୁର ନର ।
ତାହାଙ୍କର ରୂପକଥା ଅତି ଚମତ୍କାର
ନବୀନ ନୀରଦ ବର୍ଣ୍ଣ ଅପୂର୍ବ ସୁନ୍ଦର ।
ପୀତବସ୍ତ୍ର ପରିଧାନ ଚତୁର୍ଭୁଜଧାରୀ
କଣ୍ଠତଟେ ବନମାଳା ଶଙ୍ଖ ଚକ୍ର ଧାରୀ ।
ତାହାପରେ ଗଦାପଦ୍ମ ଆଉଦୁଇ କରେ
ଶ୍ରୀବତ୍ସ ପଦ୍ମର ଶୋଭା ବକ୍ଷର ଉପରେ ।
ରତନେ ଭୂଷିତ ଅଟେ ଦିବ୍ୟକଳେବର
ସଦାହାସ୍ୟ ବଦନର ପ୍ରଭୁଷ ପ୍ରବର ।
ଶରତ କାଳୀନ ପୂର୍ଣ୍ଣଚନ୍ଦ୍ର ଯେଉଁପରି
ମନୋହର ମୁଖକାନ୍ତି ଶୋଭିତ ସେପରି ।
କନ୍ଦର୍ପ ଜଣା ସ୍ୱରୂପ ସୁଠାମ ସୁନ୍ଦର
ଏମନ୍ତ ଯେ ନାରାୟଣ ଶ୍ରୀକୃଷ୍ଣ ସମ୍ମୁଖ ।
ଉଭା ହୋଇ ସ୍ତୁତି କଲେ ଶିରେ ଦେଇ କର
ବୋଇଲେ ନମୋ କରୁଣାମୟ ଚକ୍ରଧର ।
ନମ ହେ ଜଗତପତି ସର୍ବ ଶୁଭଦାତା
ବରଣ୍ୟ ବରହ ଦେବ ଭୁବନ ବିଧାତା ।
କରଣ କାରଣ ତୁମ୍ଭେ ଆହେ ଭଗବାନ
ସକଳ ଜୀବ ମଧ୍ୟରେ ତବ ଅବସ୍ଥାନ ।
କରମ କାରଣ ତୁମ୍ଭେ ତୁମ୍ଭେ ଯେ ସକଳ
ତୁମେ ତପ ତୁମେ ଜପ ତୁମେ ତପଫଳ ।
ତପସ୍ୱୀଗଣଙ୍କ ମଧ୍ୟେ ତୁମେ ଯେ ତାପସ ।
ତପଫଳ ଦାତା ତୁମେ ତୁମେ ଭକ୍ତି ରସ ।
ଆତ୍ମାରାମ ତୁମେ ଦେବ ଶ୍ୟାମଳ ବରନ
ଭକ୍ତଙ୍କର ମନୋବାଞ୍ଛା କର ହେ ପୂରଣ ।
ଭକ୍ତିଭରେ ତବ ପାଦେ କଲେ ନମସ୍କାର
ତୁମେ ଦେବ ଦୟାକର ଦୟାର ଆଧାର ।
ନିଷ୍କାମ ହୋଇଣ କର କାମନା ପୂରଣ
ତୁମେ କାମ କାମ ହର୍ତ୍ତା କାମର କାରଣ ।
ବିଶ୍ୱରୂପ ବୀଜରୂପ ସର୍ବଙ୍କ ଈଶ୍ୱର
ବେଦର କାରଣ ତୁମେ ବେଦର ଗୋଚର ।
ବେଦଫଳ ଦାତା ତୁମେ ବେଦର ସ୍ୱରୂପ
ସ୍ତବ ଭାବ ନଧାଏ ସେ ତୁମ୍ଭର ସ୍ୱରୂପ ।
ତୁମ୍ଭଠାରୁ ଯେତେ ବେଦ ହୋଇଛି ପ୍ରକାଶ
ଦୟାକର ଆହେ ଦେବ ଜଗତ ନିବାସ ।

ଏହିରୂପେ ନାରାୟଣେ କରିବାରୁ ସ୍ତୁତି
ଶୁଣିଣ ଶ୍ରୀକୃଷ୍ଣ ତୋଷ ହୋଇଲେକ ଅତି ।
ବସିବା ପାଇଁକ ରତ୍ନ ସିଂହାସନ ଦେଲେ
ତାହାପାଇ ନାରାୟଣ ଆନନ୍ଦ ହୋଇଲେ ।
ଅଗ୍ରତେ ବସାଇ ତାଙ୍କୁ ଶ୍ରୀ ମଧୁସୂଦନ
ସୃଷ୍ଟି କରିବାକୁ ପୁଣ ବଳାଇଲେ ମନ ।
ନାରାୟଣ କୃତ ଏହି ଶ୍ରୀକୃଷ୍ଣଙ୍କ ସ୍ତୋତ୍ର
ପଠନ କଲେ ଭକ୍ତିରେ ହେବ ସେ ପବିତ୍ର ।
ତ୍ରି ସନ୍ଧ୍ୟାରେ ପଢ଼ିବ ଯେ ଅଭ୍ୟାସ କରିଣ
କି ଅବା ସୁମନେ ଯେହୁ କରିବ ଶ୍ରବଣ ।
ସକଳ ପାପ ତାହାର ଅଙ୍ଗୁ ଦୂର ହେବ
ଅନ୍ତକାଳେ ଯାଇ ବଇକୁଣ୍ଠରେ ବସିବ ।
ଯେ ଯାହା କାମନା କରି ପଢ଼ିବ ଏ ଗ୍ରନ୍ଥ
ପୂରଣ କରିବେ ତାକୁ ପ୍ରଭୁ ଜଗନ୍ନାଥ ।
ତାହାପରେ ଯାହା ହେଲା ଶୁଣ ଦେଇ ମନ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅତ୍ୟନ୍ତ ମହାନ ।
କୃଷ୍ଣ ଦେହୁଁ ଜନମିଲେ ଯହୁଁ ନାରାୟଣ
ସୃଷ୍ଟି ସରଜନେ ମନ କଲେ ଭଗବାନ ।
ବାମ ଭାଗକୁ ତକ୍ଷଣ ଦିଅନ୍ତେ ଅନାଇଁ
ଉଦ୍ଭବ ହୋଇଲେ ହର ଦେଖି ଲୋକ ସାଇଁ ।
ଅତି ମନୋହର କାନ୍ତି ଅଟଇ ତାଙ୍କର
ସ୍ଫଟିକ ବରନ ପଞ୍ଚମୁଖ ଦିଗମ୍ବର ।
ବିରାଜଇ ମସ୍ତକରେ ଜଟାର ମଣ୍ଡଳ
ତପତ ସୁବର୍ଣ୍ଣ ପ୍ରାୟ ତେଜ ଅନର୍ଗଳ ।
ଅଳପ ଅଳପ ହାସେ ଶୋଭିତ ବଦନ
ଶିରେ ଶୋହେ ଚନ୍ଦ୍ରକଳା ମୁଖେ ତ୍ରିନୟନ ।
ତ୍ରିଶୂଳ ପଟ୍ଟିଶ ଜପାମାଳା ହସ୍ତେ ଧରି
ଦେଖାଯାନ୍ତି ଶସ୍ତ୍ରଧାରୀ ବ୍ରହ୍ମସ୍ୱାପଢ ॥
ଶରଦ ଚନ୍ଦ୍ରମା ପ୍ରାୟ ଦିଶେ ମୁଖ କାନ୍ତି
ଥିବାରୁ ସେ ଅତି ମନୋହର ଦିଶୁଥାନ୍ତି ।
ସେହି ଦେବ ମହାଦେବ ସଦାଜ୍ଞାନ ମୟ
ପ୍ରସନ୍ନ ହୋଇଲେ ଦେଇ ପାରନ୍ତି ଅଭୟ ।
ତାଙ୍କ କୃପାବଳେ ଲୋକ ଲଭେ ଦିବ୍ୟଜ୍ଞାନ
ଆବର ଅଶେଷ ପାପ ହୁଅଇ ଖଣ୍ଡନ ।
ଅଟନ୍ତି ସେ ବଇକୁଣ୍ଠ ମାନଙ୍କ ସମ୍ପତ୍ତି
ବ୍ରହ୍ମତେଜ ହୁଏ ତାଙ୍କ ଅଙ୍ଗରୁ ଉତ୍ପତ୍ତି ।

କରଯୋଡ଼ି ଶ୍ରୀକୃଷ୍ଣଙ୍କ ଆଗେ ହେଲେ ଠିଆ
ଭୂଷାର ପଟ୍ଟଚପଢ ପାଜନ୍ତନ୍ତି ଶୋଭା ।
ଭକ୍ତିଭରେ ତିନନେତ୍ରୁ ଅଶ୍ରୁ ବୁହାଇଲେ
ଗଦ୍‌ଗଦ ସ୍ୱରରେ ତାହୁ ସ୍ତୁତି ଆରମ୍ଭିଲେ ।
ବୋଇଲେ ତୁମେ ହରତା କରତା ବିଧାତା
ତୁମ୍ଭେ ଅଟ ତିନଲୋକଙ୍କର ପିତାମାତା ।
ତୁମେ ଜୟରୂପ ଜୟପ୍ରଦ ଜୟେଶ୍ୱର
ତୁମ୍ଭେ ସର୍ବପରେ ଶ୍ରେଷ୍ଠ ମଙ୍ଗଳ ଈଶ୍ୱର ।
ତୁମ୍ଭେ ଜୟଦାତା ପୁଣି ତୁମେ ପରତ୍ରନ
ତୁମ୍ଭଙ୍କୁ ହରାଇ ଦେବା ନାହିଁ କେଉଁ ଜନ ।
ତୁମ୍ଭର ଚରଣ ତଳେ କରେ ନମସ୍କାର
ଦୟାକରି ଭକ୍ତଜନେ କରନ୍ତୁ ଉଦ୍ଧାର ।
ବିଶ୍ୱର ସ୍ୱରୂପ ତୁମେ ବିଶ୍ୱର ଈଶ୍ୱର
ବିଶ୍ୱର କାରଣ ତୁମେ ଅଟ ପରାପର ।
ଏ ବିଶ୍ୱରେ ଏକମାତ୍ର ତୁମେ ଦୟାଧର
ବିଶ୍ୱପତି ରୂପେ କର ପ୍ରଭୁତ୍ୱ ବିସ୍ତାର ।
ବିଶ୍ୱର କାରଣ ଯାହା ଅଟେ ଭଗବାନ
ତାହାର କାରଣ ତୁମେ ଅଖିଳ ରଞ୍ଜନ ।
ତୁମଠାରୁ ବିଶ୍ୱସୃଷ୍ଟି ହୁଏ ଦୟାମୟ
ତୁମକୁ ଜଗତ ମଧ୍ୟ ସଦା କରେ ଲୟ ।
ଏ ଜଗତ ମଧ୍ୟେ ନାନା ରୂପେ ଜନ୍ମି ଧରି
ତୁମେ ଫଳବୀଜ ଫଳାଧାର ଏ ସଂସାର ।
ତୁମେ ତେଜୋରୂପି ତେଜଃପ୍ରଦଙ୍କ ପ୍ରଧାନ
ତୁମ ପାଦପଦ୍ମ ତଳେ କରେ ନିବେଦନ ।
ଏହିରୂପେ ସ୍ତବ କରି ଦେବ ମହେଶ୍ୱର
ଆଦେଶ ପାଇ ବସିଲେ ଆସନ ଉପର ।
ନିର୍ମଳ ଅନ୍ତର ହୋଇ ଯେଉଁ ସାଧୁଜନ
ମହାଦେବ କୃତ୍ୟସ୍ତୋତ୍ର କରେ ଅଧ୍ୟୟନ ।
ସକଳ କାର୍ଯ୍ୟରେ ସେହୁ ସିଦ୍ଧି ଲଭକରେ
ପଦେ ପଦେ ଜୟୀ ହୁଏ ଧରଣୀ ମଧ୍ୟରେ ।
ଐଶ୍ୱର୍ଯ୍ୟ ବାନ୍ଧବ ଆଦି ବର୍ଦ୍ଧିତ ହୁଅଇ
ମାତ୍ର ଦୁଃଖ ଶୋକରାଶି ନଷ୍ଟ ହୋଇଯାଇ ।
ମହାପାପ ସୁଦ୍ଧା ତାକୁ ଛୁଇଁ ନ ପାରଇ
ଅନ୍ତେ ସୁଖେ ସେହି ଜନ ସଂସାରେ ଚଳଇ ।
ଇହଲୋକେ ସୁଖେ ରୁହେ ଅନ୍ତେ ସେଇ ଜନ
ଆନନ୍ଦେ ବୈକୁଣ୍ଠ ଧାମେ କରେ ଆଗମନ ।

ସୂତି ସୌତି ବୋଇଲେକ ଶୁଣ ତପିବର,
କୃଷ୍ଣ ନାଭିପଦ୍ମ ବ୍ରହ୍ମା ହୋଇଲେ ବାହାର ।
ପରମ ତପସ୍ବୀ ବୃଦ୍ଧ କମଣ୍ଡଳୁ ଧାରୀ
ଆବିର୍ଭାବ ହେଲେ ନାଭି କମଳରୁ ବାହାର ।
ଶ୍ୱେତ ବସ୍ତ୍ର ପରିଧାନ ଚତୁର ଆନନ
ଆସ୍ୟ ଦେଶେ ଶୋଭାପାଏ ଧବଳ ବସନ ।
ପୁଣି ଶ୍ୱେତ କେଶ ପ୍ରାଣ ଯୋଗିଙ୍କ ପ୍ରଧାନ
ଶିଳ୍ପିଙ୍କ ଈଶ୍ୱର ଦେବ ଅତି ବୁଦ୍ଧିମାନ ।
ସକଳ କାର୍ଯ୍ୟର ସ୍ରଷ୍ଟା ଅଟନ୍ତି ବିଧାତା
ସେହୁ ହର୍ତ୍ତା ସେହୁ କର୍ତ୍ତା ସେହୁ ଫଳଦାତା ।
ବେଦର ପ୍ରଧାନ କର୍ତ୍ତା ଅଟନ୍ତି ଯେ ସେହୁ
ସୁଶୀଳ ସୁଶାନ୍ତ ଅତି କମଣ୍ଡଳୁ ଦେହୁ ।
ସରସ୍ୱତୀଙ୍କର କାନ୍ତ ବେଦର ଜନକ
ସକଳ ଅଭୟ ଦେବ କଲ୍ୟାଣ ସ୍ୱରୂପ ।
କୃଷ୍ଣଙ୍କ ଅଗ୍ରତେ ଛିଡ଼ାହୋଇ ଯୋଡ଼ିକର
ସ୍ତବ ବାକ୍ୟରେ କହିଲେ ଆହେ ଦଣ୍ଡଧର ।
ଗୁଣର ଅତୀତ ତୁମେ ଅଟ ହେ ଗୋସାଇଁ
ଜଗତେ ତୁମ ସମାନ ଆନ କେହି ନାହିଁ ।
ଅମର ଅଜୟ ତୁମେ ଗୋବିନ୍ଦ ଆଖ୍ୟାନ
ଅବ୍ୟକ୍ତ କାରଣ ରୂପ ଆହେ ମତିମାନ ।
କର୍ମର ସ୍ୱରୂପ ତୁମେ ଗୋପ ବେଶ ଧାରୀ
ହ୍ରାସ ନାହିଁ ବୃଦ୍ଧି ନାହିଁ ହେଉ ବା କାଣ୍ଡାରୀ ।
ସୁଶୀଳ ଯୁବକ ରୂପେ ତୁମେ ଦଣ୍ଡଧର
ଗୋପୀ କାନ୍ତ ହୋଇ ଗୋପୀ ବାଞ୍ଛା ପୂର୍ଣ୍ଣକର ।
କନ୍ଦର୍ପ ନିନ୍ଦିତ ରୂପ ଅତି ମନୋହର
ନବଘନ ଶ୍ୟାମ ବର୍ଣ୍ଣ ସୁନ୍ଦର ସୁଠାମ ।
ରାସୋଲ୍ଲାସେ ଅଟ ରାସ ମଣ୍ଡଳ ଈଶ୍ୱର
ବୃନ୍ଦାବନେ ବାସ ତବ କାନନ ମଧ୍ୟର ।
ବିରାଜିତ ତୁମ୍ଭ ରାସ ମଣ୍ଡଳ ମଧ୍ୟରେ ।
ତୁମ ପାଦ ପଦ୍ମ ତଳେ ନମସ୍କାର କରେ ।
ଏଇରୂପେ କୃଷ୍ଣେ ସ୍ତବ କରି ପଦ୍ମାସନ
ନାରାୟଣ ମହେଶ୍ୱରେ କଲେ ସମ୍ଭାଷଣ ।
କୃଷ୍ଣଙ୍କ ଆଦେଶ ପାଇ ଆନନ୍ଦିତ ମନେ
ବସିଲେକ ମହାସୁଖେ ସ୍ୱର୍ଣ୍ଣ ସିଂହାସନେ ।
ପ୍ରାତଃକାଳେ ଯେଉଁ ଜନ ସ୍ନାହାନ କରିଣ
ବ୍ରହ୍ମାକୃତ ସ୍ତବ ପାଠ କରେ ଆନନ୍ଦେଣ ।
ସମସ୍ତ ପାତକ ନାଶି ମୁକ୍ତି ସେ ଲଭଇ ,
ଦୁସ୍ୱପ୍ନ ତାର ସୁସ୍ୱପ୍ନେ ପରିଣତ ହୋଇ ।
ଗୋବିନ୍ଦ ଉପରେ ଭକ୍ତି ଜନ୍ମଇ ତାହାର
ପୁତ୍ର ପୌତ୍ରୀ ବଢ଼େ ଧନ ବଢ଼ଇ ଅପାର ।
ଏମନ୍ତ ଅଟଇ ଏହି ଶାସ୍ତ୍ରର ମହିମା
ତାହାପରେ ଯାହାହେଲା ଶୁଣ ମହାତମା ।
ଶୌନକେ ବୋଇଲେ ସୌତି ଶୁଣ ମନଦେଇ
କୃଷ୍ଣଙ୍କ ବକ୍ଷରୁ ଧର୍ମ ଜନମିଲେ ତହିଁ ।
ଶୁକ୍ଳ ବର୍ଣ୍ଣ ଜଟାଧାରୀ ସହସ୍ର ବଦନ
ସର୍ବସାକ୍ଷୀ ସର୍ବବେତ୍ତା ସକଳ କାରଣ ।
ସର୍ବଜୀବେ ସମଦର୍ଶୀ ହିଂସା ଦ୍ୱେଷ ହୀନ
ଧର୍ମୀ ଜ୍ଞାନୀ ଧର୍ମପ୍ରଦ ଧର୍ମର ପ୍ରମାଣ ।
ଧାର୍ମିକର ଏକମାତ୍ର ଧର୍ମ ଅଟେ ସାର
ପରମାତ୍ମା ଅଂଶେ ହେଲା ଜନମ ତାହାର ।
କୃଷ୍ଣଙ୍କ ସନ୍ତୋଷ ହେତୁ ରହି ସମୁଖରେ
ସ୍ତବ କରିବାକୁ ଲାଗିଲେ ସେ ବିନୟରେ ।
ଆହେ କୃଷ୍ଣ ପରମାତ୍ମା କରୁଛି ବନ୍ଦନ
ନର ଦେହ ଧରି ସେବା କରେ ଯେଉଁ ଜନ ।
ସଂସାର ଯାତନା ତାକୁ କେବେ ନ ଲଗାଇ
ବ୍ୟାପିଣ ରହିଛ ତୁମ୍ଭେ ଏହି ବିଶ୍ୱମୟ ।
ଅଖଣ୍ଡ ବ୍ରହ୍ମାଣ୍ଡ ଯାହା କଲ ଦରଶନ
ସର୍ବ ଜୀବରେ ତୁମ୍ଭର ସ୍ଥିତି ଭଗବାନ ।
ସ୍ଥାବର ଜଙ୍ଗମ ଆଦି ଯେତେ ରହିଅଛୁ
ତୁମ ଦ୍ୱାରା ସୃଷ୍ଟି ସ୍ଥିତି ପ୍ରଳୟ ହେଉଛି ।
ପରମ ଆନନ୍ଦ ମୟ ତୁମ୍ଭେ ସନାତନ
ଅକ୍ଷୟ ଅଚ୍ୟୁତ ଦେବ ଅଖିଳ ରଞ୍ଜନ ।
ପୁରୁଷ ପ୍ରଧାନ ତୁମେ ଗୋପର ଈଶ୍ୱର
ଗୋପାଳ ଗୋପେଶ ତୁମେ ଆହେ ଗଦାଧର ।
ନିରନ୍ତର ଅବସ୍ଥିତ କରି ବୃନ୍ଦାବନେ
ଅତି ପ୍ରୀତ କରଦାନ ଗୋପୀଙ୍କର ମନେ ।
ନବଘନ ଶ୍ୟାମବର୍ଣ୍ଣ ଆହେ ସନାତନ
ଭକ୍ତିଭରେ ହୃଦେ ଧରି ତୁମର ଚରଣ ।
ଏତେ ରୂପେ କୃଷ୍ଣେ ସ୍ତବ କରି ଭକ୍ତିଭରେ
ସମ୍ଭାଷଣ କରି ବ୍ରହ୍ମା ବିଷ୍ଣୁ ମହେଶ୍ୱରେ ।
କୃଷ୍ଣଙ୍କ ଆଦେଶ ଶିରେ କରିଣ ଗ୍ରହଣ
ରତ୍ନ ଆସନେ ବସିଲେ ସେହୁ ତତକ୍ଷଣ ।

ପ୍ରାତଃକାଳେ ସ୍ନାନ ଶୌଚ ହୋଇ ଯେଉଁଜନ
ଧର୍ମକୃତ ଏହି ସ୍ତବ କରେ ଅଧ୍ୟୟନ ।
ସୁଖ ଭୋଗ କରେ ସେହି ନାହିଁ ସେ ସଂଶୟ
ସକଳ ସ୍ଥାନରେ ଜୟୀ ହୁଏ ସେ ନିଶ୍ଚୟ ।
ଛତ୍ୟେହ ଯେ ନର ଏହା କରେ ଅଧ୍ୟୟନ
ମୃତ୍ୟୁ ମୁଖରୁ ଉଦ୍ଧାର ହୁଏ ସେହି ଜନ ।
ଦେହ ଅନ୍ତେ ଶ୍ରୀହରିଙ୍କ ସ୍ଥାନକୁ ସେ ଯାଏ
ତାହାଙ୍କର ଦାସ ହୋଇ ଅତି ସୁଖେ ରହେ ।
ସବୁବେଳେ ଧର୍ମ କାର୍ଯ୍ୟେ ବଳେ ତାର ମନ
ଶ୍ରୀକୃଷ୍ଣ କଥାରେ ଭକ୍ତି ହୁଏ ଦିନୁ ଦିନ ।
ତାହାକୁ ଦେଖିଲେ ପାପ ମହାଭୟ କରେ
ପାଶକୁ ନ ଯାଇ ରହିଥାଏ ଖଣ୍ଡେ ଦୂରେ ।
ସେହିପରି ସଂସାରର ଦୁଃଖ ଭୟ ଯେତେ
ଗରୁଡ଼କୁ ସର୍ପପରି ଡରନ୍ତି ସମସ୍ତେ ।
ଆହେ ଶଉନକ ମୁନି ଏଥୁଁ ଅନନ୍ତରେ
ସରସ୍ୱତୀ ଜାତହେଲେ ଯେବଣ ପ୍ରକାରେ ।
ତାହା କହୁଅଛୁ ଏବେ ସ୍ଥିରହବେ ଶୁଣ
ଧର୍ମ ନିଜ ଆସନରେ ବସିଥିଲେ ଜାଣ ।
ତାଙ୍କ ବାମ ପାର୍ଶ୍ୱରୁ ହେଲ କନ୍ୟାଟିଏ
ନୋହିବେ ତାହାର ସମ ଚନ୍ଦ୍ରମା କୋଟିଏ ।
ସୁନ୍ଦର ପଣରେ ସେହୁ ଦ୍ୱିତୀୟ କମଳା
ମୂର୍ତ୍ତି ବୋଲି ତାର ନାମ ସେକାଳେ ହୋଇଲା
କୃଷ୍ଣଙ୍କ ମୁଖରୁ ପୁଣି ହେଲେ ଏକ ଦେବୀ
ଶୁକ୍ଲମୟ ଦିଶୁଥିଲା ତାହାଙ୍କର ଛବି ।
ପୁସ୍ତକ ଧାରଣ କରିଅଛନ୍ତି ହସ୍ତରେ
କୋଟି ପୂର୍ଣ୍ଣଚନ୍ଦ୍ର ପ୍ରଭା ବିରାଜେ ଶରୀରେ ।
ପଦ୍ମ ପାଖୁଡ଼ା ପରିୟେ ସୁନ୍ଦର ଲୋଚନ
ପରିଧାନ କରିଛନ୍ତି ଶୁକଳ ବସନ ।
ରତ୍ନ ଅଳଙ୍କାର ଅଙ୍ଗେ ଦିଶେ ଜକଜକ
ଶୁକ୍ଲପୁଷ୍ପ ଗନ୍ଧଲାଗି ଶୋଭଇ ମସ୍ତକ ।
ବଦନରେ ମନ୍ଦହାସ ଶୁଭ୍ରଦନ୍ତ ଶ୍ରେଣୀ
ଦେଖାଯାନ୍ତି ସନ୍ଧ୍ୟାକାଶେ ତାରାପନ୍ତି ଜଣି ।
ଯୌବନ ବୟସ ହୋଇଅଛି ତାହାଙ୍କର
ସବୁଅଙ୍ଗ ପ୍ରତ୍ୟଙ୍ଗ ଯେ ଦିଶେ ମନୋହର ।
ସୁନ୍ଦରୀ ମାନଙ୍କ ମଧ୍ୟେ ସେ ଏକା ସୁନ୍ଦରୀ
ନଥିବ ରମଣୀ ଜେଉଁଠାରେ ତାଙ୍କ ପରି ।

ବେଦ ଶାସ୍ତ୍ରାଦିଙ୍କୁ ଯେ କରଛନ୍ତି ଜାତ
ତାଙ୍କ କୃପା ହେଲେ ଲୋକ ହୁଅଇ ପଣ୍ଡିତ ।
ଜ୍ଞାନୀ ଜନଙ୍କର ମାତା ଦେବୀ ସରସ୍ୱତୀ
କବି ମାନଙ୍କର ଇଷ୍ଟ ଦେବତା ଅଟନ୍ତି ।
ନିର୍ମଳ ସତ୍ତ୍ୱଗୁଣରେ ଅଟନ୍ତି ଭୂଷିତା
ଶାନ୍ତ ସ୍ୱରୂପିଣୀ ସେହି ବଚନ ଦେବତା ।
କରଯୋଡ଼ି ଶ୍ରୀହରିଙ୍କ ଆଗେ ଉଭାହୋଇ
ତାଙ୍କ ଗୁଣ ଗାନ କଲେ ବୀଣାକୁ ବଜାଇ ।
ଯେଉଁ ଯୁଗେ ଯେଉଁ କର୍ମ କରିଥିଲେ ହରି
ଶୁଣାଇଲେ ତାହା ସବୁ ଗୀତରେ ଉଚ୍ଚରି ।
ସେ ଅନ୍ତରେ ନାମ ଯଶ କରିଣ ଗାୟନ
ମହା ଆନନ୍ଦରେ ନୃତ୍ୟ କଲେ ପୁନଃପୁନଃ ।
ପୁଣି ଭକ୍ତିଭରେ ଅନ୍ତୁ ମସ୍ତକ ନୁଆଁଇ
ସ୍ତୁତି ଆରମ୍ଭିଲେ ଅଙ୍ଗେ ପୁଲକିତ ହୋଇ ।
ବୋଇଲେ ଜୟ ଶ୍ରୀକୃଷ୍ଣ ଭୁବନ ବିଧାତା
ପରମ ପୁରୁଷ ସର୍ବ ଲୋକ ପିତାମାତା ।
ରାସକ୍ରୀଡ଼ା କଉତୁକୀ ରାସ ମଧ୍ୟେ ସ୍ଥିତ
ରାସ ଯାହା ଦରଶନେ ହରଷିତ ଚିତ୍ତ ।
ରତ୍ନ ସିଂହାସନ ପରେ ପ୍ରକାଶିଛ ଶୋଭା
ଅଙ୍ଗେ ବିରାଜଇ ରତ୍ନ ଅଳଙ୍କାର ପ୍ରଭା ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଆଦି ଦେବଙ୍କ ବନ୍ଦନ
ରାସ ପ୍ରିୟ ଗୋପୀଜନ ହୃଦୟ ଚନ୍ଦନ ।
ଭକତ ଜନର ମନ ବାଞ୍ଛା ପୂର୍ଣ୍ଣକାରୀ
ଶ୍ରୀ ମଧୁସୂଦନ ପୀତବାସ ବେଣୁଧାରୀ ।
ତବ ଦରଶନେ ପ୍ରାଣୀ ଲଭଇ ମୁକତି
ଆବର ଖଣ୍ଡନ କରେ ଅଶେଷ ଦୁର୍ଗତି ।
ଅଳପ ଶକତି ମୋର ତବ ଗୁଣ ଗାନ
କରିବା ପାଇଁକି କାହୁଁ ହୋଇବ ଭାଜନ ।
ଦୟାକରି ଘେନ ପ୍ରଭୁ ମୋହର ବଚନ
ଏମନ୍ତ ବୋଲି ପ୍ରମାଣ କରି ସରସ୍ୱତୀ ।
ବିଦାୟ ହେଉଛି ବୋଲି କହି ଚଳିଗଲେ
ରତ୍ନ ସିଂହାସନ ପରେ ଆନନ୍ଦେ ବସିଲେ ।
ସରସ୍ୱତୀ ସ୍ତୋତ୍ର ଗୋଟି କରିଲେ ପଠନ
ବୁଦ୍ଧି ବିଦ୍ୟା ଯଶ ଆଦି ଲଭି କରେ ଜନ ।
ପୁଣି ଧନ ଜନ ଆଦି ସକଳ ସମ୍ପତ୍ତି
ସନ୍ତୋଷେ ଦାନ କରନ୍ତି ଲକ୍ଷ୍ମୀଙ୍କର ପତି ।

ସୌତି ବୋଲନ୍ତି ଶୌନକ ମୁନିବରେ ବୃନ୍ଦି
ଏଥୁ ଅନନ୍ତରେ ଯାହା ଶୁଣ ମନଦେଇ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ମନମଧ୍ୟୁ ଜାତ
ହୋଇଲେକ ଏକ ଦେବୀ ଜଗତର ମାତ ।
ଅନ୍ନପୂର୍ଣ୍ଣା ମହାଲକ୍ଷ୍ମୀ ନାମ ତାହାଙ୍କର
ପାଳନ୍ତି ସେ ଅନ୍ନବସ୍ତ୍ର ଦେଇ ତନୟୁର ।
ଇନ୍ଦ୍ରଙ୍କ ଭୁବନେ ସ୍ୱର୍ଗ ଲକ୍ଷ୍ମୀ ସେ ବୋଲନ୍ତି
ରାଜଲକ୍ଷ୍ମୀ ବୋଲି ରାଜ ଭବନରେ ଖ୍ୟାତି ।
ଘରେ ଘରେ ବହନ୍ତି ସେ ଗୃହଲକ୍ଷ୍ମୀ ନାମ
କର୍ମ ଅନୁସାରେ ଦିଅନ୍ତି ଫଳ ହବା ଯାମ ।
ସହଜେ ତାହାଙ୍କ ଅଙ୍ଗ ଅତିଶୟ ଶୋଭା
ଅଷ୍ଟରତ୍ନ ଅଳଙ୍କାରେ ଦିଶୁଥାଏ ପ୍ରଭା ।
ହଳଦିଆ ବସ୍ତ୍ର ଏକ ପରିଧାନ କରି
ଥିବାରୁ ଶୋଭା ଦିଶନ୍ତି ଅତ୍ୟନ୍ତ ମାଧୁରୀ ।
ପୂର୍ଣ୍ଣ ହୋଇବାରୁ ନବଯୌବନ ବୟସ
ପୁଣି ଚନ୍ଦ୍ର ବଦନରେ ମନ୍ଦ ମନ୍ଦ ହାସ ।
ରୁଚିର ଶରଦ କାଳ ସନ୍ଧ୍ୟା ସମୟରେ
ଦିଶଇ ଆକାଶ ଯେହ୍ନେ ପୂର୍ଣ୍ଣିମ ତିଥିରେ ।
ସେହିପରି ମହାଲକ୍ଷ୍ମୀ ପ୍ରକାଶିଲେ ଶୋଭା
ଶ୍ରୀକୃଷ୍ଣଙ୍କ ଅଗ୍ରତରେ ହୋଇଲେକ ଉଭା ।
ନମ୍ର ଭାବେ କରଯୋଡ଼ି ଆରମ୍ଭିଲେ ସ୍ତୁତି
ବୋଇଲେ ସମସ୍ତେ ଦେବ ବିଶ୍ୱ ଅଧିପତି ।
ପରଂବ୍ରହ୍ମ ଯୋଗେଶ୍ୱର ବଇଷ୍ଣବ ପ୍ରିୟ
ପରମ ପୁରୁଷ ନିତ୍ୟ ଶୁଦ୍ଧ ଜ୍ଞାନମୟ ।
ସତ୍ୟରୂପ ସତ୍ୟାଲୋଶ ସତ୍ୟବାଦୀ ବିଭୁ
ସତ୍ୟର କାରଣ ସଦାନନ୍ଦ ମହାପ୍ରଭୁ ।
ସୃଜନ ପାଳନ ନାଶକର୍ତ୍ତା ଆଦିମୂଳ
ଶ୍ରୀକୃଷ୍ଣ ମୁରଲୀହସ୍ତ କେକୀ ପୁଚ୍ଛ ଚୂଳ ।
ତୁମେ ଅଟ ମୁକ୍ତିଦାତା ଭବ ଭୟଙ୍କର
ତୁମ୍ଭ ପାଦ ପଦ୍ମେ ମୋର କୋଟି ନମସ୍କାର ।
ଏହିରୂପେ ସ୍ତୁତି କରି ଦେବୀ କମଳମା
ବସିଲେ ଆସନ ପରେ ଅନୁମତି ଘେନ ।
ତପତ ସୁବର୍ଣ୍ଣ ତୁଲ୍ୟ ତାହାଙ୍କ ତେଜରେ
ଦଶଦିଗ ଆଲୋକିତ ହେଲା ସେ କାଳରେ ।
ତାଙ୍କ ପରେ ଶ୍ରୀକୃଷ୍ଣଙ୍କ ବୁଦ୍ଧିରୁ ପ୍ରକୃତି
ଜାତ ହେଲେ ଯେ ଅଟନ୍ତି ସର୍ବ ଅଧିଷ୍ଠାତ୍ରୀ ।

ମୂଳ ପ୍ରକୃତି ନାମରେ ହୋଇଛନ୍ତି ଖ୍ୟାତ
ସର୍ବ ଦେବ ଦେବଙ୍କର ସେହି ଆଦ୍ୟମାତ ।
ନିଦ୍ରା ତୃଷା କ୍ଷୁଧା ପୁଣି ଦୟା କ୍ଷମାରୂପେ
ଯେତେ ଶକ୍ତି ପ୍ରକାଶିତ ହୋଇଛନ୍ତି ଆପେ ।
ସେହି ସବୁ ଶକ୍ତିଙ୍କର ଅଟଇ ପ୍ରଧାନ
ଦୁର୍ଗତି ନାଶିନୀ ଦୁର୍ଗା ବୋଲି ତାଙ୍କୁ ଜାଣ ।
ବସିଛନ୍ତି ଶତବାହୁ ଭୟଙ୍କର ମୂର୍ତ୍ତି
ଦେଖିବା ଲୋକର ମନେ ଜାତ ହୁଏ ଭୀତି ।
ପରମ ରୂପିଣୀ ଦେବୀ ସଂସାର ଜନନୀ
ତାଙ୍କ ମାୟାରେ ଆବୃତ ହୋଇଛୁ ଅବନୀ ।
ତ୍ରିଶୂଳ ଶକ୍ତି ଖଡ୍ଗ ଶାର୍ଙ୍ଗ ଧନୁଶର
ଶଙ୍ଖ ଚକ୍ର ଗଦା ପଦ୍ମ ପରଶୁ ତୋମର ।
ବଜ୍ର ଯେ ଅଙ୍କୁଶ ପାଶ ଭୂଷଣ ମୂଷଳ
ଦଣ୍ଡ କମଣ୍ଡଳୁ ବରାଭୟ ଅକ୍ଷ ମାଳ ।
ନାରାୟଣ ଅସ୍ତ୍ର ବ୍ରହ୍ମ ଅସ୍ତ୍ର ରୁଦ୍ର ଅସ୍ତ୍ର
ପାଶୁପତ ପାଞ୍ଚଜନ୍ୟ ଆଗ୍ନେୟ ମାରୁତ ।
ବରୁଣ କୁବେର ଇନ୍ଦ୍ର ଆଦି ଅସ୍ତ୍ର ମାନ
ସମସ୍ତ ହସ୍ତରେ କରି ଅଛନ୍ତି ଧାରଣ ।
ଆନନ୍ଦରେ ଶ୍ରୀକୃଷ୍ଣଙ୍କ ମୁଖକୁ ଚାହିଁଲେ
କରଯୋଡ଼ି ସ୍ତୁତି ବାକ୍ୟ ଉଚ୍ଚାରଣ କଲେ ।
ଆହେ କୃଷ୍ଣ ମୁହିଁ ଅଟେ ପ୍ରକୃତି ରୂପିଣୀ
ସର୍ବଦେବ ଦେବଙ୍କର ଶକ୍ତି ବିଧାୟିନୀ ।
ଜଗତ ପ୍ରାଣୀଙ୍କୁ ମୁହିଁ ଶକ୍ତି ଦେଇ ଥାଏ
ସେ ଯେଣୁ କର୍ତ୍ତବ୍ୟ କର୍ମ କରନ୍ତି ସଭିଏଁ ।
ସ୍ୱତନ୍ତ୍ର ମୁଁ ନୁହେଁ କିନ୍ତୁ ତୁମଠାରୁ ଜାତ
ତୁମ୍ଭେ ଅଟ ଜଗତର ଇଷ୍ଟ ଦଇବତ ।
ସକଳ ଜୀବର ପୁଣି ଅଟ ପିତାମାତା
ସେହିପରି ସୃଷ୍ଟି ସ୍ଥିତି ପ୍ରଳୟ କରତା ।
ବିଧିର ବିଧାତା ତୁମେ ଶୋହେ ଦେବଗଣ
ପାଳକର ପାଳୟିତା ଅଟ ଯେ ଅବଶ୍ୟ ।
ସଂହାର କର୍ତ୍ତାର ଅଟ ସଂହାର କରତା
ତୁମ୍ଭ ଆଦି ଅନ୍ତ ଜାଣି ନ ପାରଇ ଧାତା ।
ପରମ ଆନନ୍ଦ ରୂପ ଅଟ ବିଶ୍ୱେଶ୍ୱର
ବନ୍ଦନା କରୁଛି ମୁହିଁ ତୁମ୍ଭ ଶ୍ରୀପୟର ।
ଯେଉଁ ବ୍ରହ୍ମ ନିମିଷକେ ହୁଏ ଅନ୍ତର୍ଦ୍ଧାନ
ତାହାର ମହିମା କେ ବା କରିବ ବର୍ଣ୍ଣନ ।

ନିମିଷ ଅର୍ଦ୍ଧରେ ଯେହୁ କୋଟି ବ୍ରହ୍ମମୂର୍ତ୍ତି
ସର୍ଜନା କରିପାରେ ଦେଖାଇ ଶକତି ।
ସେହୁପରି ବ୍ରହ୍ମା ରୁଦ୍ର ଆଦି ଦେବଗଣ
ଚରାଚର ଜୀବ କରି ପାରଇ ସର୍ଜନ ।
ମୋର ପରି କେତେ ୨ ଦେବୀଙ୍କୁ ହେଳାରେ
ସର୍ଜିବା ପାଇଁ ଯେହୁ ଶକ୍ତି ହୋଇପାରେ ।
ସେ ବ୍ରହ୍ମର ରୂପ ଗୁଣ କି ବର୍ଣ୍ଣିବି ମୁହିଁ
ବନ୍ଦନା କରଇ ମାତ୍ର ନମସ୍କାର ହୋଇ ।
ଯାହାଙ୍କର କଳା ଅଂଶ ଆଶ୍ରୟକୁ ପାଇ
କୋଟି ୨ ବିଶ୍ୱଲୀନ ହୋଇଅଛି ତହିଁ ।
ସେ ଦେବଙ୍କୁ ଆନନ୍ଦରେ କରଇ ପ୍ରଣାମ
ନମସ୍ତେ ପରମ ଆତ୍ମା ନିତ୍ୟ ପରଂବ୍ରହ୍ମ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ସହିତରେ ଦେବଗଣ
ଯାର ସ୍ତୁତି କରିବାକୁ ନୁହନ୍ତି ଭାଜନ ।
ତାହାଙ୍କର ପାଦପଦ୍ମେ ରହୁ ମୋର ଚିତ୍ତ
କେତେବେଳେ ଥରେ ହେଲେ ନୋହୁ ବିଚଳିତ
ଏହିରୂପେ ବନ୍ଦି ଦେବୀ କୃଷ୍ଣଙ୍କୁ ନମିଲେ
ରତ୍ନ ସିଂହାସନ ପରେ ଯାଇ ବିଜେକଲେ ।
ଯେ ସ୍ଥାନରେ ଯେଉଁମାନେ ପୂର୍ବୁ ଥିଲେ ବସି
ଦେବୀଙ୍କୁ ସେ ସ୍ତୁତିକଲେ ମନେ ହୋଇ ତୋଷି
ଦେବୀ କୃତ ଶ୍ରୀକୃଷ୍ଣଙ୍କ ଏହି ସ୍ତୁତିଗୋଟି
ଯେ ଜନ ପଢ଼ଇ ନିତି ପ୍ରଭାତରେ ଉଠି ।
ତାହାପରେ ଦେବୀ ଦୟା କରନ୍ତି ନିଶ୍ଚୟ
ସକଳ ସମ୍ପଦ ତାର ହୁଅଇ ଉଦୟ ।
ପୂଜା ସମୟରେ ଏହା ପଢ଼େ ଯେ ଶ୍ରଦ୍ଧାରେ
ସର୍ବଦା ରହନ୍ତି ଦୁର୍ଗା ସେହି ଲୋକଘରେ ।
ସଂସାରରେ ଥିବାଯାଏ ସୁଖରେ ସେ ରହେ
ଦେହ ଅନ୍ତେ ବଇକୁଣ୍ଠ ଭୁବନକୁ ଯାଏ ।
ଦୁର୍ଗା କୃତ ସ୍ତୋତ୍ର ଶେଷ ହେଲା ଏହିଠାରେ
ଅଧମ କ୍ଷେତ୍ର ମୋହନ କହଇ ଗୀତରେ ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଦେବୀସ୍ତୁତି ନାମ ଚତୁର୍ଥ ଅଧ୍ୟାୟ ।

## ପଞ୍ଚମ ଅଧ୍ୟାୟ

### କୃଷ୍ଣଙ୍କଠାରୁ ସାବିତ୍ରୀ ଓ କନ୍ଦର୍ପଙ୍କର ଜନ୍ମ ବିବରଣ

ସୌତି ବୋଇଲେକ ଶୁଣ ଆହେ ସାଧୁଧୀର
ଅପୂର୍ବ ଘଟଣା ଯେତେ ହୋଇଲା ତାପର ।
ଶ୍ରୀକୃଷ୍ଣଙ୍କର ଜିହ୍ୱାଗ୍ରେ ଦେବୀ ମନୋହରା
ଆବିର୍ଭୂତ ହେଲେ ଏକ ପାପ ତାପ ହରା ।
ବିଶୁଦ୍ଧ ସ୍ଫଟିକ ସମ ଅଙ୍ଗର ବରନ
ଶ୍ୱେତ ବସ୍ତ୍ର ପରିଧାନ ଅତି ବିମୋହନ ।
ଭୂଷଣେ ଭୂଷିତା ଦେବୀ ଜପମାଳାକରେ
ସାବିତ୍ରୀ ତାହାଙ୍କ ନାମ ଜନମନ ହରେ ।
ଜନନୀ ସାବିତ୍ରୀ ଦେବୀ କରଯୋଡ଼ି ଧୀରେ
ଶ୍ରୀକୃଷ୍ଣେ ବିନୟ ହୋଇ କହେ ଭକ୍ତିଭରେ ।
ଜ୍ୟୋତିର୍ମୟ ବ୍ରହ୍ମତୁମେ ସଂସାର କାରଣ
ସର୍ବେ କହନ୍ତି ତୁମକୁ ବ୍ରହ୍ମ ସନାତନ ।
ଏହିପରି ସ୍ତୁତି କରି ପ୍ରଣାମ କରିଲେ
ଆଜ୍ଞାପାଇ ଦିବ୍ୟରତ୍ନ ଆସନେ ବସିଲେ ।
ତାହାପରେ ଶ୍ରୀକୃଷ୍ଣଙ୍କ ମାନସରୁ ପୁଣି
ଜାତହେଲେ ପୁରୁଷେକ ଦିବ୍ୟତେଜ ଘେନି ।
ବିଶୁଦ୍ଧ କାଞ୍ଚନ ପରି ଦିଶଇ ଶରୀର
ତିନିଲୋକରେ ନାହିଁ ତାଙ୍କ ପରି କେ ସୁନ୍ଦର ।
ସବୁରି ମନକୁ ଯେଣୁ ସେ ପୁରୁଷ ବର
ମନ୍ଥନ କରନ୍ତି ବାନ୍ଧି ପୁଷ୍ପ ପଞ୍ଚଶର ।
ସେ ନିମନ୍ତେ ବିଜ୍ଞଜନେ ମନମଥ ବୋଲି
ତାହାଙ୍କର ନାମ ସେହୁ ଦେଇଛନ୍ତି ଭଲି ।
ସେହି ମନମଥଙ୍କର ବାମ ପାର୍ଶ୍ୱରୁ
ଦାହାଙ୍କଲ ରମଣୀଏ ଅତ୍ୟନ୍ତ ସୁରୂପ ।
ସେ ସୁନ୍ଦରୀ କାମିନୀକୁ ଯେ ଥରେ ଦେଖଇ
ତାର ମନ ଅବଶ୍ୟ ମୋହିତ ହୁଅଇ ।
ଏହିରୂପ ସକଳେ ତାଙ୍କୁ କରିଣ ଦର୍ଶନ
ରେତ ଜାତ ହୋଇବାରୁ ବିସ୍ମରଣ ମନ ।

ରତି ବୋଲି ତାର ନାମ ରଖିଲେ ପଣ୍ଡିତେ
ଯେହ୍ନୁ ଦେଖି ରତ ନାମ ରହିଲା ଜଗତେ ।
କାମର ଘରଣୀ ସେହୁ ଜଗତେ ବିଖ୍ୟାତ
ତା ସମ ସୁନ୍ଦରୀ ନାରୀ ନାହିଁ ଏ ଜଗତ ।
ପଞ୍ଚବାଣ କାମଦେବ ରତି ସଙ୍ଗତରେ
ହରିଙ୍କ ସମ୍ମୁଖେ ରହି ବିନୟ ଭାବରେ ।
ନାନାବିଧ ରୂପେ ସ୍ତବ କରିଣ ତକ୍ଷଣ
କୃଷ୍ଣଙ୍କ ଆଦେଶେ କଲେ ଆସନ ଗ୍ରହଣ ।
ମାରଣ ସ୍ତମ୍ଭନ ଆଉ ଜମ୍ଭନ ଶୋଷଣ
ଉନ୍ମାଦନ ପଞ୍ଚବାଣ କରେ ସୁଶୋଭନ ।
ପରଶା ନିମନ୍ତେ ବାଣ ଯୋଡ଼ି ଶରାସନେ
ନିକ୍ଷେପ କରିଲେ କାମ ଆନନ୍ଦିତ ମନେ ।
ଆହା କି ଆଶ୍ଚର୍ଯ୍ୟ ଏହି ଈଶ୍ୱର ଘଟନ
କାମଙ୍କ ବାଣରେ ସର୍ବେ ହେଲେ ଅଚେତନ ।
ନିର୍ବିକାର ହୃଦେ ଜନ୍ମେ କାମର ବିକାର
ଦେଖିଲେ ବିସ୍ମୟ ଜନ୍ମେ ଲାଗେ ଚମତ୍କାର ।
ଦେବ ପଦ୍ମାସନ ବାଣେ ଅଚେତନ ହେଲେ
ରତିକୁ ସେ ଘନଘନ ନିରେଖି ଚାହିଁଲେ ।
ତହିଁରେ ବ୍ରହ୍ମାଙ୍କ ରେତ ହୋଇଲା ସ୍ଖଳିତ
ଲଜ୍ଜାବଶେ ଅଧୋମୁଖ ହେଲେ ବେଦନାଥ ।
ବସନେ ଢାଙ୍କିଲେ ଦେବ ଆପଣା ବଦନ
ଆଶ୍ଚର୍ଯ୍ୟ ଘଟଣା ବାରେ ଶୁଣ ସୁଜ୍ଞଜନ ।
ସେଇ ବସ୍ତ୍ରକୁ ଦଗ୍ଧ-କରି ବେଦବର
କୋଟି ସୂର୍ଯ୍ୟସମ ପ୍ରଭା କରିଲେ ବିସ୍ତାର ।
ଊର୍ଦ୍ଧ୍ୱମୁଖେ ପ୍ରଜ୍ୱଳିତ ହୋଇ ସେ ଉଠିଲା
ଜଗତ ଦହିବା ପାଇଁ ଉଦ୍ୟତ ହୋଇଲା ।
ତାହା ଦେଖି ଜଗନ୍ନାଥ ନିଜ ଶକ୍ତିବଳେ
ମୁଖ ବିନ୍ଦୁ ଉଦ୍ଗାରିଲେ ବଦନ କମଳେ ।
ସେହିଠାବରୁ ହୋଇଲା ଜଳର ସୃଜନ
ଅଦ୍ଭୁତ ମହିମା କିବା କରି ବରଣନ ।
ସେ ଜଳେ ପ୍ଲାବିତ ହେଲା ଜଗତ ସଂସାର
କେଣେ ଗଲା ସେହି ତେଜ ନ ରହି ମାତର ।
ସେ ଜଳରେ ନିର୍ବାପିତ ହୋଇଲା ଅନଳ
ଏ ନିଗୂଢ଼ ତତ୍ତ୍ୱ ଗାଥା ଶୁଣନ୍ତୁ ସକଳ ।
ତାପରେ ଜନ୍ମିଲା ଏକ ପୁରୁଷ ପ୍ରବର
ଜଳଦେବତା ନାମରେ ଖ୍ୟାତ ଚରାଚର ।

ସେଇ ଜଳରେ ଯେ ଜଳଦେବ ଜନମିଲେ
ବରୁଣ ତାହାଙ୍କ ନାମ ସକଳେ ଜାଣିଲେ ।
ତାହାପରେ ଅନଳଙ୍କ ବାମ ପାରୁଶରେ
ଜନ୍ମ ଗ୍ରହଣ କରିଲେ ସ୍ୱାହା ଆନନ୍ଦରେ ।
ବରୁଣଙ୍କ ବାମ ପାର୍ଶ୍ୱେ ବରୁଣୀ ହୋଇଲେ
ତାହାଙ୍କର ପତ୍ନୀ ଭାବେ ସେ ବିଖ୍ୟାତ ହେଲେ ।
ପୁଣି ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ନାସା ନିଶ୍ୱାସରେ
ପବନ ଜାତ ହୋଇଲେ ଆଦ୍ୟରେ ସେଠାରେ ।
ଜୀବର ଜୀବନ ସେହୁ ଜାଣନ୍ତି ସକଳ
ଏହା ଅଂଶରୁ ନାସାରୁ ବହଇ ଅନିଳ ।
ସେ ପବନ ବାମଭାଗୁ ଜନ୍ମେ ଏକ ନାରୀ
ବାୟୁର ଲଳନା ସେହୁ ଅତ୍ୟନ୍ତ ସୁନ୍ଦରୀ ।
ବାୟୁବୀ ତାହାଙ୍କ ନାମ ଜାଣନ୍ତୁ ବିପ୍ରର
ଅପୂର୍ବ ଘଟଣା ଏକ ଶୁଣନ୍ତୁ ନିକର ।
ଏଣେ ମଦନ ବାଣରେ ହୋଇଣ ଅସ୍ଥିର
ଦେବ ଦେବ କୃଷ୍ଣ ଧନ ହୋଇଲେ ଅଧୀର ।
ରତି ପ୍ରତି ଘନ ୨ ନିରେଖି ଚାହିଁଲେ
ସ୍ଖଳିତ ହୋଇଲା ଅଙ୍ଗୁ ରେତ ତତକାଳେ ।
ଦେଖି ଲଜ୍ଜିତ ହୋଇଣ ଦେବ ଗଦାଧର
ସେଇ ତେଜଃ ମେଲିଦେଲେ ସଲିଳ ମଧ୍ୟର ।
ସହସ୍ରେକ ବର୍ଷପରେ ସେ ତେଜମଧ୍ୟରେ
ଜନମିଲା ଡିମ୍ବ ଏକ ଅପୂର୍ବ ତେଜରେ ।
ସେଇ ଡିମ୍ବ ମଧ୍ୟୁ ହେଲା ବିରାଟ ମୂରତି
ତହିଁରେ ସର୍ବ ବ୍ରହ୍ମାଣ୍ଡ ହେଲା ଅବସ୍ଥିତ ।
ବ୍ରହ୍ମଠାରୁ ଜାତ ବୋଲି ବ୍ରହ୍ମାଣ୍ଡ ତା ନାମ
ହୋଇଅଛି ଶୁଣ ଆହେ ପୁରୁଷ ଉତ୍ତମ ।
ତାର ଏକ ଲୋମ ମୂଳେ ରହିଛି ଜଗତ
ଧରି ସେ ରଖିଛି ତିନ ଲୋକଙ୍କୁ ନିୟତ ।
ସକଳ ପଦାର୍ଥ ଠାରୁ ବଡ଼ ଅଟେ ସେହି
ତାହାଠାରୁ ବଡ଼ ଆଉ କିଛି ମାତ୍ର ନାହିଁ ।
ଗୋବିନ୍ଦ ଭାଗରୁ ଏକ ଭାଗ କୃଷ୍ଣଙ୍କର
ସେ ଡିମ୍ବ ଅଟଇ ମାତ୍ର ବୋଲି ହେଜୁକର ।
ଜଳ ମଧ୍ୟେ ପଦ୍ମପତ୍ର ଭାବେ ଯେଉଁପରି
ତେଜୋମୟ ମହାବସ୍ତୁ ଅଟନ୍ତି ସେପରି ।
ଜନମିଣ ମହାର୍ଣ୍ଣବେ କରିଲେ ଶୟନ
ବିରାଟ ମୂରତି ହେଲେ ଅତି ସୁଶୋଭନ ।

ଅକସ୍ମାତ୍ କର୍ଣ୍ଣମୂଳୁଁ ମଧ୍ୟରୁ ତାଙ୍କର
ଜନମିଲେ ବେନ ଦୈତ୍ୟ ବିଶାଳ ଆକାର ।
ମଧୁ ଓ କୈଟଭ ନାମ ହେଲା ଦୁହିଁଙ୍କର
ସଲିଳ ମଧ୍ୟୁ ଉଠିଲେ ସେହୁ ବେନବୀର ।
ପ୍ରଜାପତିଙ୍କୁ ସେ ଦେଖି ପଦ୍ମାସନ ପରେ
ନାଶିବା ପାଇଁ ଧାଇଁଲେ ତାଙ୍କୁ ବେନ ବୀରେ
ଦେଖି ଆଚମ୍ବିତ ହେଲେ ପ୍ରଭୁ ନାରାୟଣ
ଦୁହିଁଙ୍କୁ ସଘନ ବେଗେ କରନ୍ତେ ସ୍ଥାପନ ।
ତତକ୍ଷଣ ସେ ବେନ ଦୈତ୍ୟେ ନିଧନ କରିଲେ
ତାଙ୍କୁ ନାଶି ପଦ୍ମାସନ ନିର୍ଭୟ ହୋଇଲେ ।
ସେ ବେନ ଦାନବ ମେଦ ଧରି ନିଜ କରେ
ମେଦିନୀ ସ୍ଥାପନ କଲେ ଶ୍ରୀହରି ଆଦ୍ୟରେ ।

ତାହା ପରେ ରଖାଇଲେ ନେଇଁ ବସୁମତୀ
ସମସ୍ତ ସଂସାର କଲେ ତହିଁ ଅବସ୍ଥିତି ।
ସୃଷ୍ଟି ସରଜନା କଥା କହିଲ ଗାୟନ
ଶ୍ରବଣ କରି ମୁକତ ହୁଅ ସର୍ବଜନ ।
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇଁ ମହାନ
ପଢ଼ିଲା ମାତ୍ରେ ପବିତ୍ର ହୁଏ ଚିତ୍ତ ମନ ।
ଘୋର କଳି କାଳକୁ ଏ ଅଟଇ ନିଶୁଣୀ
ତାହାର ସାହାଯ୍ୟେ ସ୍ୱର୍ଗେ ଗମ କ୍ଷମ ଗୁଣି ।
ଅତିହିଁ ଅମୃତମୟ ଅଟଇ ଏ ଗ୍ରନ୍ଥ
ଅଧମ କ୍ଷେତ୍ର ମୋହନ କଲା ବିରଚିତ ।

—୦—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ କୃଷ୍ଣଙ୍କଠାରୁ ସାବିତ୍ରୀ ଓ କନ୍ଦର୍ପଙ୍କର ଜନ୍ମ ବିବରଣେ ନାମ ପଞ୍ଚମୋଽଧ୍ୟାୟଃ

## ଷଷ୍ଠ ଅଧ୍ୟାୟ

## ଦେବା ଦେବୀ ଓ ଭୂତ ପ୍ରେତାଦିଙ୍କର ଉତ୍ପତ୍ତି

ଶୁଣ ହେ ସାଧୁଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇଁ ମହାନ ।
ଶ୍ରଦ୍ଧା ଆଉ ଭକତରେ ଯେ ଏହା ପଢ଼ିବ
ଅନ୍ତକାଳେ ଯାଇ ବିଷ୍ଣୁ ଲୋକେ ବିଶ୍ରମିବ ।
ନିନ୍ଦା କରିବେ ଏହାକୁ ଜାଣ ଯେଉଁଜନ
ନରକେ ନିବାସ ତାର ଅଟଇ ଚିରଦିନ ।
ସୃଷ୍ଟି ଆରମ୍ଭ କାଳରେ ହୋଇଥିଲା ଯାହା
ମୁନିଙ୍କ ଅଗ୍ରତେ ସୌତି ବଖାଣିଲେ ତାହା ।
ପୁଣି ଶୌନକ ପୃଚ୍ଛିଲେ ତାହାଙ୍କୁ ଅନାଇ
ଆଉ ଏକ କଥା ମୋତେ କହନ୍ତୁ ଗୋସାଇଁ ।
ଗୋପୀ ଗୋପାଳ ଦେବସ୍ତ୍ରୀ ଆଦିଙ୍କର ଗିର
ଶୁଣାଇ ମନୁଁ ସନ୍ଦେହ ଘୁଞ୍ଚାଅ ଆମ୍ଭର ।
କହିଲ ସେମାନେ ନିତ୍ୟେ ବାସ କରିଥିଲେ
ଶରକାଳୁଁ କି ସେଠାରେ ସେହୁ ରହିଥିଲେ ।
କି ଅବା ଶ୍ରୀକୃଷ୍ଣ ତାଙ୍କୁ କଲେ ସରଜନ
ତାହା ଶୁଣାଇ ସନ୍ତୋଷ କର ଆମ୍ଭ ମନ ।
ସୌତି ବୋଇଲେ ପୃଚ୍ଛିଲ ଯାହା ତୁମ୍ଭେମୋତେ
ଶ୍ରବଣ କରନ୍ତୁ ତାହା ବଖାଣୁଛି ଏବେଁ ।

ଯେତେବେଳେ ସୃଷ୍ଟି ସରଜିଲେ ଭଗବାନ
ଆଦ୍ୟରୁ ସେ ସମସ୍ତଙ୍କୁ କଲେ ସରଜନ ।
ସୃଷ୍ଟି ଯେବେ କାଳବଳେ ପ୍ରଳୟ ହୁଅଇ
ତହିଁରୁ ଗୋଟିଏ ମାତ୍ର କ୍ଷୟ ଯେ ନ ଯାଇ ।
ଯେଉଁ ସୃଷ୍ଟି ତାହା ତୁମ୍ଭ ଅଗ୍ରତେ କହିଲି
ଜାଣ ହେ ତାହାକୁ ସେହୁ ଆଦ୍ୟସୃଷ୍ଟି ବୋଲି
ଆଦ୍ୟେ ଜନମିଲେ ଯେଉଁ ନାରାୟଣ ହରି
ପ୍ରଳୟ କାଳରେ ମୃତ୍ୟୁ ନ ହୁଏ ତାଙ୍କର ।
ଆଉବର ପ୍ରକୃତି ଦେବୀ ଅକ୍ଷୟ ଅଟନ୍ତି
ତାହାଙ୍କର ସୃଷ୍ଟି କ୍ଷୟ ନ ହୁଅଇ କ୍ଷିତି ।
ଆଦ୍ୟେରେ କହନ୍ତି ବ୍ରହ୍ମକଳ୍ପ ମୁଁ ବିସ୍ତାରି
ଆନ କଳ୍ପ ଗାଥାମାନ ଶୁଣ କର୍ଣ୍ଣ ଡେରି ।
ବ୍ରହ୍ମ ବରାହ ଯେ ପଦ୍ମ ଏହିପରି ତିନ
କଳ୍ପ ଭୋଗ ହୋଇଥାଏ ଜାଣ ଆହେ ମୁନ ।
ଯେ ପ୍ରକାର ସ୍ୱରଲୋକେ ଯୁଗ ହୁଏ ତହିଁ
ସତ୍ୟ ତ୍ରେତା ଦ୍ୱାପର ଯେ କଳି ନାମ ବହି ।
ତିନଶ ଷାଠିଏ ଯୁଗ ଭୋଗ ହୁଏ ଯେବେ
ବୋଲାଏ ସେ ଏକ ଦିବ୍ୟ ଯୁଗ ବୋଲି ତେବେ ।

ବାସ୍ତରି ଯୁଗେ ଏକ ମନ୍ୱନ୍ତର ହୁଏ
ଚଉଦଟି ମନୁ ଯେବେ ଗତ ହୋଇଯାଏ ।
ବ୍ରହ୍ମାଙ୍କର ସେହିକାଳେ ହୁଏ ଏକ ଦିନ
ତିନଶ ଷାଠିଏ ଦିନ ହୋଇଲେ ସମ୍ପୂର୍ଣ୍ଣ ।
ଗୋଟିଏ ବରଷ ଭୋଗ କରେ ପ୍ରଜାପତି
ଶହେ ଆଠ ବର୍ଷ ସେହି ପରାୟୁ ବଞ୍ଚନ୍ତି ।
ତାହାଙ୍କ ଜୀବନ କାଳ ହୁଅଇଟି ସେହି
ଏକ କଳ୍ପ ବୋଲି ତାକୁ ପୁରାଣରେ କହି ।
ଅତଏବ ଆୟୁଶେଷ ହେଲେ ବ୍ରହ୍ମାଙ୍କର
କଳ୍ପ ଅବସାନ ହୁଏ ଜାଣିବେ ସୁଧୀର ।
ସେହି କଳ୍ପ କୃଷ୍ଣଙ୍କ ଯେ ନମିଷେ ହୁଅଇ
ଶୁଣ ଆହେ ସଜ୍ଜନେ ମନକର୍ଣ୍ଣ ଦେଇ ।
ଦୈତ୍ୟଙ୍କ ମେଦରେ ପୃଥ୍ୱୀ ହୋଇଲା ଗଠନ
ପୂର୍ବରୁ କହିଛି ଏହା ଏ ସଭା ସ୍ଥଳେଣ ।
ସଲିଳ ଉତରୁ ସୁଧା ହୋଇବାକ ଜାତ
ବରାହ ରୂପେ ଆଣିଲେ ତାକୁ ଜଗନ୍ନାଥ ।
ପ୍ରକାଣ୍ଡ ବାରାହ ମୂର୍ତ୍ତି ଧରିଣ ଶ୍ରୀହରି
ଧରା ଧାରଣ କରିଲେ ହୈରଣ୍ୟାକ୍ଷ ବିନାଶି ।
ବରାହ କଳ୍ପରେ ଅଛି ଏହି ବିବରଣ
ପଦ୍ମ କଳ୍ପ କଥା ଶୁଣ କରିବି ବର୍ଣ୍ଣନ ।
ଏହି କଳ୍ପେ ମହାବିଷ୍ଣୁ ସଲିଳ ଉପରେ
ଭାସିଣ ଭ୍ରମଣ କଲେ ସାରା ଜଗତରେ ।
ତାଙ୍କ ନାଭି ଶତଦଳେ ଦେବ ପଦ୍ମାସନ
ଜନମ ଧାରଣ କଲେ ଶୁଣ ମୁନିଜନ ।
ଏହିରୂପେ କ୍ରମେ ୨ ବିଶ୍ୱ ସୃଷ୍ଟି ହୋଇ
ସଂକ୍ଷେପେ ତୁମ୍ଭ ଅଗ୍ରତେ କହିଲୁ ଗୋସାଇଁ ।
ସୌତିକ ମୁଖରୁ ଶୁଣି ଅପୂର୍ବ ଭାରତୀ
ସାଦରେ ପୁଛିଲେ ପୁଣ ସେ ଶୌନକ ଯତି ।
କୁହ କୁହ ତାହାପରେ ଆହେ ମହାମତି
କି କାର୍ଯ୍ୟ କରିଲେ ଦେବ ଅନନ୍ତର ଗତି ।
ବ୍ରହ୍ମା ଶିବ ଆଦି ସର୍ବ କରିଣ ସୃଜନ
କି କାର୍ଯ୍ୟ କରିଲେ ଶେଷେ ଦେବ ସନାତନ
ବିସ୍ତାରି କରିଣ କୁହ ଆହେ ମହାମତି
ଶୁଣିବା ପାଇଁ ଆଗ୍ରହ ବଳଅଛି ଅତି ।
ଋଷିମାନଙ୍କର ବାକ୍ୟ କରିଣ ଶ୍ରବଣ
କୌତୁହଳ ହୋଇ ସୌତି କହିଲେ ତକ୍ଷଣ ।

ହେ ତାପସ ଗଣ ମୋତେ ପୁଚ୍ଛିଲ ଯେ ଗୀର
କହିବି ସେ ସର୍ବକଥା କରିଣ ବିସ୍ତାର ।
ଜଗତ ଆଧାର ହରି ଗୋଲକ ନଗରେ
ରାସ ମଞ୍ଚ ଆରମ୍ଭିଲେ ଆନନ୍ଦ ମନରେ ।
ଅତି ମନୋହର ରାସ ମଞ୍ଚ ଯେ ଅଟଇ
ଦର୍ଶନ ମାତ୍ରକେ ତନୁ ମନ ପୁଲକଇ ।
ସ୍ଥାନେ ୨ କଳ୍ପତରୁ କରିଲେ ରୋପଣ
ଭୁବନ ମୋହନ ଶୋଭା ଚିତ୍ତ ବିନୋଦନ ।
ଅପୂର୍ବ ସେ ରାସ ମଞ୍ଚ ଶୋଭାର ଆଧାର
ରତନେ ମଣ୍ଡିତ ସେହୁ ଅତି ଚମତ୍କାର ।
ସ୍ଥାନ ମାନ ଯେତେ ଖଞ୍ଜା ହୋଇଛି ତହିଁରେ
ବର୍ଣ୍ଣନା କରିବା ପାଇଁ ସକ୍ଷ ନାହିଁ ଜାରେ ।
ସେହିଠାରେ କେଶମେଳ କରି ଦରଶନ
ନବତୃଣ ନବଦୁବା ଅତି ସୁଶୋଭନ ।
ନବ ନବ ଧାନ୍ୟ ମାନ ତହିଁ ଶୋଭାପାଏ
ଯେତେ ଦ୍ରବ୍ୟ ସୃଷ୍ଟି କଲେ ତୁଳନା ନ ଯାଏ ।
ପଞ୍ଚ ସୁରମ୍ୟ ବସନେ ବେଷ୍ଟିତ କରିଲେ
ମଙ୍ଗଳ କଦଳୀ ତରୁ ଚୌପାଟେ ରୋପିଲେ ।
ତିନକୋଟି ରାସମଞ୍ଚ ହୋଇଲା ନିର୍ମାଣ ୧
ସୁନାର ପ୍ରଦୀପମାନ ଜଳେ ମଣ୍ଡପେଣ ।
ମନୁଷ୍ୟର କଥା ଛାଡ଼ି ଦେବତାଙ୍କ ମନ
ଶୋଭା ଦେଖି ଭୁଲିଗଲେ ଶୁଣ ତପୋଧନ ।
ସୌରଭ ଆମୋଦ ପୂର୍ଣ୍ଣ ଗୋଲକ ନଗର
ଦେଖିଣ ଗୋଲକ ବାସୀ ଆନନ୍ଦ ଅପାର ।
ଅବଶେଷେ ନିରଞ୍ଜନ ଗୋଲକ ବିହାରୀ
ବସିଲେ ମଣ୍ଡପପରେ ଆନନ୍ଦେ ଆବୋରି ।
ମଞ୍ଚ ଉପରେ ବସିଲେ ଯହୁଁ ନାରାୟଣ
ଏକ ମନୋହର ନାରୀ ଜନ୍ମିଲା ତକ୍ଷଣ ।
ପ୍ରଭୁଙ୍କ ଇଚ୍ଛାରେ ସେହୁ ନାରୀ ଜନମିଲା
ଭୁବନ ମୋହିନୀ ବାମୁଁ ଉତ୍ପତ୍ତି ହୋଇଲା ।
ଅପୂର୍ବ ମୂରତି ତାର ସର୍ବ ପରେ ସାର
ସୌନ୍ଦର୍ଯ୍ୟ ଦେଖିଲେ ଯୋଗୀ ହୋଇବେ ଅଧୀର
ତୁଳନା ନାହିଁ ତା ସଙ୍ଗେ ଏ କାଳରେ କେହି
ରୂପ ଦେଖି ପୂର୍ଣ୍ଣଶଶୀ ଯିବେ ଲାଜ ପାଇ ।
ତାର ଭାଲପଟେ ଶୋଭେ କମଳ ନୟନ
ପରିଧାନ ମନୋହର ସୁନୀଳ ବସନ ।

ନବୀନ ଯୁବତୀ ଧନୀ ସୁହାସ ଅଧରେ
ରତ୍ନପଦ୍ମ ବୁଡ଼ିଅଛୁ ରୂପର ସାଗରେ ।
ଭୁବନ ମଧ୍ୟରେ ନାହିଁ ତା ରୂପ ତୁଳନ
ଲଲାଟେ ସିନ୍ଦୁର ବିନ୍ଦୁ ଅତି ଶୋଭାବନ ।
ମନୋହର ଅଳଙ୍କାର ସର୍ବାଙ୍ଗେ ଶୋଭଇ
ମାଳତୀର ମାଳ କଣ୍ଠ ତଟରେ ଲମ୍ବଇ ।
ତପ୍ତ କାଞ୍ଚନ ସମାନ ଅଙ୍ଗର ବରନ
ମୁକ୍ତା ମାଳା ବକ୍ଷସ୍ଥଳେ ଦିଶେ ଶୋଭାବନ ।
ଚନ୍ଦନେ ଭୂଷିତ ହୋଇଅଛୁ କଳେବର
ସୌରଭେ ଆମୋଦ କରେ ଲାଗେ ଚମତ୍କାର ।
ତାହାଙ୍କ ନାମ ରାଧିକା ଜଗତ ମୋହିନୀ !
କୃଷ୍ଣ ମତି କୃଷ୍ଣ ଧନୀ କୃଷ୍ଣ ସନାତନୀ ।
ସେ କୃଷ୍ଣଙ୍କ ଆଗେ ରହି କୃତାଞ୍ଜଳି କରେ
ନମସ୍କାର କଲେ ଅର୍ଘ୍ୟ ଦେଇ ଶ୍ରୀ ପଦ୍ମରେ ।
ତାପରେ ବାମେ ବସିଲେ ଆସନ ଉପରେ
ସଂଚଳ ଠୁଳ ହୋଇଛୁ ରୂପର ସାଗରେ ।
ପତିଙ୍କୁ ପାଇଣ ଧନୀ ଆନନ୍ଦେ ମଗନ
ଘନ ଘନ ପତି ମୁଖ କଲେ ନିରୀକ୍ଷଣ ।
ତାହାପରେ ଲୋମ ମୂଳୁ ଶ୍ରୀ ରାଧିକାଙ୍କର
ଲକ୍ଷ କୋଟି ଗୋପୀ ଜନ୍ମ ହୋଇଲେ ସେଠାର
ପରମ ସୁନ୍ଦରୀ ସର୍ବେ ନବୀନ ଯୌବନା
ଧରାତଳେ ନାହିଁ କେହି ରୂପର ତୁଳନା ।
ସମୁନ୍ନତ କୁଚଭରେ ସର୍ବେ ମନ୍ଦଗତି
ଷୋଡ଼ଶୀ ରୂପସୀ ସର୍ବେ ଅପୂର୍ବ ମୂରତି ।
ଗୋପୀକାର ପୂର୍ଣ୍ଣ ହେଲେ ଗୋଲକ ନଗରୀ
ତାହା ଦେଖି ଆନନ୍ଦିତ ହୋଇଲେ ମୁରାରି ।
ଶୁଣ ୨ ତାହାପରେ ଆହେ ତପୋଧନ
ଆଶ୍ଚର୍ଯ୍ୟ ଘଟଣା ଯେତେ ହୋଇଲା ଘଟନ ।
ବଳବାନ ଲକ୍ଷେ କୋଟି ଗୋପାଳ ନିକର
କୃଷ୍ଣଙ୍କର ଲୋମ ମୂଳୁଁ ହୋଇଲେ ବାହାର ।
ତାଙ୍କ କରେ ଗୋପୀକାଙ୍କୁ କୃଷ୍ଣ ଅରପିଲେ
ଗୋପୀଙ୍କୁ ପାଇ ଗୋପାଳେ ଉନ୍ମତ ହେଲେ
ଆନନ୍ଦେ ତାହାଙ୍କ ସଙ୍ଗେ ମଜ୍ଜିଲେ ସତ୍ୱର
ବାସକଲେ ଗୋପୀ ଆଉ ଗୋପାଳ ନିକର ।
ଅବଶେଷେ କାମଧେନୁ ଜନମ ହୋଇଲା
ଈଶ୍ୱରଙ୍କ ଅଙ୍ଗମଧ୍ୟୁ ସେହୁ ଜାତ ହେଲା ।
ବୃଷ ଆଉ ବତ୍ସାସହ ଲଭିଲେ ଜନମ
ମହାବଳ ଶାଳୀ ବୃଷ ବନ୍ଦିତ ଭୁବନ ।
ସେ ବୃଷଭ ନେଇ ହରି ଦେବ ପଞ୍ଚାନନେ
ବାହନ କରାନ୍ତେ ହେଲେ ହରଷିତ ମନେ ।
ତହୁପରେ ସିଂହ ଏକ ଜନମ ହୋଇଲା
ଶ୍ରୀକୃଷ୍ଣଙ୍କ ଦକ୍ଷକର୍ଣ୍ଣୁ ସେହୁ ବାହାରିଲା ।
ମହାବଳ ସିଂହ ସେହି ଖ୍ୟାତ ଚରାଚର
ବଳିଷ୍ଠ ଦେଖିଲେ ଯନ୍ତୁଁ ତାହାକୁ ଶ୍ରୀଧର ।
ବାହନ ନିମନ୍ତେ ତାହା ଦୁର୍ଗାଙ୍କୁ ଅର୍ପିଲେ
ସିଂହ ଲଭି ଦୁର୍ଗା ଦେବୀ ଆନନ୍ଦ ହୋଇଲେ ।
ପାଞ୍ଚଟି ଦିବ୍ୟ ବିମାନ ହୋଇଲା ତାପର
କୃଷ୍ଣଙ୍କ ଇଚ୍ଛାରେ ହେଲା ଶୁଣ ମୁନିବର ।
ରତନେ ଖଚିତ ସେହୁ ଅତି ମନୋରମ
ଉନ୍ନତ ତାହାର ଶତ ସହସ୍ର ଯୋଜନ ।
ସେହି ପରମାଣ ପ୍ରସ୍ଥ ଅଟଇ ତାହାର
ଏକ ଲକ୍ଷ ରଥ ତହିଁ ସର୍ବପରେ ସାର ।
ତାର ମଧ୍ୟେ ଲକ୍ଷେ ଗୃହ ଶୋଭାର ଆକାର
ସୁବର୍ଣ୍ଣ ପ୍ରଦୀପ ତହିଁ ଜଳୁଛି ଅପାର ।
ତଳ ୨ କୋଠା ତାର ଅତି ଚମତ୍କାର
ନୟନ ଝଲସି ଉଠେ ଦେଖିଲେ ଆବର ।
ଅସଂଖ୍ୟ ତୁରଙ୍ଗ ଯୋଡ଼ି ହୋଇଛୁ ବିମାନେ
ସ୍ଥିତ ହୋନ୍ତି ମହାଦେବ ଦେଖିଣ ନୟନେ ।
ପୁଣି ନାନା ଧ୍ୱଜା ଶୋହେ ରଥର ଉପରେ
ପବନରେ ନାଚ ଦିଶେ ଅତି ଶୋହଦୂରେ ।
କାଞ୍ଚନ ମୁକୁର କେତେ କଳନା ନ ଯାଏ
ମନୁଷ୍ୟର କଥା ଛାଡ଼ ସୁରମନ ମୋହେ ।
ସେ ମନୋହର ବିମାନ କରି ଦରଶନ
ସୃଷ୍ଟିକ ତାହାର ନାମ ଦେଲେ ଭଗବାନ ।
ଯେତେ ଯେତେ ଖାଦ୍ୟ ଦ୍ରବ୍ୟ ରହିଛୁ ବିମାନେ
ତୁଳନା କରିବା ପାଇଁ ନାହିଁ ତ୍ରିଭୁବନେ ।
ମଣି ମାଣିକ୍ୟ ଅପାର ଖଚିତ ଯହିଁରେ
ଅର୍ପଣ କଲେ ତାହାକୁ ଶ୍ରୀରାଧାଙ୍କ କରେ ।
ଆଉ ଏକ ରଥ ଦେଖି ପ୍ରଭୁ ଭଗବାନ
ଅପାର ଆନନ୍ଦ ହୋଇଲେକ ମନେ ମନ ।
ତାହାପରେ ଆନଗାଥା ଶୁଣ ମନଦେଇ
ଅବଶେଷେ ଗୁହ୍ୟକ ଯେ ଜନମିଲା ତହିଁ ।

କୃଷ୍ଣଙ୍କର ଗୁହ୍ୟ ଦେଶୁ ହୋଇବାରୁ ଜାତ
ଗୁହ୍ୟକ ବୋଲି ତାଙ୍କର ନାମ ହେଲା ଖ୍ୟାତ ।
ପିଙ୍ଗଳ ବରନ ସର୍ବେ ଅତି ମନୋହର
ଏକ ଯୁବା ତାହା ମଧ୍ୟେ ଅଟଇ ସୁନ୍ଦର ।
କୁବେର ତାହାର ନାମ ରଖିଲେକ ହରି
ସେ କୁବେର ବାମୁଁ ଏକ ଜନମିଲା ନାରୀ ।
ପରମ ସୁନ୍ଦରୀ ନାରୀ ଭୁବନ ମୋହନ
ରୂପ ଦେଖି ଭୁଲି ଯାଏ ମଦନର ମନ ।
ସେ ରମଣୀ ହେଲା ଶେଷେ କୁବେର ଘରଣୀ
ମୁରଜା ତାହାର ନାମ ଦେଲେ କମ୍ବୁପାଣି ।
ଧର୍ମ ନିଷ୍ଠା ପତିବ୍ରତା ମୁରଜା ସୁନ୍ଦରୀ
ଆନନ୍ଦ ଲଭିଲା ହୋଇ କୁବେରର ନାରୀ ।
କୁବେର ବାମ ଭାଗରେ ଯାଇ ଉଭାହେଲା
ଦେଖିଣ ପତିଙ୍କୁ ଅତି ହରଷ ହୋଇଲା ।
ବିନୟରେ ବେନି କର ଯୋଡ଼ି ସୁନ୍ଦରୀ
ଗୋଲୋକ ଈଶ୍ୱରେ ସ୍ତବ କଲା ସୁକୁମାରୀ ।
ବୋଇଲା ହେ ଜଗନ୍ନାଥ ଜଗତ ଜୀବନ
କିଏ ବା ଜାଣିବ ତବ ତତ୍ତ୍ୱ ତ୍ରିଭୁବନ ।
ତୁମେ ପ୍ରଭୁ କୃପାମୟ ସର୍ବର ଈଶ୍ୱର
ଅନାଦି ଅନନ୍ତ ତୁମେ ଦୟାର ସାଗର ।
ନିରାକାର ବ୍ରହ୍ମ ତୁମେ ଆହେ ସନାତନ
ଜୀବ ଉଦ୍ଧାରଣେ ହେଲ ସାକାର ଏକ୍ଷଣ ।
ନାହିଁ ପାଦ ନାହିଁ ପାଣି ହେ ପ୍ରଭୁ ତୁମର
ତଥାପି ଜଗ ହୋଇଛ ବ୍ରହ୍ମାଣ୍ଡ ମଧ୍ୟର ।
ତୁମଠାରୁ ଗୁଣ ତ୍ରୟ ହୋଇଛି ସୃଜନ
ସଗୁଣ ନିର୍ଗୁଣ ତୁମ୍ଭେ ଆହେ ସନାତନ ।
ସେ ତ୍ରିଗୁଣ ମଧ୍ୟୁ ତୁମେ ଅତୀତ ହେ ସାଇଁ
ବେଦରେ ତବ ମହିମା ବର୍ଣ୍ଣିତ ଅଛଇ ।
ତୁମଠାରୁ ସୃଷ୍ଟି ସ୍ଥିତି ତୁମଠାରୁ ଲୟ
ପଲକ ମାତ୍ରକେ କରି ପାର ଯେ ପ୍ରଳୟ ।
ଏତିକି ବିନତି କରୁଅଛି ଶ୍ରୀପୟରେ
ସଦା ମୋର ମତି ରହୁ ଥାଉ ତୁମ୍ଭଠାରେ ।
ଅନ୍ତକାଳେ ପାଏ ଯେସନ୍ତେ ସେ ପଦ୍ମଚରଣ
ଏହି ମାଗୁଣି ଅଟଇ ଆହେ ସନାତନ ।
ସ୍ତବ ଶୁଣି ତୁଷ୍ଟ ହୋଇ ଗୋଲୋକ ଈଶ୍ୱର
ବସିବା ପାଇଁ ଆସନ ଦେଲେ ତତପର ।

ଆଦେଶ ପାଇବା ମାତ୍ରେ ମୁରଜା ସୁନ୍ଦରୀ
ବସିଲେକ ପତି ସଙ୍ଗ ତୋଷ ହୋଇକରି ।
ତାହାପରେ ଯାହା ହେଲା ଶୁଣ ମୁନିବର
ଏ ଗ୍ରନ୍ଥ ଶ୍ରବଣ ପଠନରେ ସର୍ବ ତର ।
ଶେଷେ ଦେବେ ମୁନି ଗଣ ଜନମ ହୋଇଲେ
ହରିଙ୍କ ଇଚ୍ଛାରେ ସୃଷ୍ଟି ହେଲା ସେହିକାଳେ ।
ଭୂତ ପ୍ରେତ ପିଶାଚାଦି ଲଭିଲେ ଜନମ
ଶିବଙ୍କ କରେ ଅର୍ପିଲେ ତାଙ୍କୁ ଭଗବାନ ।
ଦେବ ଯୋନୀ ପାଇ ଶିବ ହୋଇଲେ ଆନନ୍ଦ
ବଦନ କମଳ ତାଙ୍କ ଯେସନ୍ତେ ପୂର୍ଣ୍ଣଚନ୍ଦ୍ର ।
ତାହାପରେ ଆନଗାଥା ଶୁଣ ସୁଜ୍ଞଜନ
ଅବଶେଷେ ଜନମିଲେ ଯେ ବୈଷ୍ଣବଗଣ ।
ତେଣୁ ସେ ବୈଷ୍ଣବଗଣ ହରିଙ୍କ ଚରଣେ
ଭଜନ କରନ୍ତି ଦିବାନିଶି ଅନୁକ୍ଷଣେ ।
ସେହି ପ୍ରଭୁଙ୍କ ପୟରେ ପଶି ହେ ଶରଣ
ସକଳ ପାପରୁ ନିଷ୍ଟେ ହୋଇବ ମୋଚନ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭିତ ଶ୍ରୀକରେ
ସୁଶୋଭନ ଦିଶେ ପୀତବସ୍ତ୍ର ଯେ କଟିରେ ।
ରତ୍ନ ଖଚିତ କିରୀଟ ମସ୍ତକେ ଶୋଭିତ
ହରି ୨ ବୋଲି ସର୍ବେ ହୋଇ ଆନନ୍ଦିତ ।
ତୁଳସୀର ମାଳମାଳ ଦିବ୍ୟ କରେ ଶୋଭେ
କୋଟି ସୂର୍ଯ୍ୟ ପରି ପ୍ରଭା ଜନମନ ମୋହେ ।
ଶଶାଙ୍କ ବଦନେ ସୁମଧୁର ହାସ୍ୟ ଶୋଭା
ବୈଷ୍ଣବ ମାନଙ୍କର ହୃଦୟ ଚନ୍ଦ୍ରମା ।
ସେ ବୈଷ୍ଣବ ଗଣେ ସୃଷ୍ଟି ଜଗତ ଈଶ୍ୱର
ନାରାୟଣେ ସମର୍ପଣ କଲେ ଗଦାଧର ।
ବୈଷ୍ଣବ ଜନଙ୍କୁ ଲଭି ଦେବ ନାରାୟଣ
ଆନନ୍ଦ ଜଳଧି ମଧ୍ୟେ ହୋଇଲେ ମଗନ ।
ଶେଷେ ଭୈରବ ଜନ୍ମିଲେ ଆହେ ଋଷିଗଣ
ହରିଙ୍କ ଦକ୍ଷ ଚକ୍ଷୁରୁ ହୋଇଲା ଉତ୍ପନ୍ନ ।
ଭୟଙ୍କର ବଳ ତାର ଭୀଷଣ ମୂରତି
ଶିରେ ଶୋଭେ ଦୀର୍ଘ ଜଟା ଅଦ୍ଭୁତ ଆକୃତି ।
ଭୀଷଣ ନୟନ ତାର ଅତି ଭୟଙ୍କର
ଦେଖିଲା ମାତ୍ରେ ଭୟରେ କମ୍ପିବ ଶରୀର ।
ଭୈରବ ଜନମ ଲଭି ବିନୟ ବଚନେ
ଭକ୍ତିଭରେ ସ୍ତବ କଲା କୃଷ୍ଣ ସନାତନେ ।

ବୋଇଲ ଜଗତନାଥ ଘେନ ନମସ୍କାର
ମୁକ୍ତିର କାରଣ ତୁମେ ସର୍ବ ଜୀବଙ୍କର ।
ତୁମ ଯୋଗେ ଭକ୍ତି ମୁକ୍ତି ସଭଙ୍କର ହୁଏ
ତୁମ ଲାଗି ଭକ୍ତ ଭବ ବନ୍ଧ ହୁଏ କ୍ଷୟ ।
ତୁମରି ମାୟାରେ ଜୀବ ବିମୋହିତ ହୁଏ
ତୁମ ମାୟା ଜାଲେ ପଡ଼ି ସେହୁ ଘୁରୁଥାଏ ।
ନିବେଦନ କରେ ପ୍ରଭୁ ତବ ଶ୍ରୀପଦରେ
କୃପା କରି ଯଦି ନାଥ ସୃଜିଲେ ଦାସରେ ।
ଏହି ଭିକ୍ଷା ତବ ପାଦେ ଅଛି ସନାତନ
ହୃଦ ପଦ୍ମେ ଲଭେ ଯେହ୍ନେ ଏ ରଙ୍ଗା ଚରଣ
ଆଉ ମୋ ହୃଦରେ କିଛି ମାତ୍ର ବାଞ୍ଛା ନାହିଁ
ଏହି ଅନୁଗ୍ରହ କର ତ୍ରୈଲୋକ୍ୟ ଗୋସାଇଁ ।
ଭୈରବର ସ୍ତବ ଶୁଣି ଗୋଲକ ଈଶ୍ୱର
ପରମ ସନ୍ତୁଷ୍ଟ ହେଲେ ତାହାର ଉପର ।
ବସିବା ପାଇଁ ଆସନ କରିଲେ ଅର୍ପଣ
ଆଦେଶ ପାଇ ଭୈରବ ବସିଲା ତକ୍ଷଣ ।
ତାହାପରେ ଶ୍ରୀକୃଷ୍ଣଙ୍କ ବାମ ଚକ୍ଷୁ ପର
କ୍ଷେତ୍ରପାଳ ଜନ୍ମ ଧରେ ମହାଭୟଙ୍କର ।
ତ୍ରିନେତ୍ର ଶୋଭିତ କିବା ଅତି ଚମତ୍କାର
ଦିଗମ୍ବର ଭ୍ରମକାୟ ଶୈବ ଅବତାର ।
ବିସ୍ତାରିତ ଜଟାଭାର ଶୋହେ ଶିରପରେ
ଖପର ତ୍ରିଶୂଳ ଶୋଭେ ଭୟଙ୍କର କରେ ।
ଶିବଙ୍କ ସଙ୍ଗରେ ଭେଦ ତିଳେ ମାତ୍ର ନାହିଁ
ଆନନ୍ଦେ ସୃଜିଲେ ପୁଣି ବ୍ରହ୍ମାଣ୍ଡ ଗୋସାଇଁ ।
ଶତ ଶତ ଲକ୍ଷ ଲକ୍ଷ ଡାକିନୀ ଯୋଗିନୀ
ଜନମ ଲଭିଲେ ଗଣି ନୁହେଁ ତାହା ପୁଣି ।
ଏହାଙ୍କୁ ଜନମ କରି ଜଗତ ଈଶ୍ୱର
ଶିବଙ୍କ କରେ ଅର୍ପଣ କରିଲେ ସତ୍ୱର ।
ଏମାନଙ୍କୁ ପାଇ ଶିବ ଆନନ୍ଦ ହୋଇଲେ
ହରିଙ୍କ ଚରଣ ତଳେ ସାଦରେ ବନ୍ଦିଲେ ।
ଈଶ୍ୱରଙ୍କ ଲୀଳା କିବା ଶୁଣ ତପିବର
ତିନି କୋଟି ବେଦ ଜନ୍ମ ହୋଇଲେ ସତ୍ୱର ।
କୃଷ୍ଣଙ୍କର ପୃଷ୍ଠ ଦେଶୁ ସକଳେ ଜନ୍ମିଲେ
ଏ ଜଗତେ ବେଦ ନାମେ ବିଖ୍ୟାତ ହୋଇଲେ
ଶୁଣ ଆହେ ମୁନିଜନ ଦେଇ ମନକର୍ଣ୍ଣ
ଶ୍ରୀହରିଙ୍କ ଲୀଳା କେବା କରିବ ବର୍ଣ୍ଣନ ।
ଭକ୍ତିଭରେ ଏହା ଯେହୁ କରିବ ଶ୍ରବଣ
ଶୋକ ତାପ ଭବବ୍ୟାଧି ହୋଇବ ହରଣ ।
ତାହାଙ୍କ ହୃଦରେ ହରି ଭକ୍ତି ଜନମିବ
ଅନ୍ତକାଳେ କୃଷ୍ଣଲୋକେ ଯାଇ ବିଶ୍ରମିବ ।
ଅଧମ କ୍ଷେତ୍ରମୋହନ କରେ ନିବେଦନ
କୃଷ୍ଣ ନାମ ଭଜ ସର୍ବେ ହୋଇବ ମୋଚନ ।

— — —

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଦେବାଦେବୀ ଉତ୍ପତ୍ତି କଥନେ ନାମ ଷଷ୍ଠୋଽଧ୍ୟାୟଃ

# ସପ୍ତମ ଅଧ୍ୟାୟ

## ସୃଷ୍ଟି ସର୍ଜନା କରିବାକୁ ବିଧାତାଙ୍କୁ ଆଦେଶ ଦେବା ଓ ଦେବତାମାନଙ୍କୁ ଶ୍ରୀକୃଷ୍ଣଙ୍କର ପତ୍ନୀ ପ୍ରଦାନ

ଋଷିଗଣଙ୍କୁ ସମ୍ବୋଧି ସୌତି ମହାମତି
ବୋଇଲେକ ଶୁଣ ସର୍ବେ ଅପୂର୍ବ ଭାରତୀ ।
ହରିଙ୍କ ସମସ୍ତ ଲୀଳା ଯେତେ ଶୁଣୁଥିବ
ଶ୍ରବଣ ମଧ୍ୟେ ଅମୃତ ବରଷା ହୋଇବ ।
ଅଙ୍ଗରୁ ସକଳ ପାପ ହୋଇବ ମୋଚନ
ଦୟା କରିବେ ଇଷ୍ଟସ୍ୱ କୃଷ୍ଣ ଭଗବାନ ।
ତାହାଙ୍କୁ ଯଦ୍ୟପି ସଦାକାଳେ ଭଜୁଥିବ
ଜପ ତପ କରିବାକୁ ଆଉ ନ ଲାଗିବ ।
ଏତିକ କଥାତେ ଏକା ହରିନାମ ସାର
ହରିଭଜନେ ଶ୍ରେଷ୍ଠ କେହି ନାହିଁ ହେଜୁକର ।
ଯେଉଁ ଜନ ରଖେ ଭକ୍ତି ଶ୍ରୀକୃଷ୍ଣ ପଦରେ
ଅନ୍ତମେ-ସେଜନ ଯାଏ ବୈକୁଣ୍ଠ ନଗରେ ।
ଇହଲୋକେ ବହୁ ସୁଖ ଲଭଇ ସେ ସେହି
ବିକାଶିତ ହୃଦେ ବାସ କରେ ସବୁଠାଇଁ ।
ସୁରଗଣମାନେ ତାକୁ ଅର୍ଚ୍ଚନା କରନ୍ତି
ଯମଦୂତେ ତାହା ପାଶେ ପଶି ନ ପାରନ୍ତି ।

ଯେ ନାମ ସତତ ମୁଖେ ଗାନ୍ତି ପଞ୍ଚାନନ
ଯେଉଁ ନାମ ଗାଇ ଶିବ ବିମୋହିତ ମନ ।
ସେ ନାମକୁ ଯେଉଁଜନ ମୁଖରେ ନ ଗାଏ
ତାହାଠାରୁ ପାପୀ ନାହିଁ ଏ ବ୍ରହ୍ମାଣ୍ଡ ମଧ୍ୟେ ।
ସେହି ନରଙ୍କ ଅଧମ ଅଟେ ଦୁରାଶ୍ୱର
ଅନ୍ତିମେ ନରକେ ବାସ ଅଟଇ ତାହାର ।
ଅତଏବ ଶୁଣ ଶୁଣ ଆହେ ତପୋଧନ
ଜଗତରେ ସାର ମାତ୍ର ଏକା କୃଷ୍ଣ ଧନ ।
ଏଇରୂପେ ଦେବା ଦେବୀ କରିଣ ସୃଜନ
ଯଥା ଯୋଗ୍ୟ ନାରୀ କଲେ ସଭିଙ୍କୁ ଅର୍ପଣ ।
ଲକ୍ଷ୍ମୀ ସରସ୍ୱତୀ ଦେଲେ ନାରାୟଣ କରେ
ଆଜ୍ଞାଦେଲେ ରହିବାକୁ ବଇକୁଣ୍ଠ ପୁରେ ।
ବ୍ରହ୍ମାଙ୍କୁ ଅର୍ପଣ କଲେ ସାବିତ୍ରୀ ସୁନ୍ଦରୀ
ଧର୍ମଙ୍କୁ କରିଲେ ଦାନ ମୂର୍ତ୍ତିମାନ ନାରୀ ।
କନ୍ଦର୍ପ କରେ ରତିଙ୍କୁ କରିଲେ ପ୍ରଦାନ
ମନୋରମାକୁ ଲଭିଲେ ଯେ ଯକ୍ଷ ରାଜନ ।
ଯାହା ବାମ ଅଙ୍ଗୁଁ ଜନ୍ମିଥିଲ ଯେଉଁ ନାରୀ
ତାହାକୁ ଅର୍ପିଲେ ତାରେ ଦେବ ଦେବ ହରି
ଏଇରୂପେ ସମସ୍ତଙ୍କୁ କରିଣ ଅର୍ପଣ
ଶିବଙ୍କୁ ସମ୍ବୋଧିପରେ କହିଲେ ବଚନ ।
ଆମ୍ଭର ବଚନ ରଖ ଆହେ ଦିଗମ୍ବର
ଦୁର୍ଗାଦେବୀ ଭଗବତୀ ରୂପର ଆକାର ।
ତାଙ୍କପରି ଲୀଳାବନ୍ତ ନାହିଁ କେଉଁଠାରେ
ଶ୍ରେଷ୍ଠ ସୁ ସୁନ୍ଦରୀ ସେହି ଅଟନ୍ତି ତ୍ରିପୁରେ ।
ପତ୍ନୀରୂପେ କର ତୁମ୍ଭେ ତାହାଙ୍କୁ ଗ୍ରହଣ
ତାହାଙ୍କ ବଚନ ଶୁଣି ଦେବ ପଞ୍ଚାନନ ।
ବୋଇଲେକ ଶୁଣ ପ୍ରଭୁ ବଚନ ମୋହର
ରମଣୀରେ କିବା କାର୍ଯ୍ୟ ଆହେ ଗୁଣାଧାର ।
ଅହର୍ନିଶି ତବ ପାଦ କରିଣ ଚିନ୍ତନ
ଏକମାତ୍ର ହୃଦେ ମୋର ଅଟେ ଏ ବାସନ ।
ସର୍ବଦା ଗାଇବି ତବ ଗୁଣ ପଞ୍ଚମୁଖେ
କରିବି ମୂରତି ଧ୍ୟାନ ମୁହିଁ ମନ ସୁଖେ ।
ଭକତି ରଖିବି ସଦା ଚରଣେ ତୁମ୍ଭର
ଏଇ ମାତ୍ରକ କାମନା ଆହେ ଗୁଣାଧାର ।
ନିବେଦନ କରେ ପ୍ରଭୁ କହନ୍ତୁ ଶ୍ରବଣ
ତବ ମୂର୍ତ୍ତି ଭିନ୍ନ ଆନେ ନାହିଁ ଚଳେମନ ।
ସୁଧାସମ ନାମ ମୂର୍ତ୍ତି ମାନୁଛି ମୁଁ ସତ୍ୟ
କିନ୍ତୁ ଏକ କଥା ବୋଲେ ଶୁଣ ଜଗନ୍ନାଥ ।
ନୟନରେ ସୁଧାସମ ଦେଖୁଅଛି ମୁହିଁ
ହୃଦରେ ଗରଳ ଥାଇପାରେ ମୃତ୍ୟୁ ହୋଇ ।
ଜଗତକୁ ଭୁଲଉଛି ଏହି ନାରୀ ରୂପ
ଭକତି ପଥରେ ଅଟେ ଏ କଣ୍ଟା ସ୍ୱରୂପ ।
ଧର୍ମର କଣ୍ଟକ ନାରୀ ନାହିଁ ଯେ ସଂଶୟ
ଭକ୍ତର ପରମ ବନ୍ଧ ଆହେ ଦୟାମୟ ।
କାଳ ଭୁଜଙ୍ଗିନୀ ସମ ନାରୀଏ ଅଟନ୍ତି
ସମସ୍ତେ ଦଂଶନ କରି ପରାଣ ହରନ୍ତି ।
କାମିନୀ ପାପିନୀ ତଥା ଆହେ ନିରଞ୍ଜନ
ଭକ୍ତର କଣ୍ଟକ ନାରୀ ପିଶାଚୀ ସମାନ ।
ଯେତେବେଳେ ଯେଉଁ ବାଞ୍ଛା ଅନ୍ତରେ ଜନ୍ମଇ
ନାରୀମାନଙ୍କର ସ୍ୱର୍ଗେ ତାହା ନାଶ ଯାଇ ।
ନାରୀ ଲାଗି ଆତ୍ମାତତ୍ତ୍ୱ ପରମତତ୍ତ୍ୱ ଯାଏ
ବନ୍ୟେ ଅରଣ୍ୟ ମଧ୍ୟେ ରମଣୀ ବୁଲାଏ ।
ହୃଦୟେ ସତତ ଆଶା ଅଟେ ଏହି ମୋର
ତବ ଚିନ୍ତାବନା ନାହିଁ ଆନେ ପ୍ରତିକାର ।
ଦିବସ ରଜନୀ କରି ତବ ପାଦେ ଧ୍ୟାନ
ବିତାଇବି କାଳ ଦୟାକର ସନାତନ ।
ଦୟାମୟ ନାମ ତବ ବିଦିତ ସଂସାରେ
ତେବେ କିମ୍ପା ଦୟା ନାହିଁ ମୋହର ଉପରେ ।
ତପସ୍ୟାରେ ବନ୍ଧ ଯେହୁ ଘଟାଇବ ମୋର
କିମ୍ପା ସେ ଆଦେଶ କରୁଅଛ ଚକ୍ରଧର ।
ନାରୀ ସହବାସେ ମୋର ନାହିଁ ଯେ ବାସନା
ମହାବନ୍ଧକର ପ୍ରଭୁ ଅଟନ୍ତି ଲଳନା ।
ସଦା ଯେହ୍ନେ ମତି ରହେ ତବ ଶ୍ରୀଚରଣେ
ମୁକ୍ତି ଯେହ୍ନେ ଲଭି ପୁଣ ଆସିବି ଏ ସ୍ଥାନେ ।
କିବା ଜପ କିବା ତପ ତୀର୍ଥ ଦରଶନ
ତବ ପାଦ ସମ ନୋହେ ଆହେ ନିରଞ୍ଜନ ।
ଭକ୍ତିଯୋଗେ ଭକ୍ତମାନେ ତୁମ୍ଭଙ୍କୁ ପାଆନ୍ତି
ଭକତର ଧନ ତୁମେ ହେ ଜଗତ ପତି ।
ନାରୀ ସହବାସେ ଆଜ୍ଞା ନ କରନ୍ତୁ ମୋରେ
ଏହି ଭିକ୍ଷା ମାଗୁଅଛି ତବ ଶ୍ରୀପଦରେ ।
ଶିବଙ୍କଠାରୁ ଉତ୍ତର ପାଇ ଦୟାମୟ
ହରହସି ସୁ ମଧୁରେ ବୋଲେକ ଅଭୟ ।

ବୋଇଲେ ଆମ୍ଭର ଗୀର ଶୁଣ ପଞ୍ଚାନନ
ସଂସାରରେ ଭକ୍ତନାହିଁ କେ ତବ ସମାନ ।
ବୈଷ୍ଣବ ସମ ନୋହିବେ ତୁମ୍ଭ ସଙ୍ଗତରେ
ପରମ ବୈଷ୍ଣବ ତୁମ୍ଭେ ଅଟ ସଂସାରରେ ।
ସର୍ବଦା ରହିବୁ ଆମ୍ଭେ ଅନ୍ତରେ ତୁମ୍ଭର
ମହାସୁଖି ହେବ ତୁମ୍ଭେ ତିନ ବ୍ରହ୍ମାଣ୍ଡର ।
ଶତକୋଟି କଳ୍ପ ତପ କର ଆଚରଣ
ଦିବ୍ୟଜ୍ଞାନ ଲଭିବଟି ଆହେ ପଞ୍ଚାନନ ।
ମରଣ ଭୟ ତୁମ୍ଭର ଦୂର ହୋଇଯିବ
ମୃତ୍ୟୁକୁ ଜୟ କରିଣ ମୃତ୍ୟୁଞ୍ଜୟ ହେବ ।
ଶତ ଶତ ପ୍ରଜାପତି ହୋଇବେ ପତନ
ତଥାପି ତୁମ୍ଭର ନାଶ ନ ହୋଇବ ଜାଣ ।
ତବ ସମ ବିଷ୍ଣୁଭକ୍ତ କେହି ନ ହୋଇବେ
ମୋର ପ୍ରିୟତମ ହେବ ଏହି ତିନ ଭବେ ।
ଧରାଧାମେ ଯେ କରିବ ତୁମ୍ଭକୁ ନିନ୍ଦନ
ବିମୁଖ ହୋଇବୁ ଆମ୍ଭେ ତାହାପରେ ଜାଣ ।
କୃପା ଦୃଷ୍ଟି ନ ରହିବ ତା ପ୍ରତି ଆମ୍ଭର
ସେ ଜନ ଅନ୍ତମେ ଯିବେ ନରକ ଗହ୍ୱର ।
ଯାବତ ଧରାରେ ଚନ୍ଦ୍ର ଦିବାକର ଥିବେ
ତାବତ କାଳ ନରକ ସେ ଜନ ଭୋଗିବେ ।
ଏସନି ଆମ୍ଭର ବାକ୍ୟ କରି ହେ ଶ୍ରବଣ
ତୁମ୍ଭର ନିମନ୍ତେ ଦୁର୍ଗାଙ୍କର ଉତପନ ।
ଶତକୋଟି କଳ୍ପ ଯେହୁ ତପସ୍ୟା କରଇ
ରମଣୀ ଭାବେ ଦୁର୍ଗାଙ୍କୁ କୋଳରେ ଧରଇ ।
ତବ ସମ ଭାଗ୍ୟବାନ ନାହିଁ ଆନ ଜନ
ଯେ ହେତୁ ତୁମ୍ଭ ଉପରେ ଦୁର୍ଗା ସୁପ୍ରସନ୍ନ ।
ଉମାପତି ତବ ନାମ ରଟିବେ ସଂସାର
ସତ୍ୟ ସତ୍ୟ କହିଲି ମୁଁ ତବ ଅଗ୍ରତର ।
ପାର୍ବତୀର ସହ ତବ ହୋଇବ ମିଳନ
ଅପୂର୍ବ ଆନନ୍ଦ ପାଇବ ହେ ଜନାର୍ଦ୍ଦନ ।
କେବଳ ତପସ୍ୱୀ ତୁମ୍ଭେ ନୁହଁ ମହେଶ୍ୱର
ପରମ ବୈଷ୍ଣବ ଆବର ଯେ ଯୋଗୀବର ।
କେତେବେଳେ କରିବ ଯେ ଗୃହରେ ବସତି
କେତେବେଳେ ବନମଧ୍ୟେ ଭ୍ରମିବ ସମ୍ପ୍ରତି ।
ତୀର୍ଥବାସୀ ହେବ କେବେହେଁ ଆହେ ପଞ୍ଚାନନ
ତବ ତତ୍ତ୍ୱ ନ ବୁଝିବେ ସାଧାରଣ ଜନ ।

ପତିବ୍ରତା ସତୀ ଥିବ ଯାହା ସଙ୍ଗତରେ
ତାର ସମ ସୁଖି କେବା ଅଛି ଅବନୀରେ ।
ଯଦ୍ୟପି ଦୁଃଶୀଳ ପତି ଭାଗ୍ୟବଶେ ହୁଏ
ପତିବ୍ରତା ତାରେ ରତ ତଥାପି ଓ ରହେ ।
କୁଳଟା ରମଣୀ ଯେହୁ ଅବନୀ ମଧ୍ୟରେ
ପତି ଭକ୍ତି ମୁଖେ ମାତ୍ର ଗରଳ ଅନ୍ତରେ ।
ପତିବ୍ରତା ନାରୀ ଅଟେ ରମଣୀ ପ୍ରଧାନ
ଜଗତେ ନାହିଁ କେ ସମ ସତୀର ସମାନ ।
ସତୀ ସହ ସମ୍ମିଳନ ହୁଏ ଯେଉଁ ଜନ
ଅପାର ଆନନ୍ଦେ ଯେହୁ ହୁଏ ନିମଗନ ।
ଜଗତବନ୍ଦ୍ୟ ଦୁର୍ଗା ଦେବୀ ସତୀଙ୍କ ପ୍ରଧାନ
ବୈଷ୍ଣବ ପ୍ରଧାନ ଯେହୁ ଆହେ ପଞ୍ଚାନନ ।
ତାହାଙ୍କ ମିଳନେ ହେବ ମହା ସୁଖୋଦୟ
ଅତଏବ ଶୁଣ ମନେ ନ କର ସଂଶୟ ।
ଅଙ୍କ ଲକ୍ଷ୍ମୀ ରୂପେ ତାରେ ଘେନ ଶୂଳପାଣି
ପାଇବ ପରମ ସୁଖ ଅନ୍ତରରେ ଜାଣି ।
ଯେଉଁ ଜନ ଭକ୍ତି କରି ଏକାନ୍ତ ଅନ୍ତରେ
ତୁମ୍ଭ ଦୁହିଁଙ୍କୁ ପୂଜିବ ମନ ଆନନ୍ଦରେ ।
ଦେହ ଅନ୍ତେ ସେହି ଜନ ଲଭିବେ ସୁଗତି
ସୁରପୁରେ ମହାନନ୍ଦେ କରିବେ ବସତି ।
ଅଯୁତ କଳପ ସେହୁ ରହିବେ ସ୍ୱର୍ଗରେ
କର୍ମ୍ମକ୍ଷୀଣ ହୋଇ ପୁଣ ଆସିବେ ସଂସାରେ ।
ଧନେ ଧନବାନ ହୋଇ ସେହି ସାଧୁଜନ
ପୁତ୍ର ପୌତ୍ରୀ ଘେନି ସୁଖେ କଟାଇବେ ଦିନ ।
ଅବନୀ ମଧ୍ୟରେ ବହୁ ମାନ ସେ ପାଇବେ
ବହୁ ବିଦ୍ୟା ପଢ଼ିଣ ପଣ୍ଡିତ ହୋଇବେ ।
ଶ୍ମଶାନେ ଏକାନ୍ତେ କିବା ବିଜନ କାନନେ
ଯେ ଜନ ପୂଜିବେ ତୁମ୍ଭ ଦୁହେଁ ଏକମନେ ।
ମହାସାଧୁ ସେହିଜନ ଜାଣିବେ ଧରାରେ
ପଠନ ତାହାର ନାମ କହିଲୁ ତୁମ୍ଭରେ ।
ତାହାର ପବନ ନାମ ଯେଉଁଜନ ସ୍ମରେ
ପାପରାଶି ନ ରହଇ ତାହାର ଅନ୍ତରେ ।
ବିଖ୍ୟାତ ତୁମ୍ଭର ଭକ୍ତ ସେଇ ସାଧୁଗଣ
ଯେ ଜନ ସାଦରେ ନିଏ ତୁମ୍ଭର ଶରଣ ।
ଦେହଅନ୍ତେ ସେଇଜନ ସୁରପୁରେ ଯାଏ
ସତ୍ୟ ସତ୍ୟ କଥା ଏହା ନ କର ସଂଶୟେ ।

ତାହା ପୁଣ୍ୟ କଥା କେହି ବର୍ଣ୍ଣି ନ ପାରଇ
ପାତକ ଶତଳେହେଁ ତାର ଅଙ୍ଗେ ନ ରହଇ ।
ଶୁଣ ୨ ଆମ୍ଭ ବାକ୍ୟ ଆହେ ମଙ୍ଗଳାନନ
ତବ ନାମ ଯେଉଁ ଜନ କରେ ଉଚ୍ଚାରଣ ।
ତାହାର ପୁଣ୍ୟର ଗାଥା କହି ନ ହୁଅଇ
ଅନନ୍ତ ଅନନ୍ତ ମୁଖେ ବର୍ଣ୍ଣି ନ ପାରଇ ।
ଦେହତ୍ୟାଗ କାଳେ ଶିବ ନାମକୁ ସ୍ମରଲେ
ସେ ଜନ ବୈକୁଣ୍ଠେ ଯାଇ ବସେ ଆନନ୍ଦରେ
ଏତେକ କହିଣ ହରି ଦେବ ମହେଶ୍ୱରେ
ମଧୁର ବଚନ ପୁଣି କହିଲେ ଦୁର୍ଗାରେ ।
କଳ୍ପାନ୍ତ ରହ ଦେବୀ ଗୋଲକ ଆଳୟ
ତାପରେ ଲଭି କରିବ ଶିବ ଦୟାମୟ ।
ଶିବଙ୍କ ବାମରେ ଶେଷେ ବସିବ ସୁଦଶି
ଲଳନା ରତନେ ତୁମେ ପରମ ଈଶ୍ୱରୀ ।
ପତିରତା ପତିବ୍ରତା ତୁମେ ଭଗବତୀ
ସତୀ ଶିରୋମଣି ତୁମେ ଶିବ ପ୍ରିୟବତୀ ।
ତୁମ୍ଭର ଉପମା ନାହିଁ ଏ ତିନି ଭୁବନେ
ହର କଣ୍ଠହାର ହେବ ନିଷ୍ଟେ ରଖ ମନେ ।
ଯାବତ ତୁମକୁ ଗ୍ରହି ନାହାନ୍ତି ଈଶ୍ୱର
ତାବତ କାଳ ଏଠାରେ ସୁଖେ ବାସ କର ।
ତୁମ ଛଟାରେ ଗୋଲକ ଉଜ୍ଜଳ ହୋଇବ
ଆଦ୍ୟମା ପ୍ରକୃତି ତୁମେ ରମଣୀ ଉତ୍ତମ ।
ତବ ଶକତି ଦେଖିଣ ଦେବ ପଞ୍ଚାନନ
କନ୍ୟାବତେ ନେବେ ସ୍ନେହେ କରି ଅଲିଙ୍ଗନ
କଳ୍ପ ଶେଷେ ସତ୍ୟଯୁଗ ହୋଇଲେ ଉଦୟ
ଦକ୍ଷଙ୍କ ଆଳୟେ ତୁମ୍ଭେ ଜନ୍ମିବ ନିଶ୍ଚୟ ।
ସେତେବେଳେ ହୋଇବ ତୁମେ ଦକ୍ଷର ନନ୍ଦିନୀ
ତୁମ୍ଭରେ କରିବେ ଭାର୍ଯ୍ୟା ଶଶୀଚୂଡ଼ାମଣି ।
ତ୍ରିଭୁବନେ ଧନ୍ୟା ହେବ ତୁମେ ରୂପବତୀ
ହର ପ୍ରଣୟିନୀ ହେବ ଆହେ ମହାସତୀ ।
ଯଜ୍ଞ ଆୟୋଜନ ଦକ୍ଷ ଯେ ବେଳେ କରିବେ
ଶିବଙ୍କୁ ସେକାଳେ ନିମନ୍ତ୍ରଣ ନ କରିବେ ।
ତାହାଙ୍କ ନିନ୍ଦା କରିବେ ଦକ୍ଷ ନରରାୟ
ସେ ସବୁ ଶ୍ରବଣ କରି ମନ କରି ଦୃଢ଼ ।
ଯେତେବେଳେ ଦକ୍ଷ ଯଜ୍ଞେ ଶିବେ ନ ବରିବେ
ନାନା ପ୍ରକାର ଅପମାନ ତାଙ୍କୁ ଦେବେ ।
ତାହା ସହ୍ୟ ନ କରିଣ ତୁମେ ମହାସତୀ
ପତି ନିନ୍ଦା ଶୁଣି ତନ୍ତି ମିଳିବ ତଡ଼ିତ ।
ଦେଖିବ ସକଳେ ଜନ୍ତୁ ତବ ପତି ନାହିଁ
କ୍ରୋଧେ ଜ୍ୱଳନ୍ତ ଅନଳେ ପଡ଼ିବ ଯେ ଡେଇଁ ।
ତାହାପରେ ହିମାଳୟେ ଜନମ ଲଭିବ
ମେନକା ଦେବୀ ତୁମ୍ଭର ଜନନୀ ହୋଇବ ।
ସେ ଜନ୍ମେ ପାର୍ବତୀ ନାମ ହୋଇବ ତୁମ୍ଭର
ବିବାହ ହେବେ ତୁମ୍ଭଙ୍କୁ ପୁଣି ଦେବ ହର ।
ହରଙ୍କୁ ପାଇଣ ତୁମେ ଆନନ୍ଦ ହୋଇବ
ପତିପତ୍ନୀ ବେନିଜନେ ସୁଖେ ବିହରିବ ।
କହିଲୁ ତୁମ୍ଭର ଆଗେ ଏ ଆଗତ ଗିର
ତିଳେ ମାତ୍ର ମିଥ୍ୟା ନାହିଁ ଜାଣ ସ୍ୱା ମଧର ।
ପୁନଃ ପୁନଃ ଯେତେ ବାର ଜନମ ଲଭିବ
ପ୍ରତିଥର ପତିରୂପେ ଶିବଙ୍କୁ ପାଇବ ।
ସକଳ ଜନେ ପୂଜିବେ ତୁମ୍ଭର ଚରଣ
ଯକ୍ଷ ରକ୍ଷ ନାଗ ସୁର ଆଉ ନରଗଣ ।
ଏତେ କହି ହରି ତାଙ୍କୁ ଆନନ୍ଦ ମନରେ
ଦଶାକ୍ଷ ମନ୍ତ୍ର ଅର୍ପଣ କରିଲେ ସାଦରେ ।
ପ୍ରଫୁଲ୍ଲ ବଦନେ ଶେଷେ ହୋଇ ହୃଷ୍ଟମନ
ଶିବଙ୍କୁ କରିଲେ ମହାମନ୍ତ୍ର ସମର୍ପଣ ।
ତ୍ରୟୋଦଶାକ୍ଷର ମନ୍ତ୍ର ଦେଲେକ ତାହାଙ୍କୁ
ମନ୍ତ୍ର ପାଇ ତୋଷ ହେଲା ଶିବଙ୍କର ବୁକୁ ।
ଅବଶେଷେ ଦେବ ଦେବ କୃଷ୍ଣ ସନାତନ
ଅପର ସଭିଙ୍କୁ ମନ୍ତ୍ର କରିଲେ ପ୍ରଦାନ ।
ଧର୍ମ ବାୟୁ ଅଗ୍ନି କାମ ଥିଲେ ଯେତେ ଜନ
ସଭିଙ୍କୁ ଅର୍ପିଲେ ମନ୍ତ୍ର ଜଗତ ଜୀବନ ।
ଶେଷରେ ଡକାଇ ବିଭୁ ଦେବ ପଦ୍ମାସନେ
ସୃଷ୍ଟି କରିବାକୁ ଆଜ୍ଞା ଦେଲେ ସେହିସ୍ଥାନେ
ହୋଇଲେ ବିରଞ୍ଚି ନାମ ହୋଇବ ତୁମ୍ଭର
ତପସ୍ୟାରେ ରତ ହୁଅ କହିଲୁ ସତ୍ୱର ।
ସହସ୍ର ବରଷ ତପ କରି ଅନୁଷ୍ଠାନ
ଜୀବଙ୍କୁ ସର୍ଜନା କର ଆହେ ମତିମାନ ।
ଏତେ ବୋଲି ନିଜ ମାଳା ଦେଇଣ ସାଦରେ
ବ୍ରହ୍ମାଙ୍କ ଗଳାରେ ଦେଲେ ଆନନ୍ଦ ମନରେ ।
କୃଷ୍ଣଙ୍କ ଆଦେଶ ପାଇ ଦେବ ପଦ୍ମାସନ
ପ୍ରଣମି କାର୍ଯ୍ୟ ଉଦ୍ଦେଶେ କରିଲେ ଗମନ ।

ଅନ୍ୟ ଅନ୍ୟ ଦେବୀ ଯେତେ କୃଷ୍ଣ ଆଦେଶରେ
ଚଳିଲେ ସକଳେ ନିଜ କର୍ମ ଅନୁସାରେ ।
ଗୋପ ଗୋପାଙ୍ଗନା ସଙ୍ଗେ ଦେବ ନିରଞ୍ଜନ
ଗୋଲୋକର ବୃନ୍ଦାବନେ କଲେ ବିଚରଣ ।
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟେ ସୁଧାମୟ
ଶୁଣିବ ପଢ଼ିବ ଯେହୁ ତରିବ ନିଶ୍ଚୟ ।
ଏକମନେ ଯିଏ କେହୁ କରେ ଅଧ୍ୟୟନ
ଘେରି ନ ପାରଇ ତାକୁ ଏ ଭବ ବନ୍ଧନ ।
ପୁରାଣେ ହରିଙ୍କ ଗାଥା ଅତି ସୁଧାମୟ
ଶୁଣିଲେ ମାନବେ ହୋଇବ ଭବ ବନ୍ଧ କ୍ଷୟ ।
ତେଣୁ ବୋଲେ କ୍ଷେତ୍ରବାସୀ ଆହେ ସାଧୁଗଣ
ଭକ୍ତିଭରେ ହୃଦପଦ୍ମେ କୃଷ୍ଣେ କର ଧ୍ୟାନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଶିବ ପାର୍ବତୀ ବିଷୟ ବର୍ଣ୍ଣନେ ନାମ ସପ୍ତମୋଽଧ୍ୟାୟଃ ।

# ଅଷ୍ଟମ ଅଧ୍ୟାୟ

## ସ୍ୱର୍ଗ ପାତାଳ ଓ ସାଗର ଆଦିଙ୍କର ଉତ୍ପତ୍ତି ବିବରଣ

ନୈମିଷାରଣ୍ୟେ ସର୍ବ ଋଷୀଙ୍କୁ ଅନାଇଁ
ବୋଇଲେକ ପୌରାଣିକ ସୌତି ତୋଷହୋଇ
ଆହେ ତପୋଧନମାନେ ଶୁଣ ମୋ ବଚନ
କୃଷ୍ଣଙ୍କ ଆଦେଶେ ତପ କଲେ ପଦ୍ମାସନ
ନିର୍ଜନ କାନନେ ବସି ଏକାନ୍ତ ଅନ୍ତରେ
ଆରାଧନା କଲେ ସେହୁ ରାତ୍ର ଦିବସରେ ।
ସହସ୍ର ବରଷ ତପ କରି ଆଚରଣ
ସିଦ୍ଧିଲାଭ କଲେ ଦେବ ସାବିତ୍ରୀ ରମଣ ।
କୃଷ୍ଣପାଦେ ମତି ରଖି ଦେବ ପଦ୍ମାସନ ।
ସୃଷ୍ଟି ସରଜନ କାର୍ଯ୍ୟେ ଆଦ୍ୟେ ଦେଲେ ମନ
ମଧୁ କୈଟଭଙ୍କ ମେଦ କରି ସେ ଗ୍ରହଣ
ପ୍ରଥମେ କରିଲେ ଦେବ ବସୁଧା ଗଠନ ।
ଅଷ୍ଟଗିରିବର ସରଜିଲେ ତାହାପର
ଅତୀବ ସଦୃଶ୍ୟ କିବା ଅତି ମନୋହର ।
କ୍ଷୁଦ୍ର କ୍ଷୁଦ୍ର ବହୁ ଗିରି କରିଲେ ସୃଜନ
କେବା ତାର ସଂଖ୍ୟା କହି ପାରିବ ମୁଖେଣ ।
ଅଷ୍ଟଗିରିଙ୍କ ଉପରେ ଅଟେ ଯେ ପ୍ରଧାନ
ତାହାନାମ କହୁଅଛୁ ଶୁଣ ଦେଇ ମନ ।
ସୁମେରୁ କୈଳାସ ହିମାଳୟ ବିନ୍ଧ୍ୟାଚଳ
ଗନ୍ଧମାଦନ ଅସ୍ତ ମଳୟ ସୁବଳ ।
ଏଇ ଅଷ୍ଟ ଗିରିବର ବିଦିତ ଭୁବନେ
ସୃଜିଲେକ ପଦ୍ମାସନ ଆନନ୍ଦିତ ମନେ ।
ସପତ ସମୁଦ୍ର ସୃଷ୍ଟି କଲେ ତାହାପରେ
କେତେକ ନଦ ନଦୀ ବୃକ୍ଷ ଗ୍ରାମାଦି ନଗର ।
ଯେ ସପ୍ତ ସାଗର ନାମ କରନ୍ତୁ ଶ୍ରବଣ
ସେମାନଙ୍କ ପରିମାଣ କରିବି ବର୍ଣ୍ଣନ ।
ସୁରାସର୍ପି ଦଧି ଦୁଗ୍ଧ ଲବଣ ସାଗର
ଇକ୍ଷୁ ଜଳ ଏହି ସପ୍ତ ଆହେ ମୁନିବର ।
ଏହିରୂପେ ସପ୍ତ ସିନ୍ଧୁ ବିଧାତା ସୃଜିଲେ
ଲବଣ ସାଗର ଲକ୍ଷେ ଯୋଜନ ରଖିଲେ ।
ତାହାର ଦ୍ୱିଗୁଣ ଇକ୍ଷୁ ସିନ୍ଧୁ ପରିମାଣ
ଇକ୍ଷୁର ଦ୍ୱିଗୁଣ ସୁରା ଆହେ ମୁନିଗଣ ।
ସୁରାର ଦ୍ୱିଗୁଣ ଲମ୍ବ ଘୃତର ସାଗର
ତାହାର ଦ୍ୱିଗୁଣ ଅଟେ ଦଧି ଯେ ଆକର ।
ଦଧିଠାରୁ ଦୁଗ୍ଧ ସିନ୍ଧୁ ଅଟେ ଦୁଇଗୁଣ
ଦୁଗ୍ଧର ଦ୍ୱିଗୁଣ ଲମ୍ବ ଅମୃତନ ଜାଣ ।
ଏରୂପେ ସାଗର ସୃଷ୍ଟି କରି ପଦ୍ମାସନ
ଅସଂଖ୍ୟ ତରୁଲତା ଯେ କରିଲେ ନିର୍ମାଣ ।
ବନ ଉପବନ ଯେତେ କଲେ ସେ ବିସ୍ତାର
ବର୍ଣ୍ଣନା କରିବା ପାଇଁ ଶକ୍ତି ନାହିଁ କାର ।
ତାହାପରେ ସପ୍ତ ଉପଦ୍ୱୀପ ନିର୍ମାଣିଲେ
ଧରଣୀ ମଧ୍ୟରେ ତାକୁ ସ୍ଥାପନ କରିଲେ
ଶାକ ଜମ୍ବୁ କୁଶ ପ୍ଲକ୍ଷ କ୍ରୌଞ୍ଚ ଓ ପୁଷ୍କର
ନ୍ୟଗ୍ରୋଧ ସଙ୍ଗତେ ସପ୍ତ ଦ୍ୱୀପ ଅଟେ ସାର ।
ନାନାରୂପ ସୃଷ୍ଟି କରି ଦେବ ପଦ୍ମାସନ
ଅମ୍ବୁ ତୀରେ ଅଷ୍ଟପୁରୀ କଲେକ ସୃଜନ ।
ମନୋହର ପୁରୀ ହେଲା ଗିରିଶୃଙ୍ଗ ପରେ
ଲୋକପାଳ ହେତୁ ବିଧି ସୃଜିଲେ ତାହାରେ

ଶିଳ୍ପିତଲେ ଶତସହସ୍ର ରଚିଲେ ନଗର
ପୁଣି କେତେ ସହସ୍ର ଗ୍ରାମ କଲେ ଯେ ବିସ୍ତାର ।
ତା ପାଛରେ ସପ୍ତ ସ୍ୱର୍ଗ କଲେ ସେ ସର୍ଜନ
ମନୋହର ସ୍ଥାନ ଏହା ଚିତ୍ତ ବିନୋଦନ ।
ଯେଉଁଠି ନାହିଁ ରୋଗ ଶୋକ ଜରା ମୃତ୍ୟୁଭୟ
ଅନନ୍ତ ସୁଖର ସ୍ଥାନ ସଦାନନ୍ଦ ମୟ ।
ସପ୍ତ ସ୍ୱର୍ଗ ନାମ ସର୍ବେ କରନ୍ତୁ ଶ୍ରବଣ
ଭୂଲୋକ ଦ୍ୟୁଲୋକ ଜନଲୋକ ଏ ପ୍ରମାଣ ।
ତପଃ ସତ୍ୟ ବ୍ରହ୍ମ ଧ୍ରୁବ ଲୋକ ତାର ପର
ଧ୍ରୁବ ଲୋକ ସର୍ବପରେ ଅଟଇ ଶ୍ରେଷ୍ଠତର ।
ସପ୍ତ ସ୍ୱର୍ଗ ନାମ ଆମ୍ଭେ କହିଲୁ ବର୍ଣ୍ଣିନ
ପାତାଳ ପୁରର କଥା କରହେ ଶ୍ରବଣ ।
ଅତଳ ବିତଳ ତଳାତଳ ମହାତଳ
ଅଥଳ ପାତାଳ ଆଦି ସପ୍ତରସାତଳ ।
ବିଧିର ସର୍ଜନା ଏହା ଜାଣିବେ ସମସ୍ତ
ଏରୂପେ ହୋଇଲା ସ୍ୱର୍ଗ ରସାତଳ ମର୍ତ୍ତ୍ୟ ।
ଏ ସମସ୍ତ ମିଳିହେଲା ବ୍ରହ୍ମାଣ୍ଡ ଗଠନ
ବ୍ରହ୍ମାଙ୍କ ସର୍ଜନା ଏହା ଆହେ ମତିମାନ ।
ଯାବତ ସଂସାର ରହେ ବ୍ରହ୍ମାଣ୍ଡ ଭିତରେ
ବିଧି ଅଧିକୃତ ସର୍ବ ଜାଣିବେ ଅନ୍ତରେ ।

ମହାବିଷ୍ଣୁଙ୍କର ଲୋମ ଅଙ୍ଗେ ଯେତେ ଜାଣ
ବ୍ରହ୍ମାଣ୍ଡର ସଂଖ୍ୟା ତେତେ ଆହେ ତପୋଧନ ।
କିବା ଶିବ କିବା ବିଷ୍ଣୁ କିବା ଦେବଗଣ
ବ୍ରହ୍ମାଣ୍ଡ ଭିତରେ ସର୍ବେଛନ୍ତି ଅନୁକ୍ଷଣ ।
ବାରିବିମ୍ବ ବିନଶ୍ୱର ଅଟଇ ଯେମନ୍ତ
ବ୍ରହ୍ମାଣ୍ଡ ତେମନ୍ତ ଅଟେ ଆହେ ତପୋଧନ ।
ସମୟେ ସମସ୍ତ ପୁଣି କ୍ଷୟ ହୋଇଯାଏ
ସ୍ୱପନ ଦେଖିଲା ପରି କିଛିହିଁ ନ ରହେ ।
କୈଳାସ ଗୋଲକ ଆଉ ବୈକୁଣ୍ଠ ଆଳୟ
ଚିର ନିତ୍ୟ ଏହି ତିନି ଜାଣିବେ ନିଶ୍ଚୟ ।
ଆତ୍ମା ଓ ଆକାଶ ସମ ଜାଣିବେ ଏମାନ
କଦାପି ନୁହଁନ୍ତି ଏହି ବ୍ରହ୍ମାର ଅଧୀନ ।
ଏ ତିନି ମଧ୍ୟରୁ ସୃଷ୍ଟି ଆବର୍ତ୍ତିତ ହୁଏ
ପ୍ରକାଶ କରିଲି ତବ ଆଗେ ତପୀରାଏ ।
ଧ୍ୟାନ ଜ୍ଞାନ କ୍ଷେତ୍ରବାସୀ କରେ ନିବେଦନ
ଛିଡ଼ିବାକୁ ଯହିଁ ଯନ୍ତ୍ର ସଂସାର ବନ୍ଧନ ।
ଭେଦଭାବ ହୃଦ ମଧ୍ୟୁ କର ପରିହାର
ଲାଭ କରିବ ଅକ୍ଲେଶେ ଶ୍ରୀକୃଷ୍ଣ ପୟର ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ୍ୟ ପୁରାଣେ ବ୍ରହ୍ମଖଣ୍ଡେ ଧାତାଙ୍କ ଦ୍ୱାରା ବ୍ରହ୍ମାଣ୍ଡ ରଚନେ ନାମ ଅଷ୍ଟମୋଽଧ୍ୟାୟ ।

# ନବମ ଅଧ୍ୟାୟ

## ବେଦଶାସ୍ତ୍ର, ଯୁଗ ଓ ସମୟ ଆଦିର ଉତ୍ପତ୍ତି ଏବଂ ନାରଦଙ୍କ ପ୍ରତି ବ୍ରହ୍ମାଙ୍କର ଅଭିଶାପ ପ୍ରଦାନ

ଶୌନକଆଦି ସକଳ ଋଷିଙ୍କୁ ଅନାଇଁ
ବୋଇଲେକ ସୌତି ସର୍ବେ ଶୁଣ ମନଦେଇ ।
ଏହାପରେ ଆନଯାହା କହିବି ଗାୟନ
ଶ୍ରବଣେ ପବିତ୍ର ହେବ ତବ ତନୁ ମନ ।
ବିଶ୍ୱର ସର୍ଜନା କରି ଦେବ ପ୍ରଜାପତି
ସାବିତ୍ରି ସଙ୍ଗତ କଲେ ରଙ୍ଗରସେ ରତି ।
କାମୁକ ବିହରେ ଯଥା କାମୁକୀ ସଙ୍ଗରେ
ତଥାବିଧି କେଳି କଲେ ପତ୍ନୀ ସଙ୍ଗତରେ ।

ତାଙ୍କ ସହବାସେ ଗର୍ଭ ହୋଇଲେ ସାବିତ୍ରୀ
ଦିବ୍ୟ ଶତ ବର୍ଷ ସମାନରେ ଗଲା ବିତି ।
ତାହାପରେ ଚାରିବେଦ ଜନମ ହୋଇଲେ
ପୁଣି ନାନାବିଧ ଶାସ୍ତ୍ର ତହୁଁ ଜନମିଲେ ।
ଛତିଶ ରାଗିଣୀ ଜନ୍ମ ହୋଇଲେ ତାପର
ପ୍ରସବ କରିଲେ ଦେବୀ ଯେତେ ଯୁଗବର ।
ଦଣ୍ଡ କ୍ଷଣ ବର୍ଷ ମାସ ତିଥି ସନ୍ଧ୍ୟା ବାର
ଦଦାପର୍ବି ପୁଷ୍ଟି ଯୋଗ ଆଦି ସନ୍ଧିତର ।

ତାହାପରେ କଳୁଷସ୍ତୁ ଲଭିଲେ ଜନମ
ସାବର୍ଣ୍ଣୀଠାରୁ ଜନ୍ମିଲେ ସର୍ବ ବ୍ୟାଧିଗଣ ।
ଯେତେ ପୁତ୍ର ଯେତେ କନ୍ୟା ଜନମ ଲଭିଲେ
ତାହା ଦେଖି ବେଦବର ଆନନ୍ଦିତ ହେଲେ ।
ପୁନରପି ସୃଷ୍ଟିକଲେ ଦେବ ପଦ୍ମାସନ
ତାହାଙ୍କ ମାନସୁ ସର୍ବେ ହୋଇଲେ ଜନମ ।
ପୃଷ୍ଠ ଦେଶରୁ ଅଧର୍ମ ଜନମ ହୋଇଲା
ତା ବାମ ପାର୍ଶ୍ୱ ଅଲକ୍ଷ୍ମୀ ଉତପନ ହେଲା ।
ମହାଶିଳ୍ପୀ ବିଶ୍ୱକର୍ମା ପ୍ରଫୁଲ୍ଲିତ ଶରୀରେ
ବିଧିଙ୍କ ନାଭି କମଳୁଁ ଜାତ ହେଲେ ମର୍ତ୍ତ୍ୟେ
ପୁଣି ଅଷ୍ଟବସୁ ତାହାପରେ ଜନମିଲେ
ସେଇ ଆଠଜଣ ମହା ପରାକ୍ରମୀ ହେଲେ ।
ବିଧିର ମାନସୁଁ ହେଲେ ଚାରୋଟି କୁମର
ବ୍ରହ୍ମତେଜେ ପ୍ରଜ୍ୱଳିତ ଜ୍ୱଳନ୍ତ ଆକାର ।
ତାହାଙ୍କ ନାମ କହୁଛି କରନ୍ତେ ଶ୍ରବଣ
ସନକ ସାନନ୍ଦ ପରେ ଜନ୍ମେ ସନାତନ ।
ଚତୁର୍ଥ ବ୍ୟକ୍ତିର ନାମ ସନତ କୁମାର
ଚାରିଜଣ ମହାତେଜା ଜ୍ଞାନର ଆଧାର ।
ସ୍ୱାୟମ୍ଭୁବ ଜନ୍ମେ ଶେଷେ ବ୍ରହ୍ମାର ବଦନେ
ଜନମିଲେ ପତ୍ନୀସହ ପ୍ରଫୁଲ୍ଲିତ ମନେ ।
ଶତ ରୂପା ନାମେ ନାରୀ ବନ୍ଦିତ ଭୁବନ
କ୍ଷତ୍ରିୟ କୁଳର ରାଜ ସ୍ୱାୟମ୍ଭୁବ ଜାଣ ।
ଅବଶେଷେ ପୁତ୍ରଗଣେ ଡାକି ପଦ୍ମାସନ
ସୃଷ୍ଟି କରଣାର୍ଥେ ଆଜ୍ଞା କଲେକ ପ୍ରଦାନ ।
କିନ୍ତୁ ପୁତ୍ରଗଣେ ତାହା ନ କଲେ ସ୍ୱୀକାର
ମହାକ୍ରୋଧ ହେଲେ ତାଙ୍କ ପରେ ବେଦବର ।
ସେଇ କ୍ରୋଧୁ ଏକାଦଶ ରୁଦ୍ରଙ୍କର ଜାତ
ବିବିଧ ମସ୍ତକ ତାଙ୍କ ଭୁବନ ବନ୍ଦିତ ।
କାଳଅଗ୍ନି ନାମେ ଯେଉଁ ରୁଦ୍ର ଜନମିଲେ
ସଂସାରର ହର୍ତ୍ତା ରୂପେ ପରିଚୟ ହେଲେ ।
ତମୋଗୁଣ ଅବଲମ୍ବୀ ସେ ରୁଦ୍ର ଅନନ୍ତ
ରଜଗୁଣ ଅବଲମ୍ବୀ ସାବିତ୍ରୀଙ୍କ ପତି ।
ଶିବ ବିଷ୍ଣୁ ଦୁଇଜଣ ସତ୍ତ୍ୱ ଗୁଣ ଧାରୀ
ପ୍ରକୃତ ଅତୀତ ଦେବ ଗୋଲକ ବିହାରୀ ।
ଶ୍ରୀକୃଷ୍ଣ ନିର୍ଗୁଣ ଏହା ଜାଣିବେ ଅନ୍ତରେ
ଆତ୍ମା ବ୍ରହ୍ମ ବୋଲି ସେତୁ ବନ୍ଦିତ ସଂସାରେ ।
ପଞ୍ଚାନନ ସଦା ହେଲେ ହର ପରାତ୍ପର
ତମୋଗୁଣୀ ବୋଲୁଥାନ୍ତି ତାଙ୍କୁ ମୂର୍ଖଗଣ ।
ସୌତି କହିଲେ ଶୁଣ ହେ ତାପସ ଶେଖର
ପିତାମହ ଯେଉଁ ସୃଷ୍ଟି କଲେ ତାହାପର ।
ପୁଲସ୍ତ ପୁଲହ ଜନ୍ମେ ଦକ୍ଷ ବାମ କାନେ
ଜନମ ଲଭିଲେ ଅତ୍ରି ଦକ୍ଷିଣ ନୟନେ ।
ବାମ ନୟନରୁ ହେଲା ମଲ୍କଙ୍କର ଜାଣ
ଅରୁଣି ଜନମ ହେଲେ ସେ ନାସା ଅଗ୍ରେଣ ।
ଅଙ୍ଗିରା ଜନମ ହେଲା ବଦନୁ ତାଙ୍କର
ଭୃଗୁଦେବ ବାମପାର୍ଶ୍ୱେ ଜନ୍ମିଲେ ତାପର ।
ଦକ୍ଷିଣ ପାର୍ଶ୍ୱରୁ ହେଲା ଦକ୍ଷଙ୍କ ସର୍ଜନ
ଛାୟାରୁ କର୍ଦ୍ଦମ ଜାତ ହେଲା ତତକ୍ଷଣ ।
ପଞ୍ଚ ଶିଖ ଜନମିଲେ ବିଧି ନାଭି ଦେଶେ
ଗରୁଡ଼ ଜନମ ହେଲେ ହୃଦୟ ପ୍ରଦେଶେ ।
କଣ୍ଠ ଦେଶରୁ ନାରଦ ମୁନି ହେଲେ ଜାଣ
ବୈଷ୍ଣବଙ୍କ ଚୂଡ଼ାମଣି ନିଶ୍ୱରେ ବିଖ୍ୟାତ ।
ସ୍କନ୍ଧ ଦେଶରୁ ମାରିଚ ହେଲେ ଉତପନ୍ନ
ଗଳାରୁ ଜନମ ହେଲେ ଅପାନ୍ତ ରତନ ।
ତାଙ୍କ ରସନାରୁ ହେଲେ ବଶିଷ୍ଠ ଉଦ୍ଭବ
ପ୍ରଚେତା ଅଧର ମଧ୍ୟୁ ଲଭିଲେ ଜନମ ।
ବାମ କାଖରୁ ହଂସର ହୋଇଲା ଉତ୍ପତ୍ତି
ଦକ୍ଷିଣ କାଖରୁ ଯତ୍ନ ଉତ୍ପନ୍ନ ହୁଅନ୍ତି ।
ଏତରୂପେ ପୁତ୍ରଗଣେ ସର୍ଜି ପ୍ରଜାପତି
ବୋଇଲେ ସଭିଙ୍କୁ ବୃଦ୍ଧି ମଧୁର ଭାରତୀ ।
ସକଳେ ଅମ୍ଭ ଆଦେଶ କରନ୍ତି ପାଳନ
ସୃଷ୍ଟି ହେତୁ ଅମ୍ଭମାନ କର ନିୟୋଜନ ।
ପିତାଙ୍କ ବଚନ ପୁତ୍ରେ ଶ୍ରବଣ କରିଣ
ନାରଦ ବିନୟ ଭାବେ ବୋଇଲେ ବଚନ ।
କ୍ଷମାକର ଆହେ ପିତା ପଦ୍ମୁଞ୍ଜି ଚରଣେ
ସକ୍ଷମ ନୁହଁଇ ମୁହିଁ ଆଦେଶ ପାଳନେ ।
ଅନ୍ୟାନ୍ୟ ସନ୍ତାନ ଗଣେ କରନ୍ତୁ ଆଦେଶ
ପୁଣି ଚରଣେ ନିବେଦ ହୋଇଲେକ ଶେଷ ।
ସର୍ବଦା କରନ୍ତି ଧ୍ୟାନ କୃଷ୍ଣଙ୍କ ଚରଣ
କୃଷ୍ଣ ଗୁଣମାନ ହୃଦେ କରନ୍ତି ଧାରଣ ।
ଯେ ନାମ ଜପିଲେ ମୋକ୍ଷ ପ୍ରାପ୍ତ ହୁଏ ନର
ସେ ନାମ ଗାଉଛ ସଦା ଶୁଣ ହେ ପିତର ।

ରମଣୀ ଭୁଜଙ୍ଗୀ ସମ ଏ ବିଶ୍ୱ ସଂସାରେ
ତାଙ୍କୁ ଭଜିଲେ ପଡ଼ିବ ଭବ କୂପ ଘୋରେ ।
ସେଥିରେ ମୋ ମନ ନାହିଁ ଶୁଣନ୍ତୁ ଗୋସାଇଁ
କ୍ଷମାକର ଏହି ଭିକ୍ଷା ଚରଣେ ମାଗଇ ।
ନାରଦଙ୍କ ଏହିବାକ୍ୟ କରିଣ ଶ୍ରବଣ
ରୋଷେ ଘନଘନ କମ୍ପିଲେକ ପଦ୍ମାସନ ।
ଅବଶେଷେ ଅଭିଶାପ ଦେଲେକ ନାରଦେ
ଲଙ୍ଘିଲୁ ମୋହର ବାକ୍ୟ ଶୁଣ ବୁଦ୍ଧି ହାଦେ ।
ଏହାର ଉଚିତ ଫଳ ନିଶ୍ଚୟ ଲଭିବୁ
ଗନ୍ଧର୍ବ କୁଳରେ ତୁହି ଜନମ ହୋଇବୁ ।
ଉପବର୍ହଣ ନାମ ହୋଇବ ତୋହର
ପଞ୍ଚାଶ ରମଣୀ ନେଇ କରିବୁ ବିହାର ।
ତତ୍ତ୍ୱଜ୍ଞାନ ନ ରହିବ କଦାପି ଅନ୍ତରେ
କାମୁକ ସମ ହୋଇବୁ ଅବନୀ ମଧ୍ୟରେ ।
ଲକ୍ଷେ ଯୁଗ ଏହିପରି କରିଣ ଯାପନ
ଦାସୀକୁଳେ ତାହାପରେ ଲଭିବୁ ଜନମ ।
ଶେଷରେ ବୈଷ୍ଣବ ସଙ୍ଗେ ହୋଇବୁ ମିଳନ
ତାହାଙ୍କ ଉଚ୍ଛିଷ୍ଟ ତୁହି କରିବୁ ଭୋଜନ ।
ତାପରେ ପୁଣି ମୋର ଆତ୍ମଜ ରୂପରେ
ଜନମ ଲଭିବୁ ବତ୍ସ ବିଶ୍ୱର ମଙ୍ଗଳରେ ।
ସେ ବେଳେ ତୁମକୁ ପୁଣି ଦେବ ଦିବ୍ୟଜ୍ଞାନ
ଏତେବୋଲି ଅଭିଶାପ କରିଲେ ପ୍ରଦାନ ।
ମଳୀନ ବଦନେ ପିତାଙ୍କର ପାଦ ତଳେ
ପଡ଼ି ନାରଦ ବୋଇଲେ ଅତ୍ୟନ୍ତ ବିକଳେ ।
ଯେତେକ ଜନମ ମୋର ହୋଇବ ଧରାରେ
ଏଇ ଭିକ୍ଷା ମାଗେ ପିତାଚରଣ ତଳରେ ।

ହରି ଭକ୍ତି ଯେତେକେ ମୋର ହୃଦୁ ନ ଗୁଚ୍ଛନ୍ତୁ
ଯାହାଙ୍କ ପ୍ରଭାବେ ଭବବନ୍ଧ ନାଶିଯିବ ।
ଆଉଏକ କଥା ପିତା କରେ ନିବେଦନ
ବିନାଦୋଷେ ମୋତେ ଶାପ କରିଲେ ଅର୍ପଣ
ପ୍ରତିଶାପ ଦେବି ମୁହିଁ ନ ହେବ ଲଙ୍ଘନ
ମୋହର ବଚନ ମିଥ୍ୟା ନୋହେ କଦାଚନ ।
ମନ୍ତ୍ର ମନ୍ତ୍ର କବଚାଦି ଯେତେକ ତୁମରି
ବିଲୁପ୍ତ ହୋଇବ ସବୁ ଅବନୀ ମଧ୍ୟରୁ ।
ଅପୂଜ୍ୟ ହୋଇଣ ତିନକଳ୍ପ ସେ ରହିବ
ତହାପରେ ପୁଣି ବ୍ରହ୍ମାଣ୍ଡରେ ପୂଜାହେବ ।
ଯଜ୍ଞାଦିରେ ହବି ଭାଗ ନେବେ ଦେବତାଏ
ନାମମାତ୍ର ପୂଜାଦେବେ ତୁମ୍ଭଙ୍କୁ ସର୍ବେଏ ।
ନାରଦ ଏତେକ କହି ନୀରବ ରହିଲେ
ଖେଦ ଉପୁଜିଲା ଧାତା ହୃଦୟ କମଳେ ।
ପିତାଙ୍କର ଅଭିଶାପ ପାଇଣ ନାରଦ
ଗନ୍ଧର୍ବ ବେଶେ ଧରାକୁ ବଢ଼ାଇଲେ ପାଦ ।
ଦାସୀ ପୁତ୍ରରୂପେ ପରେ ଜନମ ହୋଇଲେ,
ବୈଷ୍ଣବଙ୍କ ସଙ୍ଗେ ଶେଷେ ଆସିଣ ମିଳିଲେ ।
କୃଷ୍ଣଙ୍କ ପ୍ରସାଦେ ସେହି ଶାପ ମୁକ୍ତ ହୋଇ
ଧାତାଙ୍କ ନିକଟେ ପୁଣି ପ୍ରବେଶିଲେ ଯାଇ ।
ପୁତ୍ରଙ୍କୁ ଦେଖିଣ ଧାତା ଆନନ୍ଦ ହୋଇଣ
ଦିବ୍ୟଜ୍ଞାନ ତାହାଙ୍କୁ ସେ କରିଲେ ପ୍ରଦାନ ।
ସେ ସବୁ ବୃତ୍ତାନ୍ତ ପରେ କରିବି ବର୍ଣ୍ଣନ
ମନକର୍ଣ୍ଣ ଦେଇ ଶୁଣ ସବୁ ତପୋଧନ ।
କ୍ଷେତ୍ର ମୋହନ କହଇ ଆହେ ମୂଢ଼ ନର
ହରି ନାମ ଏକମାତ୍ର ଅଟଇ ଯେ ସାର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନାରଦ ପ୍ରତି ବ୍ରହ୍ମାଙ୍କର ଅଭିଶାପ
ବିଧାନେ ନାମ ନବୋମୋଽଧ୍ୟାୟ ।

## ଦଶମ ଅଧ୍ୟାୟ

### କଶ୍ୟପଆଦି ଋଷି ମାନଙ୍କର ଜନ୍ମ ଓ ଚନ୍ଦ୍ରଙ୍କର ଶାପ ପ୍ରାପ୍ତି କଥନ

ଶୁଣ ହେ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇ ମହାନ ।
ତାହାପରେ ବେଦବର ବ୍ରହ୍ମା ପଦ୍ମାସନ
ପୁତ୍ରଗଣେ ଆଜ୍ଞାଦେଲେ ସୃଷ୍ଟିର କାରଣ ।

ତାହାଙ୍କ ଆଦେଶ ପାଇ ସକଳ ନନ୍ଦନ
ସୃଷ୍ଟି ସର୍ଜନା ନିମନ୍ତେ ବଳାଇଲେ ମନ ।
ନାରଦ ବ୍ୟତିତ ସର୍ବେ ସୃଷ୍ଟି ଆରମ୍ଭିଲେ
ମରୀଚ ମାନସ ପୁତ୍ର କଶ୍ୟପ ହୋଇଲେ ।

ଅତ୍ରୀ ନେତ୍ର ମଳମଧ୍ୟୁ ସ୍ନିଗ୍ଧ ସ୍ୱାଗତେ
ଚନ୍ଦ୍ର ହୋଇଲା ସୃଷ୍ଟି ଶୁଣ ତପୀବରେ ।
ପ୍ରଚେତାଙ୍କ ମନମଧ୍ୟୁ ଗୌତମ ଜନ୍ମିଲେ
ତାହାପର ତପୀଗଣମାନେ ଶୁଣ ହେଲେ ।
ପୁଲସ୍ତ୍ୟ ମହର୍ଷି ମୈତ୍ରୀ ବରୁଣଙ୍କୁ ମନ
ମଧ୍ୟରୁ ଯେ ସେହୁ ଋଷି କଲେ ଉତପନ ।
ଶତରୂପାଠାରେ ମନୁ ତିନଗୋଟି କନ୍ୟା
ଜାତ କଲେ ରୂପଗୁଣେ ଅତ୍ୟନ୍ତ ସେ ଧନ୍ୟା ।
ଆକୂତି ଯେ ଦେବହୂତି ପ୍ରସୂତି ଆଦିର
ନାମ ହୋଇଥିଲା ସେହି ତିନ କନ୍ୟାଙ୍କର ।
ଦୁଇଗୋଟି ପୁତ୍ର ଜାତ କଲେ ତାଙ୍କପରେ
କନ୍ଦର୍ପ ସମାନ ଦିଶୁଥିଲେ ସେ ତେଜରେ ।
ପ୍ରିୟବ୍ରତ ଉତ୍ତାନ ପାଦ ଯେ ତାଙ୍କ ନାମ
ସକଳ ଗୁଣରେ ଦୁହେଁ ଦୁହିଙ୍କର ସମ ।
ଉତ୍ତାନ ପାଦଙ୍କ ବୀର୍ଯ୍ୟୁ ଧ୍ରୁବ ହେଲେ ଜାତ
ଅତ୍ୟନ୍ତ ସେ ଧର୍ମବନ୍ତ ସବହ ତରହ ।
ଜ୍ୟୋତିଷ୍କ ରୂପରେ ଯାଇ ଆକାଶ ମଣ୍ଡଳେ
ପରକାଶି ତେଜୋପୁଞ୍ଜ ରହିଲେ ନିଶ୍ଚଳେ ।
ଆକୂତି କନ୍ୟାକୁ ନେଇ ରୁଚି ପାଶେ ଦେଲେ
ପ୍ରସୂତିକାକୁ ଦକ୍ଷକୁ ସମର୍ପଣ କଲେ ।
ସେହିପରି କର୍ଦ୍ଦମଙ୍କୁ ଡକାଇ ଆଣିଲେ
ଦେବହୂତି କନ୍ୟା ତାଙ୍କ ପାଶେ ସମର୍ପିଲେ ।
କପିଳ ମହର୍ଷି ସେହି ଦେବହୂତିଙ୍କର
ଗରଭୁ ଜାତ ହୋଇଲେ ଶୁଣ ମୁନିବର ।
ଦକ୍ଷ ପ୍ରଜାପତିଙ୍କର ବୀର୍ଯ୍ୟ ସଂଯୋଗରୁ
ଜନ୍ମିଲେ ଷାଠିଏ କନ୍ୟା ପ୍ରସୂତି ଉଦରୁ ।
ତହିଁରୁ ଆଠୋଟି କଲେ ଧର୍ମଙ୍କୁ ପ୍ରଦାନ
ଏକାଦଶ ରୁଦ୍ରଙ୍କୁ ଯେ ଏଗାରଟି ପୁଣ ।
ସତୀ ନାମେ ପତିବ୍ରତା ତନୟାକୁ ନେଇ
ଶିବଙ୍କ ପାଖରେ ଦେଲେ ମହାତୋଷ ବହି ।
କଶ୍ୟପ ମୁନିଙ୍କୁ କରି ସାଦରେ ବରଣ
ତେରଗୋଟି କନ୍ୟା ପାଦେ କରିଲେ ଅର୍ପଣ ।
ଚନ୍ଦ୍ରଙ୍କୁ ଡକାଇ ପୁଣି ଦକ୍ଷ ପ୍ରଜାପତି
ସମର୍ପିଲେ ତାଙ୍କୁ ସପ୍ତବିଂଶତି ଦୁହିତା ।
ଯେଉଁମାନେ ଧର୍ମଙ୍କର ଭାରିଯା ହୋଇଲେ
ତାଙ୍କ ନାମ କହୁଅଛୁ ଶୁଣ ସର୍ବେ ହେଲେ ।

ଶାନ୍ତି ପୁଷ୍ଟି ଧୃତି ତୁଷ୍ଟି କ୍ଷମା ଶ୍ରଦ୍ଧା ମତି
ସ୍ମୃତି ସହିତରେ ଏହି ଅଷ୍ଟ ମହାସତୀ ।
ଧର୍ମ ଦେବତାଙ୍କ ସଙ୍ଗେ ମାତି କାମରସେ
ସମସ୍ତ ସନ୍ତାନ ଜାତ କଲେ ଅବଶେଷେ ।
ଶାନ୍ତି ଦେବୀଠାରୁ ଯେଉଁ ସନ୍ତାନ ଜନ୍ମିଲା
ସନ୍ତୋଷ ବୋଲିଣ ତାର ନାମ ଖ୍ୟାତ ହେଲା
ପୁଷ୍ଟିର ତନୟ ନାମ ହୋଇଲା ମହାନ
ଧୈର୍ଯ୍ୟ ନାମ ବହିଲା ଧୃତିର ସନ୍ତାନ ।
ତାହାପରେ ଆନଗାଥା ଶୁଣ ମନ ଦେଇ
ତୁଷ୍ଟି ଦେବୀ ଦୁଇ ପୁତ୍ର ଜନ୍ମ କଲେ ତହିଁ ।
ହର୍ଷ ଦର୍ପ ଦୁଇଭାଇ ଖ୍ୟାତ ଚରାଚର
କ୍ଷମା ଗର୍ଭେ ଜନ୍ମେ ଶେଷେ ଏକ ପୁତ୍ରବର ।
ସହିଷ୍ଣୁ ପଣରେ ସେହି ବିଦିତ ଭୁବନ
ଧାର୍ମିକ ନାମରେ ହେଲା ଶ୍ରଦ୍ଧାର ନନ୍ଦନ ।
ଜ୍ଞାନନାମେ ପୁତ୍ର ଜନ୍ମେ ମତିର ଉଦରେ
ଜାତିସ୍ମର ନାମେ ସୁତ ସ୍ମୃତିର ଜଠରେ ।
ଧର୍ମର ଯେ ଆଠ ପତ୍ନୀ କଲୁଛୁ ବର୍ଣ୍ଣନ
ତାହା ସନ୍ତାନଙ୍କ କଥା କରିଲେ ଶ୍ରବଣ ।
ଏହା ଭିନ୍ନ ମୂର୍ତ୍ତି ନାମ୍ନୀ ଧର୍ମ ପତ୍ନୀ ଥିଲା
ତାହାର ଜଠରେ ଦୁଇ ସନ୍ତାନ ଜନ୍ମିଲା ।
ସେମାନେ ବିଖ୍ୟାତ ହେଲେ ନରନାରାୟଣ
ଦୁଇଜଣେ ଧର୍ମନିଷ୍ଠ ଧର୍ମ ପରାୟଣ ।
ରୁଦ୍ରର ଏଗାର ପତ୍ନୀ କରିଛୁ ବର୍ଣ୍ଣନ ।
ତାହାଙ୍କ ଗର୍ଭରେ ହେଲେ ଅନେକ ନନ୍ଦନ ।
ସେ ସର୍ବ ପୁତ୍ରେ ରହିଲେ ଶିବଙ୍କ ଗୋଚରେ
ଶିବ ପାରିଷଦ ପଣେ ବିଖ୍ୟାତ ସଂସାରେ ।
ସତୀ ଦେବୀ ଦତ୍ତ ହେଲେ ମହେଶ୍ୱର କରେ
ଏ କଥା ପୂର୍ବୁ କହିଛୁ ସଭିଙ୍କ ଗୋଚରେ ।
ଦକ୍ଷ ଯଜ୍ଞେ ପତି ନିନ୍ଦା କରିଣ ଶ୍ରବଣ
ସତୀ ଦେବୀ ନିଜ ଦେହ କରି ବିସର୍ଜନ ।
ମେନକା ଉଦରେ ଜନ୍ମ ହିମାଳୟ ଘରେ
ଉମାରୂପେ ଶିବେ ଲାଭ କଲେ ପୁଣି ଥରେ ।
ଏଥେଣି ଅପୂର୍ବ କଥା ଶୁଣ ଦେଇ ମନ
କଶ୍ୟପଙ୍କ ବଂଶ ଗାଥା କରିବ ବର୍ଣ୍ଣନ ।
ତ୍ରୟୋଦଶ ପତ୍ନୀ ତାଙ୍କ କରନ୍ତ ଶ୍ରବଣ
ସେମାନଙ୍କ ନାମ ଏବେ କରିବ ବର୍ଣ୍ଣନ ।

ତାହାଙ୍କର ଗର୍ଭେ ଯେତ୍ତ ଜନମ ଲଭିଲେ
ସେହି କଥା ବିସ୍ତାରଣ କହିବି ଏଠାରେ ।
ଅଦିତି ଗର୍ଭେ ଜନ୍ମିଲେ ଅମର ନିଚୟ
ଦିତି ଉଦରରେ ଜନ୍ମିଲେ ଯେ ଅସୁର ମୟ ।
କଦ୍ରୁ ହୋଇଲେ ଯେ ସର୍ପକୁଳର ଜନନୀ
ବିନତା ବିହଙ୍ଗଗଣ ପ୍ରସବ କାରିଣୀ ।
ଗୋ ମହିଷ ଆଦି ଜନ୍ମେ ସୁରଭୀ ଜଠରେ
କୁକୁରାଦି ଜନ୍ମହେଲେ ସରମା ଉଦରେ ।
ମନୁର ଗର୍ଭେ ଜନ୍ମିଲେ ଦାନବ ନିକର
ଏ ରୂପେ କଶ୍ୟପ ଲଭି କରିଲେ କୁମର ।
ଦ୍ୱାଦଶ ଆଦିତ୍ୟ ଇନ୍ଦ୍ର ଉପେନ୍ଦ୍ରାଦି ସର୍ବେ
ଅଦିତି ଗର୍ଭେ ଜନ୍ମିଲେ ବିଧି ସୃଷ୍ଟି ଭବେ ।
ଶଚି ଗର୍ଭେ ଇନ୍ଦ୍ରଠାରୁ ଜନ୍ମିଲେ ସନ୍ତାନ
ଜୟନ୍ତ ତାହାର ନାମ ସର୍ବ ଗୁଣବାନ ।
ବିଶ୍ୱକର୍ମା ଲଭିଲେକ ସବର୍ଣ୍ଣା ଆଖ୍ୟାନ
ତାହା ଉଦରେ ଜନ୍ମିଲେ ଦୁଇଟି ସନ୍ତାନ ।
ଆଦିତ୍ୟଙ୍କ ଔରସରେ ଜନ୍ମ ଦୁହିଙ୍କର
ଶନି ଆଉ ଯମ ନାମ ବିଖ୍ୟାତ ସଂସାର ।
ଏହା ଭିନ୍ନ କନ୍ୟା ଜନ୍ମେ ସବର୍ଣ୍ଣା ଉଦରେ
କାଳିନ୍ଦୀ ତାହାର ନାମ ଖ୍ୟାତ ଚରାଚରେ ।
ଉପେନ୍ଦ୍ର ଔରସେ ଶେଷେ ଜନମେ ମଙ୍ଗଳ
ଧରାର ଉଦରୁ ଜନ୍ମି ଖ୍ୟାତ ଧରାତଳ ।
ଏତେକ ବଚନ ଶୁଣି ଶୌନକ ଧୀମାନ
ସୌତିରେ ସମ୍ବୋଧି ଧିରେ କହିଲେ ବଚନ ।
ବସୁଧାର ଗର୍ଭେ ଆଜ ଉପେନ୍ଦ୍ର ଔରସେ
କରୂପେ ଜନ୍ମିଲ କୁଜ କୁହନ୍ତୁ ବିଶେଷେ ।
ସୌତି ବୋଲେ ଶୁଣ ଶୁଣ ତପୋଧନଗଣ
ବିସ୍ତାରି କରଣ ତାହା କରନ୍ତୁ ବର୍ଣ୍ଣନ ।
ଏକଦା ଉପେନ୍ଦ୍ର ଗଲେ ମଳୟ ଅଚଳେ
ଚନ୍ଦନ ଲେପନ ଶୋଭି ଦିବ୍ୟ କଳେବରେ ।
ଭୂଷଣେ ଭୂଷିତ ଶୋଭି ଅତି ମନୋହର
ଭ୍ରମର କରଇ ସେହି ନିର୍ଜନ ସ୍ଥାନର ।
ତାହାର ସ୍ୱରୂପ ଦେଖି ବସୁଧା ତକ୍ଷଣ
କାମବଶେ ହେଲେ ଦେବୀ ଆକୁଳିତ ମନ ।
ଅପୂର୍ବ ରମଣୀ ବେଶ ଧାରଣ କରିଣ
ହସି ହସି ମିଳିଲେକ ଉପେନ୍ଦ୍ର ପାଶେଣ ।

ଯେ ବେଳେ ଉପେନ୍ଦ୍ର ଥିଲ ଯେ ଶୟନ କରି
ସହାସ୍ୟ ବଚନେ ମିଳି ସେ ଧରା ସୁନ୍ଦରୀ ।
ମୋହନ ମାଳତୀ ମାଳ ଗଳାରେ ଲମ୍ବାଇ
କାମ ହାବଭାବ ତହିଁ ଦେଖାଇଲେ ସେହି ।
ଧରାର ଉନ୍ମତ୍ତ ଦେଖି ଦେବ ନିରଞ୍ଜନ
ରସିରସେ ତାଙ୍କ ସହ ରସିଲେ ତକ୍ଷଣ ।
କାମବଶେ ଧରାଦେବୀ ମୂର୍ଚ୍ଛିତା ହୋଇଲେ
ଉପେନ୍ଦ୍ର ସେ ସ୍ଥାନ ତେଜି ପ୍ରସ୍ଥାନ ଯେ ହେଲେ
ମୂର୍ଚ୍ଛିତ କି ଅବା ମୃତ ହୋଇଛି ଧରଣୀ
ସେ କାଳରେ ତାହା ସେହି ନ ପାରିଲେ ଜାଣି ।
ସେ ମୀନନୟନା ବୃତ୍ତହାସୀ ପୀନସ୍ତନୀ
ବିପୁଳ ନିତମ୍ବା କ୍ଷୀଣ ମଧ୍ୟମା ସୁଶ୍ରେଣୀ ।
ଉଲଗ୍ନ ଭାବରେ ମାତ୍ର ରତିରଙ୍ଗ ରସେ
ପଡ଼ିଥିଲେ ସେ ସ୍ଥାନରେ ସୁନ୍ଦରୀ ବେହୋସେ ।
ଏ ସମୟେ ସେହିବାଟେ ଉର୍ବଶୀ ଅପ୍ସରୀ
ଗମନ କରୁଣ ଥିଲ ବୃତ୍ତ ବିମ୍ବାଧରୀ ।
ପୃଥ୍ୱି ଦେବୀଙ୍କ ଅବସ୍ଥା ଦେଖି ନୟନରେ
ମିଳିଲ ତାହାଙ୍କ ସନ୍ନିଧରେ ଯେ ସତ୍ୱରେ ।
ଦେଖିଲ ଶିରିଶ କୋମଳାଙ୍ଗୀ ପିଡ଼ାପାଇ
ପଡ଼ି ରହିଅଛି ଶରୀରରେ ଚେତାନାହିଁ ।
ତାହାପରେ ମୁଖେ ଜଳସିଞ୍ଚି ସୁହାସିନୀ
ଚେତା କରାଇଲ ପୃଥ୍ୱୀ ସୁନ୍ଦରୀଙ୍କୁ ଧନୀ ।
ତହୁଁ କାରଣ ପୃଚ୍ଛିଲ କରି ପ୍ରବୋଧନା
କହିଲେ ସକଳ କଥା ବସୁଧା ସୁମନା ।
ରତିରସ ଶ୍ରମେ ହୋଇଥିଲେ ସେ ଦୁର୍ବଳ
ବସିଲେ କିଛି ସମୟ ହୋଇଣ ନିଶ୍ଚଳ ।
ଉପେନ୍ଦ୍ରଙ୍କ ବୀର୍ଯ୍ୟ ଗର୍ଭେ ଧରି ନ ପାରିଲେ
ପ୍ରବାଳ ତଳୁରେ ବେଗେଁ ତେଜ୍ୟା କରିଦେଲେ
ସେହି ପ୍ରବାଳ ଗହଳେ ପଡ଼ିବାରୁ ରେତ
କିଛିକ୍ଷଣ ପରେ ଜନମିଲ ଏକ ସୁତ ।
କୋଟି ସୂର୍ଯ୍ୟ ସମ ତେଜ ଅଟଇ ତାହାର
ତାନାମ ମଙ୍ଗଳ ଗ୍ରହ ଶୁଣ ମୁନିବର ।
ରେମା ନାମେ ଏକନାରୀ ପତିବ୍ରତା ସତୀ
ସେ ହେଲ ମଙ୍ଗଳଙ୍କର ପ୍ରାଣ ପ୍ରିୟବତୀ ।
ତାହାଙ୍କ ଅଙ୍ଗରୁ ଯେଉଁ ସୁତ ଜନମିଲ
ଘଣ୍ଟେଶ୍ୱର ନାମ ମହା ପରାକ୍ରମୀ ହେଲ ।

ବ୍ରଣବାଚା ଜଗତରେ ଅଟଇ ଯେ ସେହି
ତାଙ୍କୁ ପୂଜେ ଯେଉଁ ନର ହୁଏ ମୁକ୍ତହୋଇ ।
ଏଥୁଅନ୍ତେ ଯାହାହେଲା ଶୁଣ ନୃପବର
ଦିତିଙ୍କ ଉଦରୁ ଜାତ ହେଲେ ଦ୍ୱି କୁମର ।
ବିଷ୍ଣୁଙ୍କ ସମାନ ସେହୁ ମହା ତେଜବାନ
ଅତ୍ୟନ୍ତ ବଳିଷ୍ଠ ବପୁ ସୁନ୍ଦର ଗଠନ ।
ହିରଣ୍ୟ କଶିପୁ ଆଉ ହିରଣାକ୍ଷ ନାମ
ବହିଥିଲେ ସେ କୁମର ଶୁଣ ନରୋତ୍ତମ ।
ଆଉର ଜନ୍ମିଲା ଏକ ଅପୂର୍ବ କୁମାରୀ
ସିଂହିକା ବୋଲିଣ ନାମ ଅଟଇ ତାହାରି ।
ନର୍ଭୂତ ସେ କନ୍ୟା ଭଲେ ବିବାହ ହୋଇଲେ
ତାହାଙ୍କ ଔରସେ ସେହୁ ପୁତ୍ର ପ୍ରସବିଲେ ।
ସେହି କୁମରର ନାମ ରାହୁ ଯେ ଅଟଇ
ନୈଋତ ନାମ ତାହାର ଶୁଣ ମନଦେଇ ।
ସିଂହିକା ତନୟ ହେତୁ ସୈଂହିକେୟ ବୋଲି
ତାର ନାମ ହୋଇଅଛି କହୁଁହେଲି ଖୋଲି ।
ହିରଣାକ୍ଷ୍ୟ ମହାବୀର ଅପୁତ୍ରିକ ଥିଲା
ବରାହରୂପୀ ବିଷ୍ଣୁଙ୍କ ହସ୍ତେ ନାଶ ହେଲା ।
ହିରଣ୍ୟ କଶିପୁ ଥିଲା ତାହାର ଅଗ୍ରଜ
ମହା ପରାକ୍ରମଶାଳୀ ଅଟେ ଅତି ତେଜ ।
ପ୍ରହ୍ଲାଦ ନାମରେ ପୁତ୍ର ହୋଇଲା ତାହାର
ବିଷ୍ଣୁଙ୍କ ପ୍ରଧାନ ଭକ୍ତ ତ୍ରିଜଗପୁରେ ସାର ।
ତା ସମାନ ଭକ୍ତକେହି ଜଗତରେ ନାହିଁ
ବିରୋଚନ ତାର ସୁତ ଶୁଣ ମନଦେଇ ।
ସେହି ବିରୋଚନଠାରୁ ବଳିହେଲା ଜାତ
ବଳି ପୁତ୍ର ବାଣାସୁର ଜାଣନ୍ତି ଜଗତ ।
ଅତି ପରାକ୍ରମୀ ଶିବ ଭକ୍ତ ସେ ଅଟଇ
ଦାନବ କୁଳରେ କେହି ତାରସମ ନାହିଁ ।
ଦିତିଙ୍କର ବଂଶାବଳୀ ଶୁଣିଲ ତ ତୁମ୍ଭେ
କଦ୍ରୁଙ୍କର ବଂଶ କଥା ବଖାଣିବା ଏବେ ।
ଗୋଟି ୨ କରି ତାହା କହିବି ବିସ୍ତାରି
ମନ କର୍ଣ୍ଣ ଦେଇ ଶୁଣ ଆହେ ତପସ୍ୱୀ ।
ଅନନ୍ତ ବାସୁକୀ ଆଉ ତକ୍ଷକ କାଳୀୟ
କର୍କୋଟକ ଐରାବତ ପଦ୍ମ ଧନଞ୍ଜୟ ।
ମହାପଦ୍ମ ସମ୍ବରଣ ଦୁର୍ଦ୍ଧରସ ଶଙ୍ଖ
ଶଙ୍କୁ ଧୃତରାଷ୍ଟ୍ର ବଳ ଦୁର୍ଜୟ ଦୁର୍ମୁଖ ।।
ଗୋଷ୍ଠ ଗୋକା ମୂଳ ହରୁପାକ୍ଷ ଆଦିକରି
ଯେତେକ ସର୍ପ ଅନନ୍ତ ବ୍ରହ୍ମାଣ୍ଡରେ ପୂରି ।
ଯେ ସମସ୍ତ ଅଟନ୍ତି ଯେ କଦ୍ରୁଙ୍କର ବଂଶ
ମହାବଳ ଭୁଜଙ୍ଗମ ପୁରି ଅଛି ବିଷ ।
ତାହାଙ୍କର କନ୍ୟାଟିଏ ହୋଇଲା ଜନମ
ମନସା ତାହାର ନାମ ରମଣୀ ଉତ୍ତମ ।
ଲକ୍ଷ୍ମୀଙ୍କର ଅଂଶ ମଧ୍ୟ ଜାତ ହୋଇବାରୁ
ପରମା ସୁନ୍ଦରୀ ସେହୁ ଅତ୍ୟନ୍ତ ସୁବ୍ରତ ।
ମହାତେଜସ୍ୱିନୀ ପୁଣି ମହା ତପସ୍ୱିନୀ
ସକଳ ଲକ୍ଷଣ ପୂର୍ଣ୍ଣ ପୂର୍ଣ୍ଣ ଚନ୍ଦ୍ରାନନୀ ।
ଜରତ୍କାରୁ ମୁନିଙ୍କର ହେଲେ ପ୍ରିୟବଶୀ
ସେ ମୁନି ବିଷ୍ଣୁ ଅଂଶରେ ଜନ୍ମିଥିଲେ ଋଷି ।
ଆସ୍ତିକ ସେ ତପୀଙ୍କର ଅଟନ୍ତି କୁମର
ବିଷ୍ଣୁତୁଲ୍ୟ ତେଜଃଶୀଳ ତପସ୍ୱୀ ଶେଖର ।
ଆସ୍ତିକଙ୍କ ନାମ ଯେହୁ ସୁମରଣା କରେ
ସର୍ପମାନେ ନ ଆସନ୍ତି ପଶିକୁ ତାହାରେ ।
ଆଉର ଉତ୍କଟ ବିଷ ମାନ ନ ରହଇ
ଅନ୍ତରେ କାମନା ତାର ପୂରଣ ହୁଅଇ ।
ଆହେ ମୁନିମାନେ କଦ୍ରୁ ବଂଶର ଚରିତ
କହିଲି ଆଦ୍ୟନ୍ତୁଁ ପ୍ରାନ୍ତ ଯାଏ ମୁଁ ସମସ୍ତ ।
ଆନ କଥାମାନ ଶୁଣ ମନକର୍ଣ୍ଣ ଦେଇ
ବିନତାଙ୍କ ଠାରୁ ଜନ୍ମ ହେଲେ ପୁତ୍ର ଦୁଇ ।
ବିଷ୍ଣୁତୁଲ୍ୟ ବଳ ପରାକ୍ରମ ସେ ବହିଲେ
ଅରୁଣ ଗରୁଡ଼ ନାମ ସେ ଦୁହେଁ ହୋଇଲେ ।
ଅରୁଣ ସାରଥି ହେଲା ସୂର୍ଯ୍ୟ ଦେବଙ୍କର
ଗରୁଡ଼ ହୋଇଲା ବାହାନ ଯେ ବିଷ୍ଣୁଙ୍କର ।
ଯେତେ ପକ୍ଷୀ ରହିଅଛି ଏହି ଜଗତରେ
ଏ ବେନି ବଡ଼ ଅଟନ୍ତି ସଭିଙ୍କ ଉପରେ ।
ତାଙ୍କଠାରୁ ନାନାବିଧ ଉଡ଼ା ପକ୍ଷୀଗଣ
ଜନ୍ମହୋଇ ପୂର୍ଣ୍ଣ ହେଲେ ଗଗନ ମଣ୍ଡଳ ।
ସୁରଭୀଙ୍କଠାରୁ ଗୋରୁ ମହିଷ ଜନ୍ମିଲେ
କ୍ରମେ ୨ ସାରା ଜଗତରେ ବ୍ୟାପିଗଲେ ।
ଧରମାଙ୍କ ଉଦରରୁ ସାରମେୟ ଜାତ
ଜାତ ହେଲେ ଆହେ ସଉନକ ମହାମତି ।
ଦାନବେ ଅଟନ୍ତି ଦନୁଙ୍କର ବଂଶଧର
ଅନ୍ୟ ନାରୀଠାରୁ ହେଲେ ଆନ ଯେ ସଞ୍ଚାର ।

ଏହିରୂପେ କଶ୍ୟପଙ୍କ ନିମନ୍ତେ ଜଗତ
ସୃଷ୍ଟି ହେଲ ନାନା ଜୀବ ଜନ୍ତୁରେ ସମସ୍ତ ।
ଆବର ଶ୍ରବଣ କର ଚନ୍ଦ୍ରଙ୍କ ଚରିତ
ବ୍ୟାସଦେବ ଯାହା କହି ଅଛନ୍ତି ବ୍ୟକତ ।
ଯେଉଁ ସତାଇଶ କନ୍ୟା ଦକ୍ଷ ପ୍ରଜାପତି
ଚନ୍ଦ୍ରଙ୍କୁ ପ୍ରଦାନ କଲେ ମନେ ହୋଇ ପ୍ରୀତି ।
ସେହି କନ୍ୟାଗଣଙ୍କର ନାମ ମାନ ଶୁଣ
ଅଶ୍ୱିନୀ ଭରଣୀ କୃତ୍ତିକା ରୋହିଣୀ ଯେ ପୁଣ ।
ମୃଗଶିର ଆର୍ଦ୍ରା ସେ ପୁନର୍ବସୁ ସଙ୍ଗ
ଆବର ପୁଷ୍ୟା ଅଶ୍ଳେଷା ଦିବ୍ୟ ଭାଗ୍ୟବନ୍ତ ।
ପୂର୍ବା ଫାଲ୍‌ଗୁନୀ ପୁଣି ଉତ୍ତର ଫାଲ୍‌ଗୁନୀ
ହସ୍ତା ଚିତ୍ରା ସ୍ୱାତୀ ତଥା ବିଶାଖାକୁ ଘେନି ।
ଅନୁରାଧା ଜ୍ୟେଷ୍ଠା ମୂଳା ପୂର୍ବାଷାଢ଼ା ବାଳା
ଉତ୍ତରାଷାଢ଼ା ଶ୍ରବଣା ସୁରୂପ କୁନ୍ତଳା ।
ଧନିଷ୍ଠା ଆବର ପୂର୍ବଭାଦ୍ର ଶତଭିଷାରେ
ଉତ୍ତର ଭାଦ୍ର ରେବତୀ ମିଶି ଏ ପ୍ରକାରେ ।
ସତେଇଶ ଗୋଟି କନ୍ୟା ଚନ୍ଦ୍ରଙ୍କ ଘରଣୀ
ସୁନ୍ଦରୀ ମସ୍ତକଭୂଷା ସଙ୍ଗ ଶିରୋମଣି ।
ରୋହିଣୀ ସଭିଙ୍କ ଭିତରେ ଶ୍ରେଷ୍ଠା ଯେ ଅଟନ୍ତି
ସକଳ ଗୁଣରେ ପରିପୂର୍ଣ୍ଣ ହୋଇଛନ୍ତି ।
କାମକଳା ବିଧି ସେ ଜାଣନ୍ତି ଭଲକରି
ହସାଇ ରସାଇ ଚନ୍ଦ୍ର ମନ ନ୍ୟନ୍ତ ହରି ।
ତାହାଙ୍କ ବଶରେ ରହି ନିଶା ଅଧିଶ୍ୱର
ପ୍ରୀତ ନ ହୋଇଲେ ଅନ୍ୟ ନାରୀଙ୍କ ଉପର
ରୋହିଣୀଙ୍କ ଘର କେବେ କେବେ ନ ଛାଡ଼ିଲେ
ଦାସ ପରି ତାଙ୍କ ଆଜ୍ଞା ପାଳନ କରିଲେ ।
କତିଦିନ କାମରସେ ବୁଡ଼ାଇ ମାନସ
ତାହାଙ୍କ ଅଙ୍ଗ ସଙ୍ଗରେ ହୋଇଲେ ସନ୍ତୋଷ ।
ଆନ ପତ୍ନୀମାନେ ତାହା ଯେବେ ଜାଣିଲେ
ନ ସହି ପାରି ପିତାଙ୍କ ଗୃହକୁ ଚଳିଲେ ।
ଦେଖି ଦକ୍ଷ ସେମାନଙ୍କୁ କରିଲେ ଆଦର
କହିଲେ କନ୍ୟାଏ ତାଙ୍କୁ ସର୍ବ ସମାଚାର ।
ବୋଇଲେ ହେ ପିତା ଆମ୍ଭ ସ୍ୱାମୀ କଳାନିଧି
କରିଛନ୍ତି ଆମ୍ଭଠାରେ ପକ୍ଷପାତ ବୁଦ୍ଧି ।
ସର୍ବଦା ରହିଅଛନ୍ତି ରୋହିଣୀ ପାଶରେ
ପଚାରୁ ନାହାନ୍ତି ଆମ୍ଭମାନଙ୍କୁ ସେ ଥରେ ।

ଲଗିମା ଆମ୍ଭର ସଉତୁଣୀ ବାଦ ସାଧି
ଏତେ ଦୁଃଖ ଦେଉଅଛୁ ଦିଅ ତାରେ ବାଧି ।
ଏହା ଶୁଣି ଦକ୍ଷ ପ୍ରଜାପତି କୋପ କଲେ
ଚନ୍ଦ୍ରଙ୍କୁ ଅନାଇଁ ସେହିକ୍ଷଣି ଶାପ ଦେଲେ ।
ବୋଇଲେ କନ୍ୟାଙ୍କୁ ମୋର ବିଭା ହୋଇକରି
ଦୁଃଖ ଦେଉଅଛୁ ଆଗ ପଛ ନ ବିଚାରି ।
ସେହି ଦୋଷେ ତବ ଅଙ୍ଗେ କ୍ଷୟ ରୋଗ ହେଉ
ଆମ୍ଭର ବଚନ କେବେଁ ଅନ୍ୟଥା ନ ହେଉ ।
ଏହିରୂପେ ଶାପ ଯହୁଁ ଦେଲେ ପ୍ରଜାପତି
ଚନ୍ଦ୍ରଙ୍କ ଶରୀରେ ରୋଗ ଘୋଟିଲା ଝଟତି ।
ଦେଖୁ ଦେଖୁ ତାଙ୍କ ଦେହ କ୍ଷୀଣ ହୋଇଗଲା
ତା ଜାଣି ଚନ୍ଦ୍ରଙ୍କ ମନ ବିରସ ହୋଇଲା ।
ଭୟ ପାଇ ଆପଣାର ପୁର ଛାଡ଼ିଦେଇ
ଶରଣ ପଶିଲେ ଶିବଙ୍କର ପାଦେ ଯାଇ ।
ଜଣାଇ ସମସ୍ତ କଥା କଲେ ବହୁ ସ୍ତୁତି
ତାହାଙ୍କର କଷ୍ଟ ଦେଖି ସତୀଙ୍କର ପତି ।
ଦୟାପୂର୍ଣ୍ଣ ହୃଦୟରେ ଅଭୟ ପ୍ରଦାନ
କରିବାରୁ କ୍ଷୟ ରୋଗ ହୋଇଲା ନିଧନ ।
ପୁଣି ଶୂଳପାଣି ଚନ୍ଦ୍ରପରେ ଦୟାବନ୍ତ
ଆପଣା ମସ୍ତକ ପରେ ବସାଇଲେ ନେଇ ।
ଅମର ନିର୍ଜର ହୋଇ ସେଠାରେ ଶଶାଙ୍କ
ବାସ କଲେ ମାନସରୁ ଛାଡ଼ି ସର୍ବଦିନ ।
ସେ ଦିନୁ ଚନ୍ଦ୍ରଙ୍କୁ ଶିରେ ବହିବାରୁ ହର
ଶ୍ରୀ ଚନ୍ଦ୍ରଶେଖର ନାମ ହୋଇଛି ତାଙ୍କର ।
ଶିବଙ୍କ ସମାନ କେହି ଶରଣ ପଞ୍ଜର
ନଥିବେ ଏ ତ୍ରିଜଗତେ ଆହେ ମୁନିବର ।
ଏଥୁ ଅନନ୍ତରେ ଶୁଣ ଆନ ସମାଚାର
ହୃଦୟ ସବେ ବୁଝାଇ କହିବା ସତ୍ୱର ।
ଚନ୍ଦ୍ରମାତ ଶିବଙ୍କର ମସ୍ତକେ ରହିଲେ
ଦକ୍ଷ କନ୍ୟାମାନେ ଏଣେ ହତାଶ ହୋଇଲେ ।
କାନ୍ଦି ସର୍ବେ ଉଚ୍ଚସ୍ୱରେ ଶିରେ ତାଡ଼ିକରି
ପତିଙ୍କି ସୁମରି ତଳେ ପଡ଼ିଲେ ମହୀର ।
ପୁଣି ଚେତା ପାଇ ସର୍ବେ ଏକତ୍ରିତ ହୋଇ
ଆଉ ଥରେ ଗଲେ ପିତା ସନ୍ନିଧିକୁ ଧାଇଁ ।
ମସ୍ତକ କରିଛି ଅତି ବ୍ୟାକୁଳିତ ଚିତ୍ତ
ଦକ୍ଷଙ୍କ ପାଦେ ପଡ଼ିଲେ ଦୁହିତା ସମସ୍ତେ ।

ବୋଇଲେ ହେ ପିତା ଆମ୍ଭେ ପତି ପାଇବାକୁ
ଆସିଲୁ ସକଳେ ମିଳି ତୁମ୍ଭର ପାଶକୁ ।
ଏବେ ସ୍ୱାମୀ ଲାଭ କରିବାର କଥା ଥାଉ
ଛାଡ଼ି ପଳାଇଲେ ସ୍ୱାମୀ ନ ଆସିଲେ ଆଉ ।
ତୁମ୍ଭ ଶାପ ଫଳିବାରୁ ସପ୍ତ ବେଗ ଆସି
ଆମ୍ଭ ପତିଙ୍କ ଶରୀର ପକାଇଲା ଗ୍ରାସି ।
ସେ ସକାଶୁ ସ୍ଥିର ହୋଇ ରହି ନ ପାରିଲେ
ଶଙ୍କରଙ୍କ ପାଦତଳେ ଶରଣ ପଶିଲେ ।
ଦୟାକୁ ସାଗର ଦେବଦେବ ତ୍ରିଲୋଚନ
ବେଗ ଶୂନ୍ୟ କରି ତାଙ୍କ ପୁରେ ଦେଲେ ସ୍ଥାନ
ତାହାଙ୍କ ଠାରୁ ଆଦର ପାଇ ପ୍ରାଣନାଥ
ଆଜ ନ ଆସନ୍ତି ଆମ୍ଭ ପାଶକୁ ହେତାତ ।
ଦେଖ ଆମ୍ଭ ଚକ୍ଷୁ ଥାଇ ଜଗତ ଅନ୍ଧାର
କିଛି ଦିଶୁନାହିଁ ତଳେ ମାତ୍ର ହେ ପିଅର ।
ପତିବ୍ରତା ନାରୀଙ୍କର ପତି ସେ ନୟନ
ପତିଏକା ଗତିମୁକ୍ତି ସଉଭାଗ୍ୟ ଧନ ।
ସଗୁଣଠାରୁ ସେ ଜାଣ ଅଧିକ ଅନନ୍ତ
ତାହାଙ୍କ ବିନେ ନାରୀର ନାହିଁ ଆନ ଗତି ।
ଗତି ଏକା ଧର୍ମ ଅର୍ଥ କାମ ମୋକ୍ଷ ହେତୁ
ସଂସାର ସାଗର ପାର ହୋଇବାର ସେତୁ ।
ରମଣୀ ମାନଙ୍କ ପତି ସ୍ୱୟଂ ନାରାୟଣ
ଏହା ଭିନ୍ନ ମୁଖ୍ୟବ୍ରତ ଦେବ ସନାତନ ।
ପତି ବିମୁଖ ହୁଅନ୍ତି ଯେଉଁ ନାରୀଠାର
ସବୁ ଧର୍ମ ସବୁକର୍ମ ବୃଥା ସେ ତାହାର ।
ସକଳ ତୀର୍ଥେ ଯଦ୍ୟପି କରିଥିବ ସ୍ନାନ
ନାନା ଯାଗ ଯଜ୍ଞ କରି ଦେଇ ଥିବ ଦାନ ।
ଅଶେଷ ପ୍ରକାର ବ୍ରତ ନିୟମ ପାଳିବ
ସେମାନଙ୍କ ଦ୍ୱାରା ଯେତେ ପୁଣ୍ୟ ଲାଭ ହେବ ।
ସେ ସମସ୍ତ ସୁକୃତକୁ ଏକଠାବେ ଥୋଇ
ତୁଳନା କରିଲେ ପତି ସେବାସଙ୍ଗେ ନେଇ ।
ଷୋଡ଼ଶ ଭାଗରୁ ତାର ଏକ ଭାଗ ମାତ୍ର
ସମାନ ନୋହିବ ଏହା କହୁଅଛି ଶାସ୍ତ୍ର ।
ବାପଭାଇ ବନ୍ଧୁଠାରୁ ଜାତ କଲା ସୁତ
ଅଧିକ ବୋଲି ରମଣୀ ବସ୍ତୁରନ୍ତି ଶତ ।
ଏହାର କାରଣ ଅଟେ ସ୍ୱାମୀ ଔରସରେ
ଜାତ ହୋଇଅଛନ୍ତି ସେହି ସନ୍ତାନ ମର୍ତ୍ତ୍ୟରେ ।

କିନ୍ତୁ ଯେଉଁପରି ଶତେପୁତ୍ର ଠାରେ ହେତେ
ସ୍ନେହ ଏକା ପତିଠାରେ ନାରୀର ସେ ସେତେ,
ଯେଉଁ ଅଭାଗ୍ୟ ରମଣୀ ପତି ନିନ୍ଦାକରି
ତିର ତୁଚ୍ଛ କରି ହେଳା ସେହୁ ପଡ଼ିବ ନର୍କରେ ।
ଆଦର କରଇ ହିଂସା ଦ୍ୱେଷ ନାନାମତେ
ପର ପୁରୁଷରେ ମନ ରଖଇ ମନ୍ମଥେ ।
ସେ ଅବଳା ବହୁ ପାପ ବହି ନିଜ ମୁଣ୍ଡେ
ଅନ୍ତକାଳେ ପଡ଼ି ଯାଇ ରୌରବ କୁଣ୍ଡେ ।
ପତିତ କୁଳୀନ ଅବା ନିରୋଗୀ ବା ରୋଗୀ
ଦରିଦ୍ର ଅଥବା ହେଉ ଧନଧାନ୍ୟ ଭୋଗୀ ।
ସୁନ୍ଦର ସ୍ୱରୂପବନ୍ତ ଗୁଣବନ୍ତ ଅବା
ନିର୍ଗୁଣ କୁରୂପ ଜରାଜୀର୍ଣ୍ଣ ହେଉ ଅବା ।
ଆପଣା ପତିକୁ ଛାଡ଼ି ସତୀ ସ୍ତ୍ରୀ ସୁଜନ
ଆନଠାକୁ ଯିବାପାଇଁ ନ ବଳାଏ ମନ ।
ନ ଜାଣିବା ପଣରେ ବା ଯେବଣ କାମିନୀ
ତେଜନ୍ତି ପତିଙ୍କ ପାଶ ଲୋଭ ମୋହଯେନି ।
ସେ ନାରୀକା ସଦାକାଳେ ନରକରେ ପଡ଼ି
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ମରୁଥାଏ ଶଡ଼ି ।
ସୂଚୀ ମୁଖୀ କୀଟଗଣ ବିବିଧ ଜ୍ୱାଳାରେ
କାଟନ୍ତି ତାର ଅଙ୍ଗକୁ କଦର୍ଯ୍ୟ ଭାବରେ ।
ଯେତେବେଳେ କ୍ଷୁଧା ତୃଷା ଲାଗଇ ତାହାଙ୍କୁ
ପଚ଼ି ଶବ ମାଂସ ଖାଇ ପିଅନ୍ତି ମୂତ୍ରକୁ ।
ଯଦ୍ୟପି ସେ ଘୋର ନରକରୁ ମୁକ୍ତ ହୋନ୍ତି
କୋଟିଏ ଜନମ ଯାଏ ଗୃଧ୍ରପକ୍ଷୀ ହୋନ୍ତି ।
ତାହାପରେ ଶତେ ଜନ୍ମ ଶୂକର ହୁଅଇ
କୁକୁର ହୁଅଇ ଶତେ ଜନ୍ମଯାଏ ସେହି ।
ଯେବେ ପୂର୍ବ କର୍ମ ଫଳେ ମାନବ ଯୋନିରେ
ଜନ୍ମ ହୁଏ ବନ୍ଧ୍ୟା ନାଶ କରେ ଯୌବନରେ ।
ତଦନ୍ତରେ ପତି ଦ୍ରୋହ କରିଥିବା ହେତୁ
ଧନହୀନା ହୋଇ ହୁଏ ଅଥବା ରୋଗିଣୀ ।
ଏ ସକାଶୁଁ ଆସେ ତାତ କହୁଛୁଁ ତୁମ୍ଭଙ୍କୁ
ପତି ବିରହରେ ଅଂଷ୍ଟ ତେଜିବୁ ଜୀବକୁ ।
ପ୍ରଜାପତିଙ୍କର ତୁମ୍ଭେ ଅଟଇ କୁମର
ତାହାଙ୍କ ଆଦେଶୁ ସୃଷ୍ଟି ସରଜନା କର ।
ତବ ପାଦତଳେ ପଡ଼ି କହୁଛୁ ବିନତି
ପ୍ରଣାଇ ଦିଅ ପାଶକୁ ଆମ୍ଭ ପ୍ରାଣପତି ।

ଏହିପରି ସୁତାଙ୍କର ବଚନକୁ ଶୁଣି
ଆପଣା ମନରେ ଦକ୍ଷ ପ୍ରଜାପତି ଗୁଣି ।
ଈଶ୍ୱରଙ୍କ ପାଶେ ଯାଇ ପରବେଶ ହେଲେ
ଶ୍ୱଶୁରଙ୍କୁ ଦେଖି ଶିବ ଆସନୁଁ ଉଠିଲେ ।
ଭକ୍ତିରେ ପାଦ ବନ୍ଦ କରି ନମସ୍କାର
ଆସନ ଦେଇ ପୁଚ୍ଛିଲେ ଶୁଭ ସମାଚାର ।
ଶିବଙ୍କ ବିନୟ ଦେଖି ଦକ୍ଷ ପ୍ରଜାପତି
ଆଶୀର୍ବାଦ କଲେ ତୋଉଜର ସେହ୍ମମତି ।
ତଦନ୍ତରେ ପଥଶ୍ରମ କରି ନିବାରଣ
କହିଲେ ଅତି କୋମଳ ମଧୁର ବଚନ ।
ବୋଇଲେ ମୋହର ଗିର ଶୁଣ ସଦାଶିବ
ଚନ୍ଦ୍ର ଯେ ଅଟନ୍ତି ମୋର ସୁତାଙ୍କର ଧବ ।
ତାଙ୍କଠାରେ ମୋର ସୁତାମାନେ ବିବାହିତ
କରନ୍ତି ଆପଣା ପ୍ରାଣଠାରୁ ବଳି ଭକ୍ତି ।
ଏବେ ତୁମ୍ଭେ ସେ ଚନ୍ଦ୍ରଙ୍କୁ ରଖି ମସ୍ତକରେ
ବିଚରଣ କରୁଅଛ ଆନନ୍ଦ ମନରେ ।
ତେଣୁ ମୋର କନ୍ୟାମାନେ ବୁଦ୍ଧି ହଜାଇଣ
ବାଇ ପ୍ରାୟ ବୁଲୁଛନ୍ତି ପତିଙ୍କୁ ଚିନ୍ତିଣ ।
ଦିବସ ରଜନୀ ବସି କରନ୍ତି କ୍ରନ୍ଦନ
ପତିମୁଖ ନ ଦେଖିଲେ ତେଜିବେ ଜୀବନ ।
ଏ ନିମନ୍ତେ ତବ ପାଶେ ଆସିଅଛି ମୁହିଁ
ଚନ୍ଦ୍ରକୁ ବହନ ଦିଅ ଯିବି ସଙ୍ଗେ ନେଇ ।
ତୁମେତ ସହଜେ ଅଟ ଜାମାତା ମୋହର
ମୁଁ ଯାହା ବୋଲୁଛି ତାହା ତୁମ୍ଭେ ରକ୍ଷାକର
ନୋହିଲେ ଦାରୁଣ ଶାପ ତୁମ୍ଭଙ୍କୁ ମୁଁ ଦେବି
ନିବାରଣ କରି ନ ପାରିବେ ତା କଦାପି ।
ଏମନ୍ତ ବଚନ ଶୁଣି ଦକ୍ଷ ପତିଙ୍କର
କହିଲେ ତାହାଙ୍କୁ ଶିବ ସୁମଧୁର ଗିର ।
କରୁଣା ସାଗର ସେତ ଶରଣ ସୋଦର
ପୀୟୂଷ ଧାର ସମାନ ପ୍ରକାଶିଣ ଗିର ।
ବୋଇଲେ ଶ୍ୱଶୁର ବାରେ ଶୁଣ ମୋ ବଚନ
ଆପଣଙ୍କ କଥାରେ ମୋ ନ ମାନଇ ମନ ।
ଚନ୍ଦ୍ର ଆସି ମୋହପାଦେ ଶରଣ ପଶିଲେ
ତାହାଙ୍କୁ ଅଭୟ ଦେଇ ରଖିଅଛି ହେଳେ ।
ଶରଣଃ ହେବା ଜନଙ୍କୁ ଛାଡ଼ି ଦେବାର
ନୁହଇଁ କଦାପି ପ୍ରଭୁ ଉଚିତ ବେଭାର ।
ରକ୍ଷିବି ବୋଲିଣ କରିଅଛି ବାକ୍ୟଦାନ
ସେକଥା କଦାପି ମୋର ନହୋଇବ ଆନ ।
ତେଣୁ ବୋଲୁଅଛି ପିତା ଶାପ ଦେଲକରି
ଦହନ୍ତୁ ପଛକେ ମୋତେ ପରାଣୁ ସହାରି ।
କି ଅବା ମୋ ପ୍ରଭୁପଣ ନିଅନ୍ତୁ ଛଡ଼ାଇ
କଦାପି ଚନ୍ଦ୍ରଙ୍କୁ ପାରୁଁ ଘୁଡ଼ି ନ ପାରଇ ।
ଶିବଙ୍କ ବଚନ ଶୁଣି ଦକ୍ଷ କଲେ କୋପ
ହସ୍ତରେ ଧଇଲେ ଜଳ ଦେବା ପାଇଁ ଶାପ ।
ଦେଖିଣ ତାହାଙ୍କ ସ୍ଥିତି ଦେବ ମହେଶ୍ୱର
ଗୋବିନ୍ଦଙ୍କୁ ଚିନ୍ତାକଲେ ଅନ୍ତର ମଧ୍ୟର ।
ବୋଇଲେ ବିପଦ ତାରଣକର୍ତ୍ତା ତୁମେ ହରି
ଏ ବିପଦ ହେଜେ ମୋତେ ରଖ ଆସିକରି ।
ଶିବଙ୍କ କାତର ବାଣୀ ଶୁଣି ନାରାୟଣ
ପ୍ରବେଶ ହୋଇଲେ ବୃଦ୍ଧ ବ୍ରାହ୍ମଣ ବେଶେଣ ।
ତାହାଙ୍କୁ ଦେଖିବା ମାତ୍ରେ ଦକ୍ଷ ଶିବ ଦୁଇ
ଭକ୍ତିରେ ପାଦତଳେ ପ୍ରଣମିଲେ ତହିଁ ।
ଶୁଭ ଆଶୀର୍ବାଦ ବାକ୍ୟ ଉଚ୍ଚାରି ଗୋବିନ୍ଦ
ବସିଲେ ଆସନପରେ ହୋଇଣ ଆନନ୍ଦ ।
ବ୍ୟାକୁଳ ହେବାର ଦେଖି ଶିବଙ୍କର ଚିତ୍ତ
ବ୍ରାହ୍ମଣ ସ୍ୱରୂପଧାରୀ ତ୍ରୈଲୋକ୍ୟ ନାଥ ।
ଅଶେଷ ପ୍ରକାର ମୋହ ନାଶର କାରଣ
କହିଲେ ତାହାଙ୍କୁ ଧୀରେ ଲଳିତ ବଚନ ।
ବୋଇଲେ ମୋହର ଗିର ଶୁଣ ହେ ଶଙ୍କର
ଯେତେ ଜୀବ ବାସ କରିଛନ୍ତି ଜଗତର ।
ଆପଣା ମଙ୍ଗଳ ବାଞ୍ଛା ସମସ୍ତେ କରନ୍ତି
ଅଧିକ ନୁହଇଁ ନିଜଠାରୁ ବନ୍ଧୁ ଜ୍ଞାତି ।
ଦେହ ଥିବାଯାଏ ସର୍ବକଥା ଉହ୍ନଥାଏ
ବିନାଶ ମାତ୍ରକେ ତାର ସଙ୍ଗେ ସବୁ ଯାଏ ।
ଏ ନିମନ୍ତେ କହୁଅଛି ଆହେ ସୁରେଶ୍ୱର
ଦକ୍ଷଙ୍କରେ ଚନ୍ଦ୍ର ଅର୍ପି ଆତ୍ମ ରକ୍ଷାକର ।
ତୁମ୍ଭେତ ତପସ୍ୱୀ ଗଣ ମଧ୍ୟରେ ଉତ୍ତମ
ନଥିବ ବୈଷ୍ଣବଗଣ ମଧ୍ୟେ ତୁମ୍ଭସମ ।
ହିଂସା କ୍ରୋଧ ଲୋଭ ମୋହ ବିବର୍ଜିତ କରି
ସବୁ ପ୍ରାଣୀଠାରେ ସମ ଭାବ ଅଛ ଧରି ।
ଏଣୁଥି ଲାଗି ତୁମ୍ଭଙ୍କୁ କହୁଅଛି ମୁହିଁ
ଦେଶ କାଳ ଭାବ କାର୍ଯ୍ୟ କର ମନେ ଧ୍ୟାଇ ।

ଧାତାଙ୍କ ନନ୍ଦନ ଏହି ଦକ୍ଷ ପ୍ରଜାପତି
ମହା ତେଜୋବନ୍ତ ମହାକ୍ରୋଧ ଦୁଷ୍ଟମତି ।
ଚନ୍ଦ୍ରମାକୁ ତୁମ୍ଭଠାରୁ ନ ପାଇବେ ଯେବେ
ଏହିକ୍ଷଣି ଶାପ ଦେଇ ଅନିଷ୍ଟ କରିବେ ।
ଦୁଷ୍ଟ ଲୋକଠାରୁ ସାଧୁଜନଙ୍କର ଭୟ
ହୋଇଥାଏ ଜାଣ ସବୁ କାଳରେ ଉଦୟ ।
କିନ୍ତୁ ଦୁଷ୍ଟେ ସାଧୁଙ୍କୁ ଯେ ଭୟ ନ କରନ୍ତି
ଏ କଥା ନିଶ୍ଚୟ ଜାଣିଥାଅ ମହାମତି ।
ଏଣୁ ମୋହ କଥାମାନି ଦିଅ ହେ ଚନ୍ଦ୍ରଙ୍କୁ
ସଙ୍ଗତରେ ନେଇ ଦକ୍ଷ ଯାଆନ୍ତୁ ପୁରକୁ ।
ଏହିପରି ନାରଦଙ୍କର ବାକ୍ୟ ଶୁଣି
ହସିଣ ଶଙ୍କର ତାଙ୍କୁ ବୋଇଲେକ ବାଣୀ ।
ଶୁଣ ଆହେ ଦ୍ୱିଜବର ଜ୍ଞାନୀ ନେଲେ ମୁଣି ।
ଧର୍ମ ଅର୍ଥ ଆଦି ସବୁ ଦେଇ ମେ ପାରଇ ।
ସକଳ ସମ୍ପଦ ତୁଲେ ପରାଣକୁ ମଧ୍ୟ
ଦେବାକଥା ମୋ ପକ୍ଷରେ ନୁହଇଁ ଦୁଃସାଧ୍ୟ ।
ମାତ୍ର ଯେ ଶରଣାଗତ ହୋଇଥିବ ଆସି
ତାହାକୁ ମୁଁ କେବେହେଲେ ନପାରେ ବିନାଶି
ଲୋକରେ କହା ଭୟରେ ଯେବଣ ମୂରୁଖ
ଶରଣାଗତ ବ୍ୟକ୍ତିଙ୍କୁ ନ ରଖଇ ପାଖ ।
ରଖେ ପୁଣ ଆନହସ୍ତେ ସମର୍ପଣ କରେ
ତାହାକୁ ତେଜଇ ଧର୍ମ ସକଳ ପ୍ରକାରେ ।
ପୁଣ ତାରେ ନିନ୍ଦାରୁଣ ଶାପ ଦେଇଯାଏ
ଅଧରମ ତାର ଅଙ୍ଗେ ଆସିଣ ଯେ ରହେ ।
ସକଳ ବିଷୟ ତେଜି ପାରେ ମୁଁ କଷ୍ଟତେ
ତେଜି ନ ପାରଇ ନିଜ ଧର୍ମ କଦାଚିତେ ।
ଆପଣା ଧର୍ମକୁ ଯେଉଁ ଜନ ତ୍ୟାଗକରେ
ଅଟଇ ଜାଣ ସେ ଜନ ଜଗତ ବାହାରେ ।
କିନ୍ତୁ ନିଜ ଧର୍ମ ଯେହୁ ଯତନରେ ରଖେ
ଧର୍ମ ତାକୁ ସଦା ହୁଏ ରହି ପାଖେ ପାଖେ ।
ତୁମ୍ଭେତ ଧର୍ମ ସ୍ୱରୂପ ଆହେ ଦେବଋଷି
ମାୟାରେ କମ୍ପାଇ ମୋହୁଅଛ ମୋ ମାନସ ।
ଜଗତର ସୃଷ୍ଟି ସ୍ଥିତି ସଂହାର କରତା
ଅଟ ତୁମ୍ଭେ ସର୍ବମୟ ବିଧାତାର ଧାତା ।
ତୁମ୍ଭ ଭାବେ ଦୃଢ଼ ଭକ୍ତି କରଇ ଯେ ନର
କାହାଠାରେ ଆଉ ଭୟ ରହିବ ତାହାର ।

ଏହିରୂପେ କହି ତୁନି ହେଲେ ଶୂଳପାଣି
ଶ୍ରୀକୃଷ୍ଣ ଶୁଣିଣ ତାହା ଉଠି ସେହିକ୍ଷଣି ।
ଶିବଙ୍କ ମସ୍ତକ ଦେଖୁଁ ଚନ୍ଦ୍ରଙ୍କୁ ଆଣିଲେ
କଳାଟିଏ କାଟି ନିଜ ପାଖରେ ରଖିଲେ ।
ପନ୍ଦରଟି କଳା ଦକ୍ଷ ପ୍ରଜାପତି କରେ
ଅର୍ପିଣ ବୋଇଲେ ତୁମ୍ଭେ ଯାଅ ନିଜପୁରେ ।
ରଖିଥିବା କଳାଟିକୁ ଶଙ୍କରଙ୍କୁ ଦେଇ
ବୋଇଲେ ମୋଠାରୁ ଶୁଣ ସନ୍ତୋଷଦେବା ପାଇଁ ।
ତୁମ୍ଭର ପ୍ରତିଜ୍ଞା ରକ୍ଷା କରିବା ନିମନ୍ତେ
କଳା ଏକ ଦେଲି ଏବେ ନିଅ ତୋଷଚିତ୍ତେ ।
ଶୁଣିଣ ଶଙ୍କର ତାହା ଆନନ୍ଦ ହୋଇଲେ
ସେ କଳାକୁ ନେଇ ପୁଣି ମସ୍ତକେ ସ୍ଥାପିଲେ ।
ତାଙ୍କନାମ ତହୁଁ ହେଲା ଯେ ଚନ୍ଦ୍ରଶେଖର
ଶୁଣ ଆହେ ସଉନକ ମୁନିଙ୍କ ପ୍ରବର ।
ବ୍ୟାଧି ଜନ୍ମ ଶୂନ୍ୟ ସେହି କଳା ଯେ ଅଟଇ,
ଶିବଙ୍କ ଶିରଭୂଷଣ ରୂପେ ଶୋଭାପାଇ ।
ଆନ କଳାମାନ ନେଇ ଦକ୍ଷ ପ୍ରଜାପତି
ଦେଖିଲେ ତାହାଙ୍କ ଦେହ କ୍ଷୀଣ ହସେ ଅତି ।
ଗ୍ରାସିବାରୁ ଯକ୍ଷ୍ମାରୋଗ ଦିଶୁଛୁ ବିବର୍ଣ୍ଣ
ସେ ଘେନ ଦୁଃଖିତ ହୋଇ ଆପଣାର ମନ ।
ଶ୍ରୀବିଷ୍ଣୁଙ୍କ ପାଦପଦ୍ମ ବହୁ ସ୍ତୁତି କଲେ
ତାହାଦେଖି ନାରାୟଣ ପ୍ରସନ୍ନ ହୋଇଲେ ।
ବୋଇଲେ ହେ ପ୍ରଜାପତି ଚିନ୍ତା ପରିହର
ତବ ଜାମାତାଙ୍କୁ ଆମ୍ଭେ ଦେଉଅଛୁ ବର ।
ଆଜଠାରୁ ଏକପକ୍ଷ କ୍ଷୟ ହେଉଥିବେ
ଏକ ପକ୍ଷ ବୃଦ୍ଧି ହୋଇ ସମ୍ପୂର୍ଣ୍ଣ ହୋଇବେ ।
ଏହିରୂପ କହି ପ୍ରଭୁ ନିଜ ପୁରେ ଗଲେ
ଚନ୍ଦ୍ରଙ୍କୁ ସଙ୍ଗତେ ଦକ୍ଷ ଘେନିଣ ଆସିଲେ ।
କନ୍ୟାମାନଙ୍କର ପାଶେ କଲେ ସମର୍ପଣ
ଦେଖି ଆନନ୍ଦିତ ହେଲେ ସେହି ଯୁବାଗଣ ।
ଆପଣା ପତ୍ନୀମାନଙ୍କୁ ପାଇ ଶଶଧର
ରତିରସେ ମାତି ସୁଖେ କଲେକ ବିହାର ।
ସମାନ ଭାବେ ସଭିଙ୍କୁ ଆଦର କରିଲେ
ଦକ୍ଷ ପ୍ରଜାପତିଙ୍କୁ ସେ ଭୟଙ୍କର ହେଲେ ।
ଭୂସ୍ୱର ତୀର୍ଥରେ ମୂର୍ଖ ତପସ୍ୱୀ ସଭାରେ
ଗୁରୁଙ୍କ ମୁଖରୁ ଶୁଣ ଥିଲି ଯା ଯେଠାରେ ।

ତାହାସବୁ ବସ୍ତାରେ ତୁମ୍ଭଙ୍କୁ କହିଲି
ସୃଷ୍ଟିର କଥିତ କ୍ରମ ବର୍ଣ୍ଣନା କରିଲି ।
ମୁନିମାନଙ୍କ ଚରଣେ ଜଣାଇ ସ୍ତୁତି
ଧ୍ୟାନ ସ୍ଥାନ କ୍ଷେତ୍ରବାସୀ ବରଚିଲ ଗୀତି ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ କଶ୍ୟପଆଦି ଋଷିମାନଙ୍କର ଜନ୍ମ ବିବରଣ ନାମ ଦଶମୋଽଧ୍ୟାୟଃ ।

# ଏକାଦଶ ଅଧ୍ୟାୟ

## ଋଷି ବର୍ଗ ଓ କୁବେରଙ୍କ ଜନ୍ମ ବିବରଣ

ଶୁଣନ୍ତୁ ବିବୁଧ ଜନେ ମନ କର୍ଣ୍ଣ ଦେଇ
ଏଥୁଅନ୍ତେ ଯାହା ହେଲ କହୁଅଛୁ ମୁହିଁ ।
ଭୃଗୁଙ୍କ ଔରସେ ଜାତ ଦୁଇଟି କୁମର
ଚ୍ୟବନ ଓ ଶୁକ୍ର ଜଣି ଜ୍ଞାନୀଙ୍କ ପ୍ରବର ।
ଋତୁଙ୍କ ଔରସେ ଆଉ କ୍ରିୟାର ଉଦରେ
ବାଳଖିଲ୍ୟ ଋଷିଗଣ ଜନ୍ମିଲେ ଧରାରେ ।
ଅଙ୍ଗିରଙ୍କ ତିନପୁତ୍ର ବିଦିତ ଭୁବନ
ଉତଥ୍ୟ ସମ୍ବର ବୃହସ୍ପତି ତିନଜଣ ।
ବଶିଷ୍ଠ ଔରସେ ଯେଉଁ ପୁତ୍ର ଜନମିଲ
ଶକ୍ତିବୋଲି ତାହାଙ୍କର ନାମ ଖ୍ୟାତହେଲ ।
ସେହି ଶକ୍ତିଙ୍କର ପୁତ୍ର ହେଲେ ପରାଶର
ଅତ୍ୟନ୍ତ ପଣ୍ଡିତ ସେହୁ ଜ୍ଞାନୀଙ୍କ ପ୍ରବର ।
ପରାଶରଙ୍କର ପୁତ୍ର କୃଷ୍ଣ ଦ୍ୱୈପାୟନ
ସକଳ ଶାସ୍ତ୍ରରେ ସେହୁ ଅଟନ୍ତି ନିପୁଣ ।
ତାହାଙ୍କ ସମାନ କେହି ନାହିଁ ଜଗତର
ମହାମୁନି ବ୍ୟାସଦେବ ନାମ ତାହାଙ୍କର ।
ଯେହୁ ବ୍ୟାସ ସେହି କୃଷ୍ଣ ଦ୍ୱୈପାୟନ ଜାଣ
ସେହି ବ୍ୟାସଙ୍କ ଔରସୁ ଜନମିଲେ ପୁଣ ।
ତାହାଙ୍କର ନାମ ଶୁକଦେବ ଯେ ଅଟଇ
ଜ୍ଞାନୀ ଗଣ ମାନଙ୍କର ତତ୍ତ୍ୱ ଜାଣସେହି ।
ପୌଲସ୍ତ୍ୟ ମହର୍ଷିଙ୍କର ହେଲେ ଯେଉଁ ସୁତ
ବିଶ୍ରବା ନାମ ତାଙ୍କର ଶୁଣ ତପୋବନ୍ତ ।
ସେ ବିଶ୍ରବା ଔରସରୁ ଜନ୍ମିଲେ କୁବେର
ତାଙ୍କ ସମ ଧନଶାଳୀ ନାହିଁ କେ ତ୍ରିପୁର ।
ଶୌନକ ଏମାନ ଶୁଣି ବିସ୍ମୟ ଅନ୍ତରେ
ଶୁଣି ପଚାରିଲେ ସୌତି ମୁନିଙ୍କୁ ପାଦରେ ।
ଆହେ ପୌରାଣିକ ସୌତି ଶୁଣ ମୋ ବଚନ
ତବ କଥା ଶୁଣି ଜାଗେ ସନ୍ଦେହ ମୋ ମନ ।
ପୂର୍ବରୁ କହିଲେ କୁବେରଙ୍କ ଜନ୍ମଗିର
ପରମ-ଈଶ୍ୱର ପିତା ଅଟନ୍ତି ତାଙ୍କର ।
ପୁଣି ବର୍ତ୍ତମାନ କହୁଛନ୍ତି ଆନଗାଥା
ବିଶ୍ରବା ଋଷି ଅଟନ୍ତି ସେ କୁବେର ପିତା ।
ଏହା ଶୁଣି ସୌତି ତାଙ୍କୁ ଦେଲେକ ଉତ୍ତର
ଯାହା କହିଅଛି ତାହା ଅଟେ ସତ୍ୟଗିର ।
କୁବେର ଜନମିଥିଲେ ଶିବଙ୍କ ବୀର୍ଯ୍ୟରେ
ବ୍ରହ୍ମଶାପେ ନାଶହେଲ ସେ ଦେହ ମହୀରେ
ତାପରେ ବିଶ୍ରବା ଅଂଶେ ହେଲେ ଯେଉତ୍ପନ୍ନ ।
ଶୁଣିଣ ଜ୍ଞାନୀଏ କର ସନ୍ଦେହ ମୋଚନ ।
ଗୁରୁ ଦକ୍ଷିଣା ନିମନ୍ତେ ପୂର୍ବେ ଯେଉଁକାଳେ
ଉତଥ୍ୟ ମହର୍ଷିଗଲେ କୁବେରଙ୍କ ଆଗେ ।
ତାହାଙ୍କ ପାଶରେ ମିଳି ମାଗିଲେକ ସେହି
କୋଟି ସ୍ୱର୍ଣ୍ଣ ମୁଦ୍ରା ଆଜ ମୋ ଲୋଡ଼ା ଅଟଇ ।
ତାହାଙ୍କ ବଚନ ଶୁଣି ବୋଇଲେ କୁବେର
ନିଷ୍ଠୁର ଦେବଇଁ ଧନ ଅପେକ୍ଷା ଯେ କର ।
କିନ୍ତୁ ଏହା କହି ମନେ ଭାବିଲେ କୁବେର
ଏକାବେଳେ ଏତେଧନ ଦେବି କି ପ୍ରକାର ।
ଏତେ କହି କୁବେର ଯେ ବିରସ ମନରେ
ବସିଲେ ମୁଖ ଶୁଖାଇ କରଦେଇ ଶିରେ ।
ତାହାଙ୍କ ମୁଖର ଭାବ କରି ନିରୀକ୍ଷଣ
ଅଭିଶାପ ଦେଲେ ତାଙ୍କୁ ଅତ୍ୟନ୍ତ କ୍ରୋଧେଣ ।
ସେହି ଶାପେ ପୁନଃ ଜନ୍ମ ହୋଇଲେ କୁବେର
କହିଲି ନିଗୂଢ଼ ତତ୍ତ୍ୱ ଶୁଣ ତପିବର ।
କୁବେର ବ୍ୟତୀତ ଆଉ ତିନୋଟି ନନ୍ଦନ
ବିଶ୍ରବାଙ୍କ ଔରସୁ ହେଲେ ଉତ୍ପନ୍ନ ।
ରାବଣ ନାମରେ ଏକ ଜଣ ହେଲ ଖ୍ୟାତ
ତାହାପରେ କୁମ୍ଭକର୍ଣ୍ଣ ଜାଣନ୍ତି ସମସ୍ତ ।

ବିଭୀଷଣ ତାହ ପରେ ଜନମ ହୋଇଲେ
ଧାର୍ମିକଙ୍କ ଚୂଡ଼ାମଣି ହରିଙ୍କୁ ଭଜିଲେ ।
ଏ ତିନି ଗୋଟି କୁମର ଋଷି ଔରସରେ
ଜନମ ଲଭିଲେ ଏକ ଦାନବୀ ଗର୍ଭରେ ।
ତାହାର ନାମ ନିକଷା ଅପୂର୍ବ ସୁନ୍ଦରୀ
ଦେବୀ କି ଗାନ୍ଧର୍ବୀ କେହି ନୁହେଁ ସମସରି ।
ଆଉର ଋଚିକଙ୍କର ହେଲେ ଯେ କୁମର
ଶାଣ୍ଡିଲ୍ୟ ତାହାଙ୍କ ନାମ ବିଦିତ ସଂସାର ।
ପୁଲହ ମୁନିଙ୍କ ପୁତ୍ର ବାତ୍ସ୍ୟ ମହାମୁନି
ଏହି ତିନି ଜଗତରେ ଅଟନ୍ତି ସେ ଜ୍ଞାନୀ ।
ଗୌତମ ଔରସେ ହେଲେ ସାବର୍ଣ୍ଣି ଉତ୍ପନ୍ନ
କାଶ୍ୟପଠାରୁ କଶ୍ୟପଙ୍କର ବିଦ୍ୟମାନ ।
ଭରଦ୍ୱାଜ ହେଲେ ବୃହସ୍ପତିଙ୍କ ତନୟ
ଏହି ପାଞ୍ଚ ହେଲେ ପାଞ୍ଚ ଗୋତ୍ରର ନିର୍ଣ୍ଣୟ
ଏହା ଭିନ୍ନ ଅନ୍ୟ ଅନ୍ୟ ବହୁ ବିପ୍ରଗଣ
ବ୍ରହ୍ମାଙ୍କ ବଦନ ମଧ୍ୟୁ ଜନ୍ମିଲେ ତକ୍ଷଣ ।
ଏହିମାନଙ୍କର ଗାଥା ଶୁଣ ମନଦେଇ
ନାନା ଦେଶ ବିଦେଶରେ ଭ୍ରମୁଥାନ୍ତି ସେହି ।
ଜାତି ଆଉ ଗୋତ୍ର ବୋଲି ନାହିଁ କିଛିମାତ୍ର
ଭିନ୍ନ ୨ ଗୋତ୍ରରେ ଅଟନ୍ତି ଅବସ୍ଥିତ ।
କ୍ରମେ କ୍ରମେ ଏହାଙ୍କର ବଂଶ ଯେ ବଢ଼ିଲା
କାହାର କେବଳ ଗୋତ୍ର ବାରି ନ ହୋଇଲା
ଗୋତ୍ର ବିବର୍ଜିତ ହୋଇ ସକଳ ସ୍ଥାନରେ
ପରିଚିତ ହେଲେ ସେହିମାନେ ନିଜନ୍ତରେ ।
ଆହେ ସନନ୍ଦକ ଚନ୍ଦ୍ର ସୂର୍ଯ୍ୟ ମନୁଙ୍କର
ତେଜରୁ ଯେଉଁ କ୍ଷତ୍ରିୟ ହୋଇଲେ ବାହାର ।
ତାଙ୍କର ପ୍ରବର ଏହି ତିନିହେଁ ଅଟନ୍ତି
ବ୍ରହ୍ମାଙ୍କ ବାହା ମୂଳରୁ ଯାତ ହେଲେ କ୍ଷତ୍ରୀ ।
ସେମାନେ ପ୍ରବର ଶୂନ୍ୟ ହୋଇଣ ରହିଲେ
ବିଧାତାଙ୍କର ଉରୁରୁ ବିପ୍ର ଜନମିଲେ ।
ପାଦ ଦେଶରୁ ଜନମ ହେଲେ ଶୂଦ୍ର ଜାତି
ଏହିପରି ଚତୁର୍ବର୍ଣ୍ଣଙ୍କର ଅବସ୍ଥିତି ।
ପରସ୍ପର ତାହାଙ୍କର ମିଶ୍ରଣ ହେବାରେ
ବର୍ଣ୍ଣ ଶଙ୍କର ଜାତି ଯେ ହେଲେ ତା ଅନ୍ତରେ
ଗୋପାଳ ବଣିକ ବୈଶ୍ୟ ଗୁଞ୍ଜଅ କମାର
କୁବେର ତାମ୍ବୁଳ କୃଷିକାର ସ୍ୱର୍ଣ୍ଣକାର ।

ଏହି ପରକାରେ ଯେତେଗୋଟି ଜାତିଅଛି
ଉତ୍ତମ ଶୂଦ୍ର ମଧ୍ୟରେ ଗଣନା ହୁଅନ୍ତି ।
ବ୍ରାହ୍ମଣ କ୍ଷତ୍ରିୟ ଆଉ ବୈଶ୍ୟ ସ୍ୱଇଜାତି
ଜଳସ୍ପର୍ଶ ଜାତିମଧ୍ୟେ ଗଣନା ଅଟନ୍ତି ।
ଶୂଦ୍ରନାରୀ ଗର୍ଭେ ବୈଶ୍ୟ ପୁରୁଷର ରେତ
ପଡ଼ିବାରୁ ଯେଉଁ ପୁତ୍ର ହୋଇଲେକ ଜାତ ।
କରଣ ନାମରେ ଖ୍ୟାତ ହେଲେ ସେ ସଂସାରେ
ବ୍ରାହ୍ମଣଙ୍କ ବୀର୍ଯ୍ୟ ପଡ଼ି ବୈଶ୍ୟ ସ୍ତ୍ରୀ ଗର୍ଭରେ ।
ଅମ୍ବଷ୍ଠ ନାମରେ ପୁତ୍ର ହୋଇଲେକ ଜାତ
ଏ ଅନ୍ତରେ ଆନ ଗାଥା ଶୁଣ ତପୋବନ୍ତ ।
ଥରେ ବିଶ୍ୱକର୍ମା ଯାଇଁ ବିଜନ ସ୍ଥଳରେ
ଶୂଦ୍ର ଯୁବତୀକୁ ରତି ମାଗିଲେ ସ୍ନେହରେ ।
ତାହାଶୁଣି ସନମତ କରିଲେ ସେ ବାଳା
ସେହିଠାରେ ଦୁହିଁଙ୍କର ସଙ୍ଗମ ହୋଇଲା ।
ତାହାଗର୍ଭେ ବିଶ୍ୱକର୍ମା ହେଲେ ବୀର୍ଯ୍ୟଧାର
ତା ଠାରୁଁ ଜନମ ହେଲେ ନଅଟି କୁମର ।
ସକଳେ ଶିଳ୍ପ ବିଦ୍ୟାରେ ହୋଇଲେ ନିପୁଣ
ଶୁଣ କହୁଅଛି ତାହାଙ୍କର ବିବରଣ ।
ଶଙ୍ଖାରୀ ମାଳି ଆଉର କମ୍ମାର ଯେ ତନ୍ତୀ
କୁମ୍ଭାର କଂସାରି ମିସ୍ତ୍ରି ନଅଟି ସନ୍ତତି ।
ଶିଳ୍ପକାରଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲାଇଲେ
ସମସ୍ତ ଲୋକଙ୍କଠାରୁ ସମ୍ମାନ ପାଇଲେ ।
ସୂତ୍ରଧାର ଚିତ୍ରକାର ସ୍ୱର୍ଣ୍ଣକାର ତିନି
ପତିତ ହୋଇଲେ ବିପ୍ର ଶାପରେ ଅବନୀ ।
ଆଉର ବର୍ଣ୍ଣ ଶଙ୍କର ଯେତେ ବୋଲାଇଲେ
କେହିହେଲେ ସେମାନଙ୍କୁ ଆଦର ନ କଲେ ।
ଏହାଶୁଣି ସନନ୍ଦକ ଆନନ୍ଦିତ ହୋଇ
ସଉତି ମୁନିଙ୍କୁ ପୃଚ୍ଛା କଲେ ସେ ଠାବଇଁ ।
ଆହେ ପୌରାଣିକ ସୌତି କୁହନ୍ତୁ ଆମ୍ଭରେ
ବିଶ୍ୱକର୍ମା ମହାମତି ବିଦିତ ସଂସାରେ
ସେ କମ୍ପା କଲେ ଏପରି ଘୋର ଅନ୍ୟାୟର
ବୀର୍ଯ୍ୟଦାନ କଲେ ପୁଣି ଶୂଦ୍ରାଣୀ ଜଠର ।
କି ହେତୁ ପତିତ ହେଲେ ତିନୋଟି ନନ୍ଦନ
ଏହା ବିସ୍ତାରି କାରଣ କହ ତପୋଧନ ।
ସନ୍ଦେହ ଜନ୍ମିଛି ହୃଦେ ଆହେ ବାଗ୍ମିବର
ବିସ୍ତାରି କାରଣ କୁହ ଆମ୍ଭ ଅଗ୍ରତର ।

ପୁରାଣେ ବହୁ ଅଭିଜ୍ଞ ଅଟ ମହାମତ
ସନ୍ଦେହ ବିନାଶ କର କହିଣ ଭାରତ ।
ପୁରାଣର ସାର ଗାଥା ଏ ବ୍ରହ୍ମବୈବର୍ତ୍ତ
ଅଧମ କ୍ଷେତ୍ର ମୋହନ ବିରଚିଲା ଗୀତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଋଷିବର୍ଗ ଓ କୁବେରଙ୍କର ଜନ୍ମ ବିବରଣେ ନାମ ଏକାଦଶୋଽଧ୍ୟାୟଃ ।

# ଦ୍ୱାଦଶ ଅଧ୍ୟାୟ

## ଘୃତାଚୀ ଉପାଖ୍ୟାନ

ସୌନକ ଆଦି ମୁନିଙ୍କ ବିନୟ ବଚନ
ଶୁଣି ଆନନ୍ଦିତ ହୋଇ ସୌତି ତପୋଧନ ।
ବୋଇଲେ ହେ ମୁନିଗଣେ ପରିପ୍ରଶ୍ନ ଯାହା
ଅତ୍ୟନ୍ତ ଗହନ କଥା ଅଟଇ ସେ ତାହା ।
ଘୃତାଚୀ ସ୍ୱରଗ ବେଶ୍ୟା ବିହିତ ଭୁବନେ
କାମବଶେ ରମ୍ୟବେଶ ହୋଇ ଏକଦିନେ ।
ପୁଷ୍କର ତୀର୍ଥକୁ ସେହୁ କରିଲା ଗମନ
ବିଶ୍ୱକର୍ମା ପଥ ମଧ୍ୟେ କରି ଦରଶନ ।
ସୂର୍ଯ୍ୟଲୋକକୁ ଯେ ବିଶ୍ୱକର୍ମା ଆସିଥିଲେ
ଯୁବତୀକୁ ନିରୀକ୍ଷଣ କରିଣ ଦେଖିଲେ ।
ପ୍ରଫୁଲ୍ଲ ବଦନେ ଯାଇ ଯୁବତୀର ପାଶ
ଆପଣା ମନର ଭାବ କରିଲେ ପ୍ରକାଶ ।
କାମବଶେ ବିଶ୍ୱକର୍ମା ହତଚିତ୍ତ ହୋଇ
ଶୃଙ୍ଗାର ପ୍ରାର୍ଥନା କଲେ ତା ପାଶରେ ଯାଇ ।
ମନୋହର ରୂପ ଦେଖି ହୋଇ କାମେ ମତ୍ତ
ବିଶ୍ୱକର୍ମା ଭୁଲିଗଲେ ସ୍ଥାନ କାଳପାତ୍ର ।
ହୀରାମାଳା ଭୂଷଣରେ ସର୍ବାଙ୍ଗ ସୁନ୍ଦର
ସୂକ୍ଷ୍ମ ବସ୍ତ୍ର ଉଡ଼ିଯାଏ ବାତେ ଫରଫର ।
ଷୋଡ଼ଶୀ ବର୍ଷୀୟା ଧନୀ ନବୀନା ଯୁବତୀ
ପୂର୍ଣ୍ଣ ଶଶଧର ସମ ବଦନର କାନ୍ତି ।
ଅଧରେ ମଧୁର ହାସ ଅତି ଶୋଭାପାଏ
ପକ୍ୱବିମ୍ବ ସମ ଓଷ୍ଠ ତ୍ରିଭୁବନ ମୋହେ ।
କନକ କୁଣ୍ଡଳ ଶୋହେ ଶ୍ରବଣ ଯୁଗଳେ
କଟାକ୍ଷ ତାହାର ବଙ୍କା ଧନୁ-ସମ ଖେଳେ ।
ରୂପ ଦେଖି ବିଶ୍ୱକର୍ମା ହୋଇଲେ ମୋହିତ
ଘୃତାଚୀ ନିକଟେ ଯାଇ ହେଲେ ଉପଗତ ।
ହସି ୨ ବୋଇଲେକ ଶୁଣରେ ସୁନ୍ଦରୀ
କାମବଶେ ଦେଖ ମୋର ଅଙ୍ଗ ହୁଏ ଥରି ।
ତୁମରି ନିମନ୍ତେ ମୁହିଁ ବୁଲେ ବନେବନେ
ରତି ଭିକ୍ଷା ମାଗି ରହେ ରହିବି ଏ ସ୍ଥାନେ ।
ସାମାନ୍ୟ ବୋଲିଣ ମୋତେ ନ ଭାବ ସୁନ୍ଦରୀ
କାମ ପାଖୁଁ ଅଛି ମୁହିଁ ରତି ଶିକ୍ଷା କରି ।
ଅଗ୍ନିଦେବ ତୋଷ ହୋଇ ମୋହର ଉପରେ
ଦିବ୍ୟବସ୍ତ୍ର ଦେଇଛନ୍ତି ଶୁଣ ନାରୀବରେ ।
ବରୁଣ ଦେଇ ଅଛନ୍ତି ରତନର ମାଳା
ଶିବଙ୍କ ଦୟାରୁ ନାହିଁ ମୋର ମୃତ୍ୟୁ ଜ୍ୱାଳା ।
କୁବେରଙ୍କୁ ପରାଜୟ କରି ବରାନନେ
ଅମୂଲ୍ୟ ରତନ କେତେ ଆଣିଛି ଭବନେ ।
ତୁମରି ନିମନ୍ତେ ସବୁ ରଖିଅଛି ଘରେ
ଏବେ ମୋର କଥା ରକ୍ଷାକର ନାରୀବରେ ।
ଦେଖ ନିକୁଞ୍ଜ କାନନ କେଡ଼େ ଶୋଭାପାଏ
ଚାଲ ଚିତ୍ତ ରଙ୍ଗେ ବିହରିବା ଆମ୍ଭେ ଦୁହେଁ ।
ପରମ ରୂପସୀ ତୁମେ ଅବଳା ମଧ୍ୟରେ
ମୁହିଁ ପଣ୍ଡିତ ଅଟଇ ଯେ କାମ ଶାସ୍ତ୍ରରେ ।
ଏହା ଶୁଣି ବାରନାରୀ କହଇ ବଚନ
ମା କହିଲେ ସତ୍ୟ ଅଟେ ଆହେ ମତିମାନ ।
କିନ୍ତୁ ଏକ କଥା କହେ କରନ୍ତୁ ଶ୍ରବଣ
ବାରାଙ୍ଗନା ମୁହିଁ ସତ୍ୟ ଆହେ ମହାତ୍ମନ ।
ତଥାପି ନିୟମ ଅଛି ଆମ୍ଭମାନଙ୍କର
ଯେ ଦିନ ଯାହା ପାଶକୁ ହୋଇଛୁ ବାହାର ।
ସେଦିନ ସେ ଜନ ହୁଏ ଆମ୍ଭର ଯେ ପତି
ଅତଏବ କ୍ଷମାକର ଆହେ ମହାମତି ।
କାମ ନିକଟକୁ ମୁହିଁ କରୁଛି ଗମନ
ଆଜି ମୋର ପତି ସେହୁ ଆହେ ମହାତ୍ମନ ।
ଆବର କହୁଛି ତୁମେ ଶୁଣ ମୋର ଗୀର
ଶିକ୍ଷା ଗୁରୁ କାମଦେବ ଅଟନ୍ତି ତୁମର ।

ବର୍ତ୍ତମାନ ଗୁରୁପତ୍ନୀ ତୁମ୍ଭର ଯେ ମୁହିଁ
ଗୁରୁଦାରା ମାତୃବତ ଶୁଣ ମନଦେଇ ।
ଯେଉଁ ଜନ ଗୁରୁପତ୍ନୀ କରଇ ହରଣ
ତାହର ସମାନ ପାପୀ ନାହିଁ ବ୍ରହ୍ମାଣ୍ଡର ।
ଦାରୁଣେ ନରକେ ଅନ୍ତେ ପଡ଼ଇଟି ସେହି
ଅତଏବ ଆଜ ମୋତେ ଛାଡ଼ ଦୟାବହି ।
ବଳତ୍କାରେ ମୋ ସଙ୍ଗତେ କଲେ ରତିରସ
ଲଭିବଟି ଗୁରୁଦାରା ପରଦାରା ଦୋଷ ।
ବିଦ୍ୟାଦାତା ମନ୍ତ୍ରଦାତା ଅଟନ୍ତି ଯେ ଗୁରୁ
ଜନ୍ମକଲ ପିତା ମଧ୍ୟ ନ୍ୟୂନ ତାଙ୍କଠାରୁ ।
ଆବର ଗୁରୁପତ୍ନୀ ଯେ ମାତାହୁଁ ଅଧିକ
ବିସ୍ତରି କରନ୍ତୁ ଏହା ଖଟାଇ ଅନେକ ।
ଜଗତରେ ପୂଜ୍ୟ ପିତାମାତା ଦୁହେଁ ଯାକ
ପିତାଠାରୁ ମାତ ବହୁ ଗୁଣରେ ଅଧିକ ।
ସେହିପରି ଗୁରୁଠାରୁ ଗୁରୁଙ୍କ ଲଲନା
ଅଧିକ ଶତେ ଗୁଣରେ ପାଇବାକୁ ପୂଜା ।
ବେଦ ଆଦିରେ ଏ ସବୁ ପ୍ରମାଣ ଅଛଇ
ଆହେ ବିଶ୍ୱକର୍ମା ତୁମ୍ଭେ ଶୁଣ ମନଦେଇ ।
ଧାର୍ମିକ ମହର୍ଷିମାନେ ଧରମ ଶାସ୍ତ୍ରରେ
ଲେଖି ଯାଇଛନ୍ତି ଯାହା ଶୁଣ ଏବେ ବାରେ ।
ମାତା ସହ ପୁତ୍ର ଯେବେ ଶୃଙ୍ଗାର କରଇ
ସେ ଦୋଷରୁ ଯେଉଁ ମହାପାପ ଉପୁଜଇ ।
ତହିଁରୁ ଲକ୍ଷେ ଗୁଣରେ ଅଧିକଟି ଜାଣ
ପାପ ହୁଏ ଗୁରୁପତ୍ନୀ କରେ ଯେ ହରଣ ।
ମାତା ବୋଲି ଥରେ ଯେଉଁ ନାରୀକୁ ଡାକିବ
ଅଥବା ମାତା ବୋଲିଣ ଅନ୍ତରେ ଭାବିବ ।
ଜନ୍ମ କରିବା ମାତାର ସମ ସେ ଅଟଇ
ସାକ୍ଷାତରେ ଧର୍ମଦେବ ସାକ୍ଷୀ ଥାଏ ରହି ।
ଜ୍ଞାନରେ ବା ଅଜ୍ଞାନରେ ସେ ରମଣୀ ସହ
ଶୃଙ୍ଗାର କରିଲେ ନର୍କ ଭୋଗିବ ନିଶ୍ଚୟ ।
ପୁଣି କାଳସୂତ୍ର ପାଶେ ବନ୍ଧା ହୋଇକରି
କୁତ୍ସିତ କର୍ମରେ ପଡ଼ି ହେଉଥାଏ ଘାରି ।
ଚନ୍ଦ୍ର ସୂର୍ଯ୍ୟଥିବାଯାଏ ପୁଣ ୨ ଯାଇ
ମହାଘୋର କୁମ୍ଭୀନର୍କେ ଦୁଃଖ ଭୋଗୁଥାଇ ।
ମାତୃହରଣରେ ତହିଁ ଲକ୍ଷଗୁଣ ଦୋଷ
ହୁଏ ବୋଲି ଧର୍ମ ଶାସ୍ତ୍ର କରିଛି ପ୍ରକାଶ ।

ତାହାର ଶତସହସ୍ର ଗୁଣରେଟି ଜାଣ
ଦୋଷ ହୁଏ ଗୁରୁପତ୍ନୀ କରିଲେ ହରଣ ।
ବ୍ରହ୍ମାଙ୍କର ଯେତେ ଯୁଗ ଅଟଇ ବୟସ
ତେତେଯୁଗ ନରକରେ କରେ ସେ ନିବାସ ।
ଧର୍ମଶାସ୍ତ୍ରେ ବା ବେଦରେ ଏ ମହାପାପର
ପ୍ରାୟଶ୍ଚିତ ଲେଖା ହୋଇନାହିଁ କେଉଁଠାର
କୁମ୍ଭକାର ଚକ ତୀକ୍ଷ୍ଣଧାର ଖଡ୍ଗ ସମ
ସେ କୁମ୍ଭୀ ନରକ ଅଟେ ଅତ୍ୟନ୍ତ ବିଷମ ।
ଆବର ତହିଁରେ ମଳମୂତ୍ର ମାଂସ ମେଦ
ପୂର୍ଣ୍ଣ ହୋଇବାରୁ ଜାତ ହୁଅଇ ଦୁର୍ଗନ୍ଧ ।
ଶୂଳକୁଲ୍ୟ ତୀକ୍ଷ୍ଣମୁଖ କୃମିଗଣ ପୂରି
ବିଚରଣ କରୁଥାନ୍ତି ଜଳ ଜନ୍ତୁ ପରି ।
ଫୁଟୁଥାଏ ସବୁବେଳେ ଟକ ମକ ହୋଇ
ଅନଳ ଜ୍ୱାଳା ସମ ସେ ତପତ ଲାଗଇ ।
ମହାପାପୀ ମାନଙ୍କର ଅଟଇ ସେ ସ୍ଥାନ
ଭୋଗ ସେ କରନ୍ତି ତହିଁ ପାପ ଫଳମାନ ।
ଗୁରୁପତ୍ନୀ ସଙ୍ଗମରେ ଶିଷ୍ୟଙ୍କର ଯେତେ
ପାତକ ହୁଅଇ ଜାଣ ଆହେ ମହାମତେ ।
ସେହିପରି ଗୁରୁପତ୍ନୀ ତାଙ୍କ ଠାରେ ଯେବେ
କାମୁକ ହୁଅଇ ପାପ ଭୋଗ କରେ ତେବେ ।
ଆଶ୍ରିତ ମୁଁ ତୁମ୍ଭ ଗୁରୁ କାମଦେବଙ୍କର
ଙ୍ଖରସା ହୋଇଣ ଯାଉଅଛୁ ତାଙ୍କ ଘର ।
ଏ ସକାଶୁଁ ପରସ୍ପରେ ହେବାର ଆସକ୍ତ
ଆଜ ଆମ୍ଭ ଦୁହିଁଙ୍କର ନୁହଇ ଉଚିତ ।
ଯେବେ ତୁମ୍ଭେ ମୋର ଅଙ୍ଗସଙ୍ଗ ଅଭିଳାଷ
କରିଅଛ ମନେ ତେବେ ନ ହୁଅ ନିରାଶ ।
ଆଉ ଦିନକରେ ବେଶଭୂଷା ହୋଇ ମୁହିଁ
ଆସିବି ନିଶ୍ଚୟ ତବ ମାନସ ରଞ୍ଜାଇ ।
ଏହିପରି ଘୃତାଚୀର ହତାଶ ବଚନ
ଶୁଣି ବିଶ୍ୱକର୍ମା ହୋଇ ଅତି କ୍ରୋଧମନ ।
ବୋଇଲେ ପାମରୀ ଯାହା ମୋହର ବଚନସ୍ତେ
ନ ଶୁଣି ବଞ୍ଚିତ ମୋତେ କଲୁ ଅନ୍ତଶସ୍ତେ ।
ସେ ସକାଶୁଁ ମୋର ଶାପେ ମର୍ତ୍ତ୍ୟପୁରେ ଯାଇ
ରହିବୁ ଶୂଦ୍ରଯୋନିରେ ଜନମ ସେ ପାଇ ।
ଏହିମତ ବିଶ୍ୱକର୍ମା ଶାପ ଦେବା ଶୁଣି
କ୍ରୋଧରେ ତାହାଙ୍କୁ ଶାପ ଦେଲେ ସେ ତରୁଣୀ ।

ବୋଇଲ କାମରେ ତୁମ୍ଭେ ହୋଇଣ ପୀଡ଼ିତ
ଗୁରୁପତ୍ନୀ ହରିବାରେ ବଳାଇଲ ଚିତ୍ତ ।
ଧର୍ମମୟ ବଚନ ଯେ କହିବାରୁ ମୁହିଁ
ମ ଉପରେ ମୋତେ ଶାପ ଦେଲେ କ୍ରୋଧ ବହି
ଏ ଯୋଗୁ ବୋଲୁଛି ଆଜ ସ୍ୱର୍ଗେ ଭ୍ରଷ୍ଟ ହୁଅ
ମର୍ତ୍ତ୍ୟରେ ମାନବ ରୂପେ ରହି ଜନ୍ମ ନିଅ ॥
ଏହିରୂପେ ଶାପ ଦେଇ ଘୃତାଚୀ ସୁନ୍ଦରୀ
ଗଲା କାମଦେବ ପାଶେ ଲୁବ୍ଧ ହୋଇକରି ।
ତାହାଙ୍କ ସଙ୍ଗରେ ରତି ରସରେ ମାତିଲା
ମହାସୁଖେ ବିହାରେ ରାତ୍ରି ବିତାଇଲା ।
ଏ ଅନ୍ତେ ସମସ୍ତ କଥା ତାହାଙ୍କ ଆଗରେ
କହିଲା ଆମୂଳ ଚୂଳ ବସି ସରାଗରେ ।
ଶୁଣିଣ ବିସ୍ମିତ ହୋଇ ଶମ୍ବର ଅରିଶ
କହିଲେ ସେ ସୁନ୍ଦରୀକୁ ପ୍ରବୋଧନା କରି ।
ଶୁଣ ଆଗୋ ଚାରୁହାସୀ ପ୍ରୟାଗ ନଗରେ
ଜନମିବ ତୁମ୍ଭେ ଗୋପେ ମଦନଙ୍କ ଘରେ ।
ପୂର୍ବ ଜନ୍ମକଥା ଥିବ ତୁମ୍ଭର ସ୍ମରଣ
କରିବ ବାଲ୍ୟତ କାଳୁ ତପ ଆଚରଣ ।
ଏହିପରି କେତେ ଦିନେ ଶାପୁ ମୁକ୍ତହୋଇ
ଚଳିବ ସ୍ୱର୍ଗକୁ ତୁମ୍ଭେ ଆରେ ଚନ୍ଦ୍ରମୁହିଁ ।

ଆହେ ସଜନକ ଶ୍ରେଷ୍ଠ ସ୍ୱର୍ଗ ବାର ନାରୀ
ମଦନ ଗୋପାଳ ପତ୍ନୀ ଗର୍ଭେ ଅବତରି ।
ଜାତିସ୍ମର ହୋଇ ବାଲ୍ୟକାଳୁଁ ତପ କଲା
ସଂସାର ବିଷୟ ଭୋଗୁଁ ଦୂରରେ ରହିଲା ।
ନଛୁଇଁ ତିଳେହେଁ ଆନ ପୁରୁଷର କର
ବ୍ରହ୍ମଚର୍ଯ୍ୟ ରକ୍ଷଣରେ ହେଲା ତତପର ।
ବରନ ତାହାର ଅଟେ ତପ୍ତ ସ୍ୱର୍ଣ୍ଣପରି
ଦିଶିଲା ତପସ୍ୟାବଳେ ତୋଷସେ ଆତୁରି ।
ପବିତ୍ର ଜାହ୍ନବୀ ତୀରେ ଦିବ୍ୟ ସମ୍ବତ୍ସର
ହୋଇଲା ଶତେକ ଏହି ପ୍ରକାରେ ଅନ୍ତର ।
ସମୟରେ ବିଶ୍ୱକର୍ମା ତାର ପତି ହେଲେ
ନବଗୋଟି ସୁତ ତାଙ୍କଠାରୁ ଜାତ ହେଲେ ।
ସେତେବେଳେ ଶାପରୁ ସେ ଲଭିଣ ମୁକତି
ପୂର୍ବରୂପ ପାଇ କଲା ସୁରପୁରେ ଗତି ।
ଶୁଣିଲତ ମୁନିଗଣ ଏ ସମସ୍ତ ଗିର
ପଚାର ମନେ ସଂଶୟ ଥିଲେ ହେ ତୁମ୍ଭର ।
ଏହା କହି ସୌତି ମୁନି ହୋଇଲେ ପ୍ରସନ୍ନ
ଧୀରତନେ ବିରଚିଲା ଶ୍ରୀ କ୍ଷେତ୍ର ମୋହନ ।

—୦—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଘୃତାଚୀ ଉପାଖ୍ୟାନେ ନାମ ଦ୍ୱାଦଶୋଽଧ୍ୟାୟ

## ତ୍ରୟୋଦଶ ଅଧ୍ୟାୟ

### ଅଭିଶାପ ପାଇ ଘୃତାଚୀ ଓ ବିଶ୍ୱକର୍ମାଙ୍କର ମର୍ତ୍ତ୍ୟରେ ଉତ୍ପତ୍ତି ଏବଂ ଶିଳ୍ପିକାର ମାନଙ୍କ ଜନ୍ମ ବିବରଣ ।

ଏଥିଅନ୍ତେ ଯାହାହେଲା ଶୁଣ ଦେଇମନ
ସୌତିଙ୍କୁ ପୁଚ୍ଛିଲେ ସଜନକ ତପୋଧନ ।
ବୋଇଲେ ହେ ବ୍ରହ୍ମଦର୍ଶି ତପୀଙ୍କ ଶେଖର
ତୁମ୍ଭର ବାକ୍ୟେ ସନ୍ଦେହ ଲାଗେ ମୋ ମନର ।
ଘୃତାଚୀ ଓ ବିଶ୍ୱକର୍ମା ଶାପତ ପାଇଲେ
କିଏ କେଉଁ ପରକାରେ ମର୍ତ୍ତ୍ୟେ ଜନମିଲେ ।
ପୁଣି ଜନମ ଲଭିଲେ କିପା କେଉଁଠାରେ
ପରିଚୟ ହେଲେ କିଏ ପୁଣି କି ଜାତିରେ ।
କେଉଁ ପରକାରେ ତାଙ୍କ ମିଳନ ହୋଇଲା
କେଉଁପରି ନବ ଗୋଟି ପୁତ୍ର ଜନମିଲା ।

ତାହା ଗୋଟି ଗୋଟି କରି ଆମ୍ଭ ଅଗ୍ରତରେ
ବୁଝାଇ ଦିଅନ୍ତୁ ଆହେ ପୌରାଣିକ ବରେ ।
ଏହା ଶୁଣି ସୌତି ମୁନି ଆନନ୍ଦିତ ହୋଇ
ବୋଇଲେ ସକଳ ତପୀଙ୍କର ମୁଖ ଚାହିଁ ।
ଆହେ ମହାତ୍ମା ମାନଙ୍କର ଶିରୋମଣି
ଯେବେ ଶୁଣିବାକୁ ଆଉ ମନ ବଳିଲାଣି ।
ତାହେଲେ ବିସ୍ତାର ଭାବେ କହୁଅଛି ଶୁଣ
ବିଶ୍ୱକର୍ମା ଘୃତାଚୀର ଶାପକୁ ଶୁଣିଣ ।
ବିଷୟ କ୍ରୋଧରେ ଅତି ଦୁଃଖିତ ସେ ହୋଇ
ବିଧାତାଙ୍କ ସନ୍ନିଧିରେ ପ୍ରବେଶିଲେ ଯାଇ ।

ତାହାଙ୍କ ଚରଣ ତଳେ ଯୋଡ଼ି ବେନି କର
କହିଲେ ସମସ୍ତ ଶୋକେ ହୋଇଣ ଅସ୍ଥିର ।
ଏହାଶୁଣି ବ୍ରହ୍ମା କ୍ଷଣେ ନୀରବ ହୋଇଲେ
ତାପରେ କୋମଳ ଭାବେ ତାଙ୍କୁ ବୁଝାଇଲେ
ବୋଇଲେ ହେ ବତ୍ସ ତୁମ୍ଭେ ବ୍ରାହ୍ମଣ ବଂଶରେ
ଜନମ ହୋଇବ ଯାଇ ମର୍ତ୍ତ୍ୟ ମଣ୍ଡଳରେ ।
କିଛି ଦିନ ଗତ ପରେ ଘୃତାଚୀ ସହିତ
ଏକତ୍ରେ କରିଲେ ବାସ ହୋଇବ ମୁକତ ।
ଏମନ୍ତ ଆଦେଶ ଯହୁଁ ଦେଲେ ବେଦବର
ବିଶ୍ୱକର୍ମା ମର୍ତ୍ତ୍ୟେ ହେଲା ବ୍ରାହ୍ମଣ କୁମର ।
ଜାତିସ୍ମର ହୋଇବାରୁ ପୂର୍ବ କଥାମାନ
ସର୍ବଦା ମନ ପାଡ଼ିଲା ମନରେ ଆସନ ।
ନିପୁଣ ହୋଇଲେ ଶିଳ୍ପ ବିଦ୍ୟାରେ ସମସ୍ତ
ଶିଳ୍ପକାର ଦ୍ୱିଜରୂପେ ହୋଇଲେ ସେ ଖ୍ୟାତ
ରାଜ ପ୍ରାସାଦରେ କିବା ଧନୀ ବ୍ୟକ୍ତି ଘରେ
ନାନାବିଧ ଶିଳ୍ପକାର୍ଯ୍ୟ କଲେ ନିରନ୍ତରେ ।
ଆଉର ଯାହାର ଯେଉଁ ଚିହ୍ନ ଲୋଡ଼ାହେଲା
ଏହାଙ୍କ ହାତରେ ତାହା ସମ୍ପୂର୍ଣ୍ଣ ହୋଇଲା ।
ତାହାଙ୍କ ଶିଳ୍ପ କୌଶଳ ଦେଖି ନୟନରେ
ପ୍ରଶଂସା ନକରି ରହି ନ ପାରନ୍ତି ଧୀରେ ।
ଏହିପରି ବହୁକାଳ ଗତ ହେଲା ପରେ
ଦିନେ ସେ ମିଳିଲେ ଯାଇ ପ୍ରୟାଗ ତୀର୍ଥରେ ।
ତହିଁ ରାଜାଙ୍କର ଶିଳ୍ପ କାର୍ଯ୍ୟମାନ ସାରି
ସ୍ନାନାର୍ଥେ ମିଳିଲେ ଗଙ୍ଗା କୂଳେ ଯାଇକରି ।
ଦେଖିଲେ ସେଠାରେ ଏକ ଅପୂର୍ବ କାମିନୀ
ସୁଖ ଭୋଗ ଛାଡ଼ି ହୋଇଅଛି ତପସ୍ୱିନୀ ।
ଜାତିସ୍ମର ହୋଇ ସେତ ଜନ୍ମ ପାଇଥିଲେ
ଦେଖିବା ମାତ୍ରେ ଘୃତାଚୀ ବୋଲି ସେ ଜାଣିଲେ
ଘୃତାଚୀତ ହୋଇଥିଲା ମଧ୍ୟ ଜାତିସ୍ମର
ଚିହ୍ନିଲା ବିଶ୍ୱକର୍ମାଙ୍କୁ ନହୋଇ ପାତଷୋର ।
ଏହିରୂପେ ଦୁଇଜଣେ ଚିହ୍ନାଚିହ୍ନି ହେଲେ
ଯୁବତୀ ରୂପରେ ଦ୍ୱିଜ ଜ୍ଞାନ ହରାଇଲେ ।
କାମତ ତାହାଙ୍କୁ ଦେଇଥିଲା ଅତି ପୀଡ଼ା
ଲଜ୍ଜାଛାଡ଼ି ତପସ୍ୱୀଙ୍କ ଆଗେ ହେଲା ଛିଡ଼ା ।
ମଧୁର କୋମଳ କରି ବଚନ କହିଲେ
କାହିଁକି ତପସ୍ୟା କରୁଅଛ ତୁ ବୋଇଲେ ।
ଘୃତାଚୀ ଅପ୍ସରା ତୁମ୍ଭେ ଅଟ ଗୋ ସୁନ୍ଦରୀ
ଚିହ୍ନିପାରି ତୋତେ ପୂର୍ବକଥାମାନ ସ୍ମରି ।
ମୁଁ ଅଟଇ ବିଶ୍ୱକର୍ମା ବ୍ରାହ୍ମଣ କୁଳରେ
ଜନମ ଲଭିଛି ପ୍ରିୟେ ତୋହର ଶାପରେ ।
ଗତ କଥା ସୁମରଣା କରି ଅହୋ ବାଳା
ମୋଠାରେ ପୀରତି କରି ନ କରିବୁ ହେଳା ।
ତୋତେ ଯେଉଁ ଶାପ ମୁହିଁ ଦେଇଅଛି ପୂର୍ବେ
ଉଦ୍ଧାର ଲଭିବା ପାଇଁ ତହିଁରୁଟି ଏବେ ।
ଆସିଅଛି ମୋତେ ଅଙ୍ଗ ସଙ୍ଗ ଦାନକରି
ମନୁଷ୍ୟ ଶରୀର ତେଜି ଯାଅ ସ୍ୱର୍ଗପୁରି ।
ତୋ ନିମନ୍ତେ କାମାନଳେ ଦହଇ ମୁଁ ଦହି
ବିହନ ଉଠ ବିଳମ୍ବ ନ କରିରେ ସଖୀ ।
ଏହିରୂପେ ବ୍ରାହ୍ମଣଙ୍କ ବଚନକୁ ଶୁଣି
କହିଲେ ଈଷତ ହସେ ସେ ଗୋପ ତରୁଣୀ ।
ସୁମଧୁର ମିଷ୍ଟମୟ ବଚନ କହିଲା
ଆହେ ଦ୍ୱିଜବର ଶୁଣ ମୋଠାରୁ ବୋଇଲା ।
ମୁହିଁ ମଧ୍ୟ ଜାତିସ୍ମର ହୋଇ ଜନମିଛି
ତୁମେ ଅଟ ବିଶ୍ୱକର୍ମା ମୋତେ ଜଣାଅଛି ।
କିନ୍ତୁ ଯାହା କହୁଅଛ ମନଦେଇ ଶୁଣ
ମୋହଠାରେ କ୍ରୋଧ ଆଉ ନ କରିବ ପୁଣ ।
ତୁମ୍ଭଙ୍କୁ ମୁଁ ଯେଉଁ ଦିନ ବାଟରେ ଦେଖିଲି
ସେଦିନ ମଦନ ଦେବ ପତ୍ନୀ ହୋଇଥିଲି ।
ସେନିମନ୍ତେ ଯେତେ ତୁମେ କହିଲେହେଁ ମୋରେ
ଶୃଙ୍ଗାର ପ୍ରଦାନ ନ କରିଲି ସେ ଭୟରେ ।
ଏବେତ ଜାହ୍ନବୀ ଘାଟରେ କରୁଛି ତପସ୍ୟା
କିରୂପେ ରମିବି ତବସଙ୍ଗେ ନିମଗ୍ନା ।
ଭାରତବର୍ଷରେ ଗଙ୍ଗାଜଳ ପୁଣ୍ୟକ୍ଷେତ୍ର
ଏଥେଁ ସ୍ନାନକରି ଜନେ ହୁଅନ୍ତି ପବିତ୍ର ।
ଯେଉଁ ୨ କର୍ମ କରାଯାଏ ଏହିଠାରେ
ତାର ଫଳ ଭୋଗକରେ ଅଶେଷ ଜନ୍ମରେ ।
ଧାର୍ମିକ ପୁରୁଷମାନେ ପୂର୍ବେ ତପଫଳେ
ଜନ୍ମ ହୋଇଥାନ୍ତି ମୋକ୍ଷଲଗି ମହୀତଳେ ।
ପୁଣି ମୋହିତ ହୋଇଣ ଶ୍ରୀକୃଷ୍ଣ ମାୟାରେ
କରୁଥାନ୍ତି ନାନା କର୍ମମାନ ସେଠାବରେ ।
ଯାହାକୁ ସେ ବିଷ୍ଣୁମାୟା ସୁଦୟା କରଇ
ଶ୍ରୀକୃଷ୍ଣଙ୍କଠାରେ ତାର ଭକ୍ତି ଉପୁଜଇ ।

ଅଷ୍ଟରମଧ୍ୟ ବୟସ୍ତ ଆଶକ୍ତ ଯେ ନର
ଜନ୍ମ ଲାଭ କରିଥାନ୍ତି ମର୍ତ୍ତ୍ୟ ମଣ୍ଡଳର ।
ସେମାନେ ଜଗତକର୍ତ୍ତା ଶ୍ରୀକୃଷ୍ଣଙ୍କ ନାମ
ମନ୍ତ୍ର ଧ୍ୟାନ ଆଦି ସବୁ କରି ବନ୍ଦନ ।
ମାୟାମୋହ ଜାଲେ ପଡ଼ି ବାନ୍ଧେ ହୋଇଥାନ୍ତି
ଶୁଦ୍ଧ ବୁଦ୍ଧି ଭଲମନ୍ଦ କିଛି ନ ଜାଣନ୍ତି ।
ପୂର୍ବ ଜ୍ଞାନ ଥିବାରୁଟି ହୃଦରେ ମୋହର
ଜାଣୁଛି ସକଳ କଥା ଆହେ ଦ୍ୱିଜବର ।
ଘୃତାଚୀ ନାମରେ ପୂର୍ବେ ସ୍ୱର୍ଗେ ବାରନାରୀ
ହୋଇଥିଲି ଏବେ ବ୍ରହ୍ମ ଶାପ ପାଇକରି ।
ଗୋପାଳ ବାଳିକା ହୋଇ ଜନମ ଲଭିଛି
ଏଥିରେ କହିବା ପାଇଁ କଥା ନାହିଁ କିଛି ।
ଏ ଘୋର ଜଞ୍ଜାଳୁ ମୁକ୍ତ ପାଇବା ଆଶାରେ
ତପସ୍ୟା କରୁଛି ବସି ପୁଣ୍ୟ ନଦୀତଟରେ ।
ଜାଣୁଛି କୃଷ୍ଣ ସଙ୍ଗରେ କଲେ ରତିରସ
ହୋଇବ ନିଶ୍ଚୟ ମୋର ଶାପ ତାପ ନାଶ ।
କିନ୍ତୁ ଏ ପବିତ୍ର ଭୂମି ନୁହେଁ କ୍ରୀଡ଼ାସ୍ଥାନ
ଶୁଣ ଆହେ ଶିଳ୍ପକାର ବାରେ ଦେଇ ମନ ।
ଯେତେ ପାପ ଅନ୍ୟଠାରେ କରିଥାଏ ନର
ଏ ନଦୀରେ ସ୍ନାନ କଲେ ହୋଇଯାଏ ଦୂର ।
ଏ ସ୍ଥାନରେ ପାପ ଯେବେ କରଇଟି କେହି
ଲକ୍ଷେଗୁଣ ହୋଇଥାଇ ସେ ପାପ ବଢ଼ଇ ।
ନାରାୟଣ ତୀର୍ଥେ ତପ ନ କରଇ ଯେବେ
ଏ ମହାପାପରୁ ମୁକ୍ତ ନ ମିଳଇ ତେବେ ।
ଏଣୁ ବୋଲୁଅଛି ମୁହିଁ ଅନ୍ୟସ୍ଥାନେ ଯାଇ
କରିବା ଅନଙ୍ଗ କ୍ରୀଡ଼ା ମନକୁ ରଞ୍ଜାଇ ।
ସେ ଘୃତାଚୀ ମୁଖୁଁ ଏହା ହୁଅନ୍ତେ ବାହାର
ସେହିକ୍ଷଣି ବିଶ୍ୱକର୍ମା ଜ୍ଞାନଙ୍କର ବର ।
ତାହାଙ୍କୁ ସଙ୍ଗରେ ନେଇ ମଳୟ ବନରେ
ପ୍ରବେଶ ହୋଇଲେ ଯାଇ ଆନନ୍ଦ ମନରେ ।
ବିଶାଳ ଚନ୍ଦନବୃକ୍ଷ ଗଣରେ ସେ ବନ
ପୂର୍ଣ୍ଣ ହେବୁ ଶୋଭେ ଯେହ୍ନେ ନନ୍ଦନ କାନନ
ସୁବାସ କୁସୁମ ବାସ ବହି ଗନ୍ଧବହ
ପୁଲକିତ କରୁଅଛି ଦେବାଙ୍କର ଦେହ ।
ଏମନ୍ତ ସୁରମ୍ୟ ବନ ଦେଖି ବେନିଜନ
ଉଭୟ ତେଜି ଗଲେ ସେହି ନିର୍ଜନ କାନନ ।

ସେଠାରେ ସୁନ୍ଦର ପୁଷ୍ପ ତଳପ ଉପରେ
କଥାବାର୍ତ୍ତା ହେଲେ ବସି ଦୁହେଁ ଆନନ୍ଦରେ ।
ସେ ଅନ୍ତରେ କାମସୁଖ ସୋହାଗରେ ମାତି
ନ ଜାଣିଲେ କେତେବେଳେ ସେ ଦିବସରାତି ।
ଦେଖୁ ଦେଖୁ ପୂର୍ଣ୍ଣ ହେଲା ଦ୍ୱାଦଶ ବରଷ
ଭାବିଲେ ସେ କ୍ଷଣେ ଅବା ହୋଇନାହିଁ ଶେଷ ।
ପୁଣି ବ୍ରାହ୍ମଣ ସ୍ୱରୂପୀ ବିଶ୍ୱକର୍ମାଙ୍କର
ସଙ୍ଗମରେ ଗର୍ଭବତୀ ହେଲା ନାରୀବର ।
ଯଥାକାଳେ ପ୍ରସବ ଯେ କରିଲେ ସୁନ୍ଦରୀ
ନଅଗୋଟି ପୁତ୍ର ହୋଇ ଅଛନ୍ତି ତାହାରି ।
ପୁତ୍ରମାନଙ୍କର ଜାତ ସଂସ୍କାର ବିଧାନ
ସେହିଠାରେ ବିଶ୍ୱକର୍ମା କଲେ ସମାପନ ।
ଲାଳନ ପାଳନ କରି ଘୃତାଚୀ ସୁନ୍ଦରୀ
ବଢ଼ାଇଲେ ଅତିଯତ୍ନେ କାଖେ କୋଳେ ଧରି ।
ସମୟରେ ସମସ୍ତଙ୍କୁ ଖଡ଼ି ଛୁଆଁଇଲେ
ନାନାବିଧ ଶାସ୍ତ୍ରରେ ଜ୍ଞାନ ସକଳେ ପାଇଲେ ।
ଅନନ୍ତର ନିଜ ପିତା ଶିଳ୍ପ ବିଦ୍ୟା ଗୁରୁ
ଶିକ୍ଷା କଲେ ସବୁ ବିଦ୍ୟାମାନ ତାଙ୍କଠାରୁ ।
ପ୍ରାକ୍ତନ ସିଦ୍ଧି ବଳରେ ସର୍ବେ ବଳୀୟାନ
ବିଚକ୍ଷଣ ହୋଇଲେ ସେ ଶୁଣ ତପୋଧନ ।
ମାଳାକାର କର୍ମକାର କଂସେଇ ଶଙ୍ଖାର
କୁବିନ୍ଦକ କୁମ୍ଭକାର ପୁଣି ସୂତ୍ରଧାର ।
ସ୍ୱର୍ଣ୍ଣକାର ଚିତ୍ରକାର ଏ ନବ ପୁତ୍ରଙ୍କୁ
ଦେଖି ପିତା ମାତା ତୋଷ ହୋଇଲେ ତାହାଙ୍କୁ
ଆପଣାଇଚ୍ଛା ମୁତାବକ ବରଦାନ କଲେ
ଦେଶରେ ତାହାଙ୍କୁ ନେଇ ରଖାଇଣ ଦେଲେ
ଶାପରୁ ମୁକତ ପାଇ ନିଜ ନିଜ ଘରେ
ମାନବ ଶରୀର ତେଜି ଗଲେ ସେ ଅନ୍ତରେ ।
ଯେ ଯାହାର ବ୍ୟବସାୟ କଲେ ଇଚ୍ଛାମତେ
ଆଗନ୍ତୁକ ଶିଳ୍ପେ ଯୋଗ୍ୟ ହୋଇଥିଲେ ପୂର୍ବେ
ସ୍ୱର୍ଣ୍ଣକାର ସୁବର୍ଣ୍ଣରେ ଅଳଙ୍କାର ମାନ
ନାନା ପ୍ରକାରେ ସେହୁ କରିଲେ ଗମନ ।
ତେଣୁ ସବୁ ଲୋକଙ୍କର ପ୍ରିୟ ସେହୁ ହେଲା
ଦିନେ ଏକ ବ୍ରାହ୍ମଣର ସୁନା ଚୋରିକଲା ।
ତାହା ଜାଣି କୋପଭରେ ବୋଇଲା ବ୍ରାହ୍ମଣ
ଆହେ ସ୍ୱର୍ଣ୍ଣକାର ଚୋରିକଲୁ ଆମ୍ଭଧନ ।

ଏଣୁ ତୁ ପତିତ ହୋଇ ରହ ଏ ସଂସାରେ
ଆଜଠାରୁ କେହି ନ ମିଶିବେ ତୋ ସଙ୍ଗରେ
ଏହିରୂପେ ଶାପ ଦେଇ ଗଲେ ଦ୍ୱିଜବର
ଗରିବ ହୋଇଲା ତହୁଁ ସେ ସୁବର୍ଣ୍ଣକାର ।
ଶୁଣ ଆହେ ସଜ୍ଜନକ ମୁନି ମହାଭାଗ
ବ୍ରାହ୍ମଣ ମିଳିତ ହୋଇ କରୁଥିଲେ ଯାଗ ।
ଯାଇଥିଲା କାଷ୍ଠ ହାଣିବାକୁ ସୂତ୍ରଧର
ଆସିଲା ବେଳକୁ ହେଲା ବହୁତ ଉଛୁର ।
ସେ ନିମନ୍ତେ ବିପ୍ରଗଣ ମହାକ୍ରୋଧ କଲେ
ପତିତ ହୁଅ ତୁ ବୋଲି ଶାପ ତାକୁ ଦେଲେ ।
ସ୍ୱର୍ଣ୍ଣକାର ପରି ମଧ୍ୟ ପତିତ ସେ ହେଲା
ବ୍ରାହ୍ମଣଙ୍କଠାରେ ଯହୁଁ ଦ୍ରୋହ ଆଚରିଲା ।
ଚିତ୍ରକାର ନିଜକର୍ମ ବିପରୀତ କରି
ବ୍ରାହ୍ମଣ ଶାପେ ପତିତ ହୋଇଲା ସେପରି ।
କ୍ରୋଧରେ ବ୍ରାହ୍ମଣମାନେ ଏ ତିନିଜଣଙ୍କୁ
ପତିତ କରାଇ ଦେଲେ ଦେଇଣ ଶାପକୁ ।
ବଣିକ ସୁବର୍ଣ୍ଣକାର ସଙ୍ଗତରେ ମିଶି
ବ୍ୟବହାର କରୁଥାଏ ରତ୍ନ ଦବା ନିଶି ।
ସେ ସକାଶୁଁ ତାହାଠାରେ ସ୍ୱର୍ଣ୍ଣ ସ୍ତେୟ ଦୋଷ
ଥିବାରୁ ବ୍ରାହ୍ମଣ ଶାପ ଦେଲେ ବହି ରୋଷ ।
ସେ ମଧ୍ୟ ପତିତ ହୋଇ ରହିଲା ମହୀରେ
ଶୁଣ କହୁଅଛି ଯାହା ହେଲା ଏ ଅନ୍ତରେ ।
ବେଶ୍ୟା ହୋଇଥିଲା ଏକ ଶୂଦ୍ରାଣୀ ଯୁବତୀ
ଚିତ୍ରକାର ଯାଇଁ ବଳେ କଲା ତାକୁ ରତି ।
ତାହାଠାରୁ ଯେଉଁ ସୁତ ଜନମ ହୋଇଲା
ଅଟ୍ଟାଳିକାକାର ହୋଇ ଜାଣ ସେ ରହିଲା ।
ଜାରଜାତ ହେବାରୁ ଟି ସେ ଅଟେ ପତିତ
ତା ବୀର୍ଯ୍ୟରେ କୁମ୍ଭକାର ସ୍ତ୍ରୀଠାରେ ଜାତ
ହେଲା ଯେଉଁ ପୁତ୍ର ସେହୁ ବୋଲାଏ କୋଟକ
ତା ଚରିତ ଶୁଣ ଆହେ ଦ୍ୱିଜ ଶୌନକ ।
ଜଗତ ମଧ୍ୟରେ ଗୃହକାର ସେ ହୋଇଲା
ଗୃହ ନିର୍ମାଣ କରିବା ବୃତ୍ତି ଆଶ୍ରେକଲା ।
କୋଟକ ଯୁବତୀ ପାଶେ କୁମ୍ଭକାର ଯାଇ
ପୀରତରେ ରତିକଲା ନାନାଭାବେ କହି ।
ତାଙ୍କଠାରୁ ତୈଳକାର ହୋଇଲା ସମ୍ଭୂତ
କୁଟିଳ ପ୍ରକୃତି ହେତୁ ହେଲା ସେ ପତିତ ।

ରାଜକୁଳ ଯୁବତୀଙ୍କ ଅନ୍ୟ ରାଜସୁତ
ବଳାତ୍କାରେ ଧରି ନେଇ କରନ୍ତେ ସୁରତ ।
ଶବର ଜନମ ହେଲା ତାହାର ଗର୍ଭରୁ
ପତିତ ହୋଇଲା ପୁଣି ଜାରଜ ଦୋଷରୁ ।
ସେ ଶବର ତୈଳକାର ସୁତା ପାଶେ ଗଲା
ରୂପବତୀ ଦେଖି ତାକୁ ରତି ଆରମ୍ଭିଲା ।
ତାହାର ଉଦରୁ ଜାତ ହେଲା ଯେ ତନୟ
ପାଇଲା ଜଗତେ ଲେଟ ନାମେ ପରିଚୟ ।
ସବୁବେଳେ ଚୌରବୃତ୍ତି କଲା ସେ ଚଣ୍ଡାଳ
ଏଥିଅନ୍ତରରେ କଥା ଶୁଣ ତପଶୀଳ ।
ଶବର କନ୍ୟାକୁ ଆଣି ଲେଟ ଭୋଗକଲା
ତାଠାରୁ ଛଅଟି ସୁତ ଜାତ କରାଇଲା ।
ତାହାଙ୍କର ନାମମାନ ଶୁଣ ମନଦେଇ
ମଣ୍ଟା ମଲ୍ଲ ମାତାର ଯେ ଭଡ଼ କୋଲ କନ୍ଧ ।
କଳନ୍ଦର ଏହିପରି ଛଅ ନାମେ ଖ୍ୟାତ
ହୋଇଲେ ଯେ ସେ ସମସ୍ତ ଅଟନ୍ତି ପତିତ ।
କାମୁକୀ ବ୍ରାହ୍ମଣୀଠାରୁ ଶୂଦ୍ର ବୀର୍ଯ୍ୟ ଜନ୍ମ
ହୋଇଲା ଯେବଣ ସୁତ ପତିତ ସେ ଜାଣ ।
ଚଣ୍ଡାଳ ସେ ବୋଲାଇଲା ଜଗତ ମଧ୍ୟରେ
ଅଶୁଚି ଅସ୍ପୃଶ୍ୟ ହୋଇ ରହିଲା ଲୋକରେ ।
ଚଣ୍ଡାଳ ଯୁବତୀ ସଙ୍ଗ କରନ୍ତେ ଶବର
ତାହାର ଗର୍ଭରୁ ଜାତ ହେଲା ଚର୍ମକାର ।
ଚଣ୍ଡାଳ ଯୁବକ ଚର୍ମକାର କନ୍ୟା ମିଶି
ସୁରତ ରସରେ ଶେଷ କଲେ ଦିବାନିଶି ।
ତାଙ୍କଠାରୁ ଜାତହେଲା ଯେବଣ କୁମର
ମାଂସଚ୍ଛେଦୀ ଅଟଇ ଟି ସେହି ମନେକର ।
ଶବର ସେ ମାଂସଚ୍ଛେଦୀ କନ୍ୟାଟିଏ ନେଲା
ଭାର୍ଯ୍ୟାକରି ତାହାଠାରୁ ପୁତ୍ର ଜାତ କଲା ।
କୋଞ୍ଚ ଗୋରେଖା ନାମରେ ସେ ସୁତ ବିଖ୍ୟାତ
ହେଲା ମହୀମଣ୍ଡଳରେ ଆହେ ମୁନିବ୍ରାତ ।
ଗୋରେଖ ଯୁବତୀ ଗୋଟି କୈବର୍ତ୍ତ ହରିଲା
କଣ୍ଡାର ନାମକ ପୁତ୍ର ତାହାଠାରୁ ହେଲା ।
ଚଣ୍ଡାଳ କନ୍ୟାକୁ ଲେଟ କରନ୍ତେ ରମଣ
ତା ଗର୍ଭେ ଜନମ ହେଲେ ଦୁଇଟି ନନ୍ଦନ ।
ସେ ଦୁଇ ତନୟେ ବୋଲାଇଲେ ହାଡ଼ି ଡୋମ
ଦୁଷ୍ଟ ନଷ୍ଟ ପଣରେ କେ ନୁହେଁ ତାଙ୍କ ସମ ।

ହାଡ଼ିର ଯୁବତୀ ଯେବେ ଚଣ୍ଡାଳ ପୁରୁଷ
ସୁବର୍ଣ୍ଣ ରଙ୍ଗରସେ କଲାଇ ମାନସ ।
ଲମରେ ସେ ସ୍ତ୍ରିଣଠାରୁ ପାଞ୍ଚପୁତ୍ର ହେଲେ
ଦୁଷ୍ଟାଚରଣ କରି ବନ ମଧ୍ୟରେ ରହିଲେ ।
ଗଙ୍ଗାନଦୀତୀରରେ ଦିନେ ଶବର କନ୍ୟକା
କାହାକୁ ନ ନେଇ ସଙ୍ଗେ ବୁଲୁଥିଲା ଏକା ।
ତଇବେ ସେଠାରେ ଭେଟ ସ୍ମରବଶ ହୋଇଲା
ବଳେ ଧରିଆଣି ତାକୁ ଉପଭୋଗ କଲା ।
ତାହାଠାରୁ ଯେଉଁ ସୁତ ହୋଇଲା ଉତ୍ପନ୍ନ
ଗଙ୍ଗାପୁତ୍ର ବୋଲି ତାର ନାମ ହେଲା ଜାଣ ।
ବେଣଧାରୀ କନ୍ୟାଠାରେ ଗଙ୍ଗାପୁତ୍ର ଏକ
ପୁତ୍ର ଜାତକଲା ଆହେ ମୁନିଙ୍କ ତିଳକ ।
ଶୁଣ୍ଡୀ ବୋଲକର ନାମ ସେ ପୁତ୍ର ପାଇଲା
ଶୁଣ ମନଦେଇ ଏଥୁ ଅନ୍ତେ ଯାହାହେଲା ।
ଆବର କନ୍ୟକାଠାରେ ବୈଶ୍ୟ ବୀର୍ଯ୍ୟ ଜାତ
ହେବାର ତନୟ ଶୁଣ୍ଡି ନାମେ ହେଲା ଖ୍ୟାତ
ଏହାପରେ ଶୁଣ୍ଡି କନ୍ୟାଠାରୁ ଯେ ଜନ୍ମିଲା
ପୌଣ୍ଡ୍ରକ ବୋଲିଣ ସେହୁ ନାମକୁ ପାଇଲା ।
କ୍ଷତ୍ରୀୟ ରମଣ କଲା କରଣ ଯୁବତୀ
ତାହାଠାରୁ ରାଜପୁତ୍ରେ ହେଲେ ଉତପତ୍ତି ।
ରାଜପୁତ୍ର ତନୟାର ଚାରୁରୂପ ଦେଖି
କରଣ ଗ୍ରହଣ କଲା ହୋଇ ମହାସୁଖୀ ।
ତାହାଙ୍କର ସମ୍ମିଶ୍ରଣେ ଯେଉଁ ପୁତ୍ର ହେଲା
ଆଗରୀ ବୋଲିଣ ନାମ ତାହାର ହୋଇଲା ।
କୈବର୍ତ୍ତ ନାମରେ ଯେଉଁ ଜାତିଟି ଅଛଇ
କ୍ଷତ୍ରୀବୀର୍ଯ୍ୟ ବୈଶ୍ୟସ୍ତ୍ରିଣଠାରୁ ହେଲାସେହି ।
କଳିଯୁଗେ ଶବରଙ୍କ ସଂସର୍ଗ ହେତୁରେ
ଧୀବର ପତିତ ହେଲା ଜାଣ ଜଗତରେ ।
ଶବର ରମଣୀ ପୁଣି ଧୀବର ପୀଡ଼ିତ
କରନ୍ତେ ତାଠାରୁ ହେଲା ରଜକ ଉତ୍ପତ୍ତି ।
ଶୁଣ ଆହେ ଶଉନକ ମୁନିଙ୍କ ପ୍ରବର
ରଜକୀ ସଙ୍ଗେ ରମଣ କରିଲା ତୀବର ।
ତାହାର ଗୋଟିଏ ପୁତ୍ର ଜନମ ହୋଇଲା
କୋହାଲ ବୋଲି ତାହାର ନାମ ଯେ ହୋଇଲା
ଯୁବକ ନାପିତ ସଙ୍ଗେ ଗୋପିକା ସୁନ୍ଦରୀ
କ୍ରୀଡ଼ା କଲା ନିଜ କୁଳଧର୍ମକୁ ପାଶୋରି ।

କାଳେ ଏକ ସୁତ ତାର ଗର୍ଭୁ ହେଲା ଜାତ
ସର୍ବସ୍ୱୀ ନାମରେ ନାମ ହେଲା ତାର ଖ୍ୟାତ ।
କ୍ଷତ୍ରୀୟ ସର୍ବସ୍ୱୀ ନାରୀରୂପେ ମୁଗ୍ଧ ହୋଇ
ଉତ୍ତମ ସନ୍ତାନ ଏକ ଜନ୍ମ କଲା ତହିଁ ।
ସେ ପୁତ୍ର ବଳିଷ୍ଠ ପୁଣି ହିଂସକ ହୋଇଲା
ଜୀବ ବଧ କରିବାରୁ ବ୍ୟାଧ ବୋଲାଇଲା ।
ଶୁଣ୍ଡି କନ୍ୟାକୁ ତୀବର ଉପଭୋଗ କରି
ସାତୋଟି ନନ୍ଦନ ଜାତ କଲା ସେହୁନାରୀ ।
ହାଡ଼ି ମାନଙ୍କ ସଙ୍ଗରେ ହୋଇଣ ସେ ମିତ୍ର
ଦୌରକଲେ କଳିଯୁଗେ ଜାଣ ଦିବାରାତ୍ର ।
ତେଣୁ ସେ ଦସ୍ୟୁ ନାମରେ ହୋଇଲା ବିଖ୍ୟାତ
ନଥିବେ ସଂସାରେ ତାଙ୍କଠାରୁ କେ କୁତ୍ସିତ ।
ଏଥୁ ଅନ୍ତେ ଆନଗାଥା ଶୁଣ ମନଦେଇ
ହେଲା ଯେ ବିଚିତ୍ର ଲୀଳା ତାହା କହିବଇଁ ।
ଏକ ବ୍ରାହ୍ମଣ ଯୁବତୀ ଥିଲା ରୁକ୍ମମତୀ
କରୁଥିଲା ଜଳପାଇଁ ସେହୁ ମନ୍ଦଗତି ।
ପ୍ରଥମ ଦିବସ ମାତ୍ର ସେହି ଦିନ ତାର
ନଥିଲେ ତାସଙ୍ଗେ ଜଣେମାତ୍ର ଆପଣାର ।
ଦଇବେ ସେ ଦିନ ଜଣେ ତାପସ କୁମର
ମୋହିତ ହୋଇଣ ଦେଖି ତାରୂପ ସୁନ୍ଦର ।
ବହୁ ଅନୁନୟ କଲା ସମ୍ମୁଖକୁ ଯାଇ
ତା କଥା ଶୁଣିଣ ସେ ଯୁବତୀ କଲା ନାହିଁ ।
ବଳେଧରି ଉପଭୋଗ କଲା ଋଷିସୁତ
ସେ ରମଣୀସାଥେ ସାଥେ ହେଲା ଗର୍ଭଗତ ।
ସେହିଠାରେ ପୁତ୍ର ଏକ ଉତ୍ପନ୍ନ ହୋଇଲା
କୁଦେର ତାହାର ନାମ ଜଗତେ ବ୍ୟାପିଲା ।
ମାତ୍ର ସଂସର୍ଗ ଦୋଷରୁ ଅଧମ ଶ୍ରେଣୀରେ
ଗଣାମାୟୁ ହେଲା ସେହିପୁତ୍ର ନିରନ୍ତରେ ।
ବୈଶ୍ୟ କାମିନୀର ଋତୁ ପ୍ରଥମ ଦିବସେ
ବୀର୍ଯ୍ୟଦାନକଲା ଯାଇ କ୍ଷତ୍ରୀୟ ତା ପାଶେ ।
ତାଠାରୁ ଜନମ ହେଲା ଯେବଣ କୁମର
ଅତି ବଳବାନ ଦସ୍ୟୁ ନାମ ଅଟେ ତାର ।
କ୍ଷତ୍ରିୟ ମାନଙ୍କ କଥା ସେ ଅମାନ୍ୟ କଲା
ନାନା ଉତପାତ ତନ୍ତ୍ରିତେ ଘଟାଇଲା ।
ସେ ହେବ ଯା ଜାତି ନାଗଲତୀ ଯେ ଅଟଇ
ଶୁଣ ଆହେ ମୁନିଗଣ ମନକର୍ଣ୍ଣ ଦେଇ ।

କ୍ଷତ୍ରିୟ ପୁରୁଷ ବଳେ ଯେବେ ଶୂଦ୍ରନାରୀ
ସମ୍ଭୋଗ କରନ୍ତେ ଋତୁକାଳ ନ ବିଚାରି ।
ମ୍ଳେଚ୍ଛ ଜାତିରେ ତା ସୁତ ଗଣନାଟି ଜାଣ
କେବଳ ଋତୁ ଦୋଷରୁ ଏମନ୍ତ ଘଟଣ ।
ମହା ବଳବନ୍ତ ଦୁଷ୍ଟ ଦୁର୍ଦ୍ଧର୍ଷ ଯେ ହେଲେ
ନିର୍ଦ୍ଦୟ ଭାବରେ ଜୀବେ ହିଂସା ଆଚରିଲେ ।
କେବେ ତ ତାଙ୍କର କର୍ତ୍ତବ୍ୟବୋଧ ନ ଥିଲ
ଶୌର୍ଯ୍ୟ ବୀର ଧର୍ମ ହୀନ ଅତ୍ୟନ୍ତ ଯେ ସେହି ।
ଯୁଦ୍ଧରେ ଦୁର୍ଜ୍ଜୟ ସବୁଠାରେ ସେହିମାନେ
ବୀର ଶୂର ନାହିଁ କେହି ତାହାଙ୍କ ସମାନେ ।
ମ୍ଳେଚ୍ଛ କଲ କୁବିନ୍ଦର କନ୍ୟା ସହବାସ
ତାଙ୍କଠାରୁ ଜୋଲଜାତି ହୋଇଲ ପ୍ରକାଶ ।
କୁବିନ୍ଦ କନ୍ୟକା ଜୋଲ ଦୁହିଙ୍କ ରତିରେ
ଶରାକ ଜାତି ବିଖ୍ୟାତ ହେଲ ଜଗତରେ ।
ଏହି ଅନୁରୂପେ ବର୍ଣ୍ଣସଙ୍କର ଦୋହନ୍ତୁ
ବହୁତ ଜାତି ହୋଇଲେ ପରସ୍ପର ଠାରୁ ।
ତାହାଙ୍କର ନାମ ସଂଖ୍ୟା କେ ପାରିବ କହି
ଆହେ ମୁନିଗଣ କିଛି କହିଲଇଁ ମୁହିଁ ।
ବ୍ରାହ୍ମଣ ରମଣୀଠାରେ ଅଶ୍ୱିନୀକୁମାର
ରେତ ଦାନକରି ଜାତ କଲେ ଯେ କୁମାର ।
ବୈଦ୍ୟ ବୋଲିକରି ଲୋକେ ବୋଲନ୍ତି ତାହାକୁ
ସେ ବୈଦ୍ୟ ସମ୍ଭୋଗକରି ଶୂଦ୍ର କାମିନୀକୁ ।
ତାଠାରୁ ବହୁତ ପୁତ୍ର ଜାତ କରାଇଲେ
ସେମାନେ ସକଳସ୍ଥାନେ ଚିକିତ୍ସକ ହେଲେ ।
ମନ୍ତ୍ର ଔଷଧି ଶାସ୍ତ୍ର ଜ୍ଞାନରେ ନିପୁଣ
ଏକରୁ ଆରେକ ବଳି ଅତ୍ୟନ୍ତ ସେ ପୁଣ ।
ସେହି ଚିକିତ୍ସକଙ୍କର ବୀର୍ଯ୍ୟ ସଂଯୋଗରେ
ଜନମିଲେ ଯେତେ ସୁତ ଶୂଦ୍ର ସ୍ତ୍ରୀଙ୍କଠାରେ ।
ବ୍ୟାଳଗ୍ରାହୀ ବୋଲି ତାଙ୍କୁ ଜାଣ ମୁନିଗଣ
ତାଙ୍କଠାରେ ଥାଏ ବିଷ ଚିକିତ୍ସକ ଗୁଣ ।
ସାପୁଆ ଜାତିଟି ସେହି ସାପ ଧରିବାରେ
କୁଶଳ ଅତ୍ୟନ୍ତ ସବୁକାଳେ ସବୁଠାରେ ।
ସଉତି ମୁନିଙ୍କ ମୁଖୁଁ ଏମନ୍ତ ବଚନ
ଶୁଣି ତାଙ୍କୁ ଶଉନକ ପଚାରିଲେ ପୁଣ ।
ବୋଇଲେ ହେ ବ୍ରହ୍ମଜ୍ଞାନୀ ଋଷିଗଣ ବର
କିରୂପେ ବ୍ରାହ୍ମଣୀଠାରେ ଅଶ୍ୱିନୀକୁମାର ।
କେଉଁବା କାରଣେ ଥିବା ଧୈର୍ଯ୍ୟ ହାନି କଲେ
ଶୁଣିବାକୁ ମୋର ମନ ହେଉଅଛି ଭଲେ ।
ଆମୂଳ କାରଣ କହ ସମସ୍ତ ଚରିତ
ତାହା ଶୁଣି କହି ଆରମ୍ଭିଲେ ସୂତସୁତ ।
ବୋଇଲେ ହେ ଶଉନକ ପଚାରିଲେ ଯାହା
ମନଦେଇ କଥା ଶୁଣ କହୁଅଛି ତାହା ।
ଦିନେ ଏକ ବ୍ରାହ୍ମଣ ସ୍ତ୍ରୀ ତୀର୍ଥଯାତ୍ରା ପାଇଁ
ଉଦ୍ୟାନ ମାର୍ଗରେ ଯାଉଥିଲ ଏକା ହୋଇ ।
ରମ୍ଭା ତିଲୋତ୍ତମା ଆଦି ଯେତେ ଅପସରା
ସୁନ୍ଦରୀ ପଣରେ କେହି ନୋହିବେ ତା ସରି ।
ସେ ସମୟେ ସୂର୍ଯ୍ୟସୁତ ଅଶ୍ୱିନୀକୁମାର
ଆପଣା କାର୍ଯ୍ୟରେ ଯାଉଥିଲେ ସେ ମାର୍ଗର ।
ସେ ଯୁବକ ବ୍ରାହ୍ମଣୀକି ନୟନେ ଦେଖିଲେ
କାମଶରେ ପୀଡ଼ା ପାଇ ତା ପାଶକୁ ଗଲେ ।
ତାର ଅଙ୍ଗ ସଙ୍ଗ ଇଚ୍ଛା କରିବା କାଳରେ
ସେ ନାହିଁ କରନ୍ତେ ଯାଇ ଧରିଲେ ବଳରେ ।
କୋମଳ କୁସୁମ ତଳେ କରି ଉପଭୋଗ
ସେହିକ୍ଷଣେ ତା ଗର୍ଭରେ ବୀର୍ଯ୍ୟ କଲେ ତ୍ୟାଗ ।
ଫଳେ ସେ ବ୍ରାହ୍ମଣ ସ୍ତ୍ରୀ ଗର୍ଭିଣୀ ହୋଇଲ
ସେହି ମୁହୂର୍ତ୍ତରେ ଏକ ପୁତ୍ର ପ୍ରସବିଲ ।
ତପନ କାଞ୍ଚନ ପରି ଦିଶୁଛି ଯା ତନୁ
ତେଜରେ ନିନ୍ଦା କରଇ ଦିନମଧ୍ୟେ ଭାନୁ ।
ତାହା ଦେଖିଣ ବ୍ରାହ୍ମଣୀ ମହାଲଜ୍ଜା କରି
ଘରକୁ ପଳାଇଗଲ କୁମରକୁ ଧରି ।
ସ୍ୱାମୀପାଶେ ଯାଇକରି ପ୍ରବେଶ ହୋଇଲ
ସମସ୍ତ ଘଟଣା ତାଙ୍କୁ ବୁଝାଇ କହିଲ ।
ବ୍ରାହ୍ମଣ ତା ଶୁଣିକରି କ୍ରୋଧରେ ଜଳିଲେ ।
ପୁତ୍ରକୁଳେ ଭାର୍ଯ୍ୟାକୁ ପରିତ୍ୟାଗ କଲେ ।
ତହିଁ ପାଇଁ ସେ ବ୍ରାହ୍ମଣୀ ଯୋଗ ଆସନରେ
ବସି ନଦୀରୂପେ ବହିଗଲ ସେ କାଳରେ ।
ଗୋଦାବରୀ ନାମ ତାର ହୋଇଲ ବିଖ୍ୟାତ
ସାବଧାନ ହୋଇ ଶୁଣ ଆହେ ମୁନିବ୍ରାତ ।
ପୁତ୍ରକୁ ଜନମକାଳେ ଅଶ୍ୱିନୀକୁମାର
ଶିକ୍ଷା ଦେଇଥିଲେ ବୈଦ୍ୟଶାସ୍ତ୍ର ବାରମ୍ବାର ।
ଏ ବାହାରେ ନାନାଶିଳ୍ପ ମନ୍ତ୍ରତନ୍ତ୍ର ଯେତେ
ଯତନରେ ଶିକ୍ଷା ଦେଇଥିଲେ ସେ ସଙ୍ଗତେ ।

ସେ ଯେଣ ସକଳ ଶାସ୍ତ୍ରେ ଯୋଗ୍ୟ ସେହୁହେଲା
ଶାରଦା ବରପୁ ଭଲରୂପରେ ଜାଣିଲା ।
ବେଦପାଠ ଅଧ୍ୟୟନ ତେଜ ବଳବର
ଜ୍ୟୋତିଷ ଗଣକାପାଠେ ହେଲେ ତତପର ।
ତେଣୁ ସେ ଗଣକ ନାମ ପାଇଁ ମହୀତଳେ
ବେତନ ଆଶାରେ ନାନାସ୍ଥାନରେ ଭ୍ରମିଲେ ।
ଅର୍ଥଲୋଭେ ଦ୍ୱିଜ କେତେକେତ ଶୂଦ୍ରମାନଙ୍କର
ଦାନ ପରିଗ୍ରହ କଲେ ନ କରି ବିଚାର ।
ମୃତ୍ୟୁବେଳେ ଗ୍ରହଣରେ ଉପସ୍ଥିତ ହୋଇ
ଅଗ୍ରଦାନୀ ବୋଲାଇଲେ ଆଣିବାରୁ ସେହି ।
ଆଉ ଏକ କଥା ତୁମେ ଶୁଣ ମନଦେଇ
ଧାତା ଯଜ୍ଞ କରୁଥିଲେ ସୃଷ୍ଟି ଯୋଗେ ତହିଁ ।
ସେ ଯଜ୍ଞ କୁଣ୍ଡରୁ ଏକ ପୁରୁଷ ପ୍ରବର
ବାହାର ହୋଇଲେ ତେଜ ଦିଶେ ମନୋହର ।
ଅତି ଧର୍ମ ପରାୟଣ ତାଙ୍କ ନାମ ସୂତ
ଆମ୍ଭର ପୂର୍ବ ପୁରୁଷ ଆହେ ତପୋବନ୍ତ ।
ତାହାଙ୍କୁ ଦେଖିଣ ଧାତା ଆନନ୍ଦ ହୋଇଲେ
ନିକଟେ ବସାଇ ବହୁ ଶାସ୍ତ୍ର ବୁଝାଇଲେ ।
ସେ ହିନୁ ପୁରାଣ ବକ୍ତା ହୋଇ ସବୁଠାରେ
ଖ୍ୟାତ ଅଟଇଲେ ଏହି ଭାରତ ଭୂମିରେ ।
କିନ୍ତୁ ତାହାର ଔରସେ ବୈଶ୍ୟା ଗର୍ଭେ ଏକ
ସନ୍ତାନ ଜନ୍ମିଲା ତାର ନାମ ବୈତାଳିକ ।
ବେଦ ବିଦ୍ୟାରେ ଯେ ପୂତ ଅଟେ ଧୂରନ୍ଧର
ଦେଖିଣ ରାଜନ ତାକୁ କରିଲେ ଆଦର ।
ପଣ୍ଡିତ ପଣରେ ରାଜ ସଭାରେ ରଖିଲେ
ରାଜାଙ୍କୁ ସେ ବହୁ ଉପଦେଶମାନ ଦେଲେ ।
ଜାତିର ନିର୍ଣ୍ଣୟ ଏହିପରି ଜଗତରେ
କହିଲୁ ବିସ୍ତାରି ତାହା ଶୁଣ ତପୋଧନେ ।
ବର୍ଣ୍ଣଙ୍କର ହୋଇଛନ୍ତି ଅନେକ ପ୍ରକାର
ଜାତି ରହିଛନ୍ତି ଏହି ବ୍ରହ୍ମାଣ୍ଡ ମଧ୍ୟର ।
ସମସ୍ତ ଜାତିରେ ଯେଉଁ ପର ପରସ୍ପରେ
ସମ୍ବନ୍ଧ ରହିଛି ତାହା ଶୁଣନ୍ତୁ ସତ୍ୱରେ ।
ଧାତାଙ୍କ ମୁଖରୁ ବେଦେ ହୋଇଛି କଥିତ
ତାହା କହୁଅଛୁ କର ଶ୍ରବଣେ ସମସ୍ତ ।
ଜନମ କରିବା ବ୍ୟକ୍ତି ଜନକ ବୋଲନ୍ତି
ତାତ ପିତର ବୋଲିଣ ନାମକୁ କହନ୍ତି ।
ଦଶମାସ ଗର୍ଭେ ଧରେ ଯେହୁ ସନ୍ତାନକୁ
ଜନନୀ ବା ମାତା ପ୍ରସୂ କହନ୍ତି ତାହାକୁ ।
ପିତୃ ପିତା ପିତାମହ ନାମରେ ବିଖ୍ୟାତ
ପ୍ରପିତାମହ ବୋଲନ୍ତି ତାହାଙ୍କର ତାତ ।
ଆଉ ଯେତେ ସ୍ୱ ଗୋତ୍ରରେ ଜନ୍ମ ହୋଇଛନ୍ତି
ଜ୍ଞାତି ବୋଲି ସେମାନଙ୍କୁ ପଣ୍ଡିତେ ବୋଲନ୍ତି ।
ତାହାଙ୍କ ଜନକ ମାତାମହ ଯେ ବୋଲନ୍ତି
ତାଙ୍କ ପୂର୍ବ ବଂଶ ଗାଥା ଶୁଣ ଡେରି ଶ୍ରୁତି ।
ପ୍ରମାତା ମହ ଅଟନ୍ତି ମାତ ମହ ପିତା
ବୃଦ୍ଧ ପ୍ରମାତା ମହ ଯେ ତାହାଙ୍କର ପିତା
ପିତାଙ୍କ ଜନନୀ ନାମ ପିତାମହୀ ଜାଣ
ପ୍ରପିତା ମହୀ ତାହାଙ୍କ ଶ୍ୱଶ୍ରୂ ଅଟେ ପୁଣ ।
ବୃଦ୍ଧ ପ୍ରପିତା ମହୀଙ୍କୁ ପ୍ରପିତା ମହୀର
ଶ୍ୱଶ୍ରୂ ବୋଲିକରି ଜାଣ ବୋଲନ୍ତି ସଂସାର ।
ମାତାମହୀ ବୋଲନ୍ତି ଜନନୀଙ୍କ ମାତା
ଜନନୀ ସମାନ ସେହୁ ଅଟନ୍ତି ପୂଜିତା ।
ପ୍ରମାତା ମହଙ୍କ ଧର୍ମ ପତ୍ନୀଙ୍କର ନାମ
ପ୍ରମାତାମହୀ ଅଟନ୍ତି ଜାଣ ନରୋତ୍ତମ ।
ଧର୍ମ ପତ୍ନୀ ତାହାଙ୍କର ଶ୍ୱଶୂର ଅଟନ୍ତି
ବୃଦ୍ଧ ପ୍ରମାତା ମହୀଟି ସେହି ବୋଲନ୍ତି ।
ପିତାମହୀ ଭ୍ରାତାନାମ ପିତୃବ୍ୟ ହୁଅଇ
ଜନନୀଙ୍କ ଅନୁଜଙ୍କୁ ମାତୁଳ ଯେ କହି ।
ପିଉସୀ ବୋଲନ୍ତି ପିତାଙ୍କର ଭଗିନୀକୁ
ମାଉସୀ ବୋଲି କହନ୍ତି ମାତାର ଭଗ୍ନୀକୁ ।
ଆତ୍ମଜ ତନୟ ସୂନୁ ଦାୟାଦ ଯେ ସୁତ ।
ଧନହାରୀ ତନୁଜନ୍ମା ପୁତ୍ର ବୀର୍ଯ୍ୟୁ ଜାତ ।
ନିଜବୀର୍ଯ୍ୟୁ ଜନମିବା ଶିଶୁର ଏ ନାମ
ଅଟଇ ହେ ମୁନିଗଣ ମାନଙ୍କ ଉତ୍ତମ ।
ଆପଣା ଔରସେ ଯେଉଁ ବାଳିକା ଜନ୍ମଇ
ତା ନାମ ଦୁହିତା କନ୍ୟା ଆତ୍ମଜା ଅଟଇ ।
ବଧୂ ବୋଲି ତନୟର ଭାର୍ଯ୍ୟାକୁ କହନ୍ତି
ଜାମାତା ନାମକୁ ବହେ ଦୁହିତାର ପତି ।
ବିବାହିତା ରମଣୀକୁ ଘରପା ତାହାର
ପତି, ପ୍ରିୟ, ଭର୍ତ୍ତା, ନାଥ ବୋଲନ୍ତି ସତ୍ୱର ।
ସ୍ୱାମୀଙ୍କ ସାନ ଭାଇଙ୍କୁ କହନ୍ତି ଦେବର,
ବଡଭାଇ ନାମ ପୁଣି ଅଟେ ଦେହଶୁର ।

ସ୍ୱାମୀଙ୍କ ଭଉଣୀ ନାମ ନଣନ୍ଦ ଅଟଇ
ଶ୍ୱଶୁର ବୋଲି ସ୍ୱାମୀଙ୍କ ଜନକଙ୍କୁ କହି ।
ସ୍ୱାମୀଙ୍କ ଜନନୀ ନାମ ଶାଶୁ ବୋଲିକରି
ବେଦରେ ହୋଇଛି ଏହା ଲେଖା ଉପସ୍ଥିରି ।
ଭାର୍ଯ୍ୟାଜାୟା ପ୍ରିୟା କାନ୍ତା ସ୍ତ୍ରୀ ଯେ ଆଉର
ଦାର ଦାସୀ ଏହି ନାମ ଅଟଇ ପତ୍ନୀର ।
ଭାର୍ଯ୍ୟାର ଭାଇ ସେ ତ ଶ୍ୱଶୁରଙ୍କ ସୁତ
ଶଳାବୋଲି ତାର ନାମ ଜଗତେ ବିଖ୍ୟାତ ।
ତାର ଭଗିନୀକୁ ଶାଳୀ ବୋଲନ୍ତି ସକଳେ
ଅନ୍ୟ ନାମ ମାନ ଶୁଣ ଆହେ ତପଶୀଳେ
ପତ୍ନୀର ମାତାଙ୍କୁ ଶାଶୁ ବୋଲିକରି ଜାଣ
ଶ୍ୱଶୁର ଅଟଇ ପତ୍ନୀ ପିତାଙ୍କର ନାମ ।
ବୋଲାଏ ଆପଣା ଭାଇ ସଗର୍ଭ ସୋଦର
ସଗର୍ଭ ଭଗିନୀ ନାମ ଅଟେ ଭଉଣୀର ।
ତାହାର ଉଦରୁ ଯେଉଁ ପୁତ୍ର ଜନମଇ
ଭଣଜା ବୋଲି ନାମକୁ ସେହିଟି ବହଇ ।
ସେ ପୁତ୍ରର ଭଗିନୀକୁ ଭାଣିଜୀ କହନ୍ତି
ଭ୍ରାତୃଜ ବୋଲାଏ ନିଜ ଭାଇଙ୍କ ସନ୍ତତି
ଭଉଣୀର ପତିକି ଯେ ବୋଲନ୍ତି ଭଣେଇ ।
ଶ୍ୟାଳବୋଲି ମଧ୍ୟ କହିଥାନ୍ତି କେହି କେହି ।
ସାଳୀର ପତି ଅଟଇ ଧରମରେ ଭାଇ
ଦୁହିଙ୍କ ଶ୍ୱଶୁର ଏକ ଥିବାରୁଟି ହୋଇ ।
ଜନମ କରିବା ପିତା ସମାନ ଶ୍ୱଶୁର
ଯେଣୁ ତାଙ୍କ ସୁତା ଅର୍ଦ୍ଧଅଙ୍ଗ ଆପଣାର ।
ଏଥୁଅନ୍ତେ ପଞ୍ଚପିତାଙ୍କର ନାମ ଶୁଣ
ଅନ୍ନଦାନ କରି ରକ୍ଷାକରନ୍ତି ଯେ ପ୍ରାଣ
ଆପଦୁଁ ଭୟରୁ ଯେବା ଉଦ୍ଧାର କରନ୍ତି
ପ୍ରେମଲତା ପତ୍ନୀର ଯେ ଜନକ ଅଟନ୍ତି ।
ଜନ୍ମ ଯେ କରନ୍ତି ବିଦ୍ୟା ପଢ଼ାଅନ୍ତି ଯେହି
ଏ ପାଞ୍ଚ ବୋଲନ୍ତି ପିତା ଶାସ୍ତ୍ରେ ଏହା କହି ।
ଅନ୍ନଦାତା ପତ୍ନୀ ଗୁରୁ ଭାର୍ଯ୍ୟା ଭଗିନୀ
ମାତା କନ୍ୟା ବଧୂ ମାତାଙ୍କର ସପତଣୀ ।
ମାତାମହୀ ପିତାମହୀ ଶାଶୁ ଯେ ମାଉସୀ
ପିତୃବ୍ୟ ମାମୁଁଙ୍କ ଭାର୍ଯ୍ୟା ଆଉର ପିଉସୀ ।
ସାକ୍ଷାତେ ଅଟନ୍ତି ମାତା ଏହି ଚତୁର୍ଦ୍ଦଶ
ଯାଙ୍କଠାରେ ଦ୍ରୋହ କଲେ ଲୋକ ଯାଏ ନାଶ ।

ପୁଅର ତନୟ ଯେବେ ପୌତ୍ର ସେ ବୋଲାଏ
ତା ସୁତ ପ୍ରପୌତ୍ର ନାମେ ଅଭିହିତ ହୁଏ ।
ଦୌହିତ୍ରିକ ବଂଶରେ ଜାତ ହୁଅନ୍ତି ଯେତେ
କୁଳଜ ବୋଲିଣ ତାଙ୍କୁ ବୋଲନ୍ତି ପଣ୍ଡିତେ ।
ଝିଅର ତନୟ ନାମ ଦୌହିତ୍ର ଅଟଇ
ତାର ପୁତ୍ରାଦିଙ୍କୁ ବନ୍ଧୁ ବୋଲିକରି କହି ।
ଭଣଜାର ସୁତ ଆଦି ଯେତେକ ପୁରୁଷ
ବାନ୍ଧବ ଅଟନ୍ତି ସେହି ଆହେ ମୁନିଈଶ ।
ଭ୍ରାତୃପୁତ୍ରଠାରୁ ଯେଉଁ କୁଳ ଉପୁଜଇ
ନାତି ବୋଲି ତାହା ନାମ ହୁଏ କହୁଥାଇ ।
ଗୁରୁଙ୍କର ଥିବେ ଯେବା ଭାଇ ପୁତ୍ରଗଣ
ପରା ବାନ୍ଧବ ବୋଲି ସେମାନଙ୍କୁ ଜାଣ ।
ନିଜପୁତ୍ର ପରି ସେହି ପାଳନାର ଯୋଗ୍ୟ
ଏଥିରେ ସନ୍ଦେହ କିଛି ନାହିଁ ମହାଭାଗ ।
ସେହିପରି ଭଗ୍ନୀସୁତା ଗୁରୁଙ୍କର ସେହି
ମାତାଙ୍କ ସମାନ ମାନ୍ୟ ଅଟନ୍ତି ସେହି ।
ପୁତ୍ରର ଯେ ଗୁରୁ ଭାଇ ସେ ଉତ୍ତମ ବନ୍ଧୁ
ପୋଷିବାକୁ ଯୋଗ୍ୟ ଗୁରୁଦେବଙ୍କ ସମ୍ବନ୍ଧୁ ।
ଭାଇ ସମାନ ଅଟନ୍ତି ପୁତ୍ରର ଶ୍ୱଶୁର
ବୈବାହିକ ବନ୍ଧୁ ବୋଲି ତାଙ୍କୁ ମନେକର ।
ସେହି ସମ୍ବନ୍ଧଟା କନ୍ୟା ଶ୍ୱଶୁରଙ୍କଠାରେ
ପ୍ରବୃତ୍ତ ହୁଅଇ ଜାଣ ମୋର କହିବାରେ ।
ଦୁହିତାର ଗୁରୁ ମଧ୍ୟ ଭ୍ରାତାଙ୍କ ସମାନ
ସ୍ନେହମସ୍ତ ବନ୍ଧୁ ସେହି ମନରେ ଯେ ଘେନ ।
ଶ୍ୱଶୁର ଭାଇଙ୍କ ଗୁରୁ ନିଜ ଗୁରୁ ତୁଲ୍ୟ
ଏ କଥାରେ କିଛି ହେଲେ ନାହିଁ ଜାଣ ଭୁଲ
ଯାହାସଙ୍ଗେ ସାମାନ୍ୟରେ ହୁଏ ବନ୍ଧୁପଣ
ତାହାକୁ ମିତ୍ର ବୋଲନ୍ତି ଜାଣିବାର ଗଣ ।
ମିତ୍ର ହୋଇ ଯେଉଁ ଲୋକ ଅହିତ ଆଚରେ
ଗଣନା ହୁଅଇ ସେହି ଶତ୍ରୁଙ୍କ ମଧ୍ୟରେ ।
ହଇବେ ବାନ୍ଧବ ଯେବେ ଦୁଃଖକୁ ହରଇ
ସମ୍ବନ୍ଧ ତାର ଥିଲେହେଁ ପର ସେ ବୋଲଇ ।
ଆହେ ବିପ୍ରବର ଏହି ଜଗତ ମଧ୍ୟରେ
ସମ୍ବନ୍ଧ ହୋଇଛି ସ୍ଥିର ତିନ ପ୍ରକାରେ ।
ବିଦ୍ୟାରେ ଜନ୍ମରେ ପୁଣି ପ୍ରୀତି କରିବାରେ
ସମ୍ବନ୍ଧ ରଖନ୍ତି ଲୋକ ପରସ୍ପର ଠାରେ ।

ସ୍ଥାପିତ ଯେଉଁ ସମ୍ବନ୍ଧ ତା ନାମ ମିତ୍ରତା
ସବୁରିପକ୍ଷେ ଦୁର୍ଲ୍ଲଭ ଅଟଇ ସେ କଥା ।
ମିତ୍ରଙ୍କ ଜନନୀ ଭାର୍ଯ୍ୟା ମାତାଙ୍କ ସମାନ
ଶାସ୍ତ୍ରେ ନିରୂପିତ ହୋଇଅଛି ସେ ବିଧାନ ।
ଆପଣା ଘରର ସମ ମିତ୍ରଙ୍କର ଘର
ସେହିପରି ମିତ୍ରପିତା ପିତୃତୁଲ୍ୟ ହୋଇ ।
ଦୁଇ ଜଣଙ୍କର ନାମ ସମାନ ହୋଇଲେ
ଚତୁର୍ଥ ସମ୍ବନ୍ଧ ତାକୁ ବୋଲନ୍ତି ଭଲେ ।
ବେଦ ପୁରାଣରେ ଏହା କମଳ ଆସନ
ନିଶ୍ଚୟ କରି ଅଛନ୍ତି ଆହେ ମୁନିଗଣ ।
ସମ୍ଭୋଗ କର୍ତ୍ତାଙ୍କ ଠାରେ ଉପପତି ଯାର
ବନ୍ଧୁ ଏହିପରି ନାମ ହୁଏ ବ୍ୟବହାର ।
ନୂତନ ପ୍ରେୟସୀ ଚିତ୍ତ ହାରିଣୀ ନାମରେ
ବର୍ତ୍ତମାନ ପ୍ରବର୍ତ୍ତଇ ଉପପତ୍ନୀ ଠାରେ ।
ପଟ୍ଟଙ୍କ ସମାନ ଯାର ପ୍ରଭୁତ୍ୱ ଅଟଇ
ଉପପତ୍ନୀ ଗୃହିଣୀର ତୁଲ୍ୟ ଗଣ୍ୟ ହୋଇ ।

ଏହିପରି ରହିଅଛି ନାନାବିଧ ସମ୍ବନ୍ଧ
ମାତ୍ର ଅନେକ ସ୍ଥଳରେ ଅଛି ମତଭେଦ ।
ଯେବଣ ସମ୍ବନ୍ଧ ଯେଉଁ ଦେଶେ ପ୍ରଚଳିତ
ତାର ବ୍ୟତିକ୍ରମ ହେଲେ ଅଟଇ ଗର୍ହିତ ।
ନିନ୍ଦିତ ସମ୍ବନ୍ଧ ଆଦି ବେଦେ ଲେଖାନାହିଁ
ଆପଣା ଇଚ୍ଛାରେ ବିଶ୍ୱାମିତ୍ର ଛନ୍ଦ ଥୋଇ ।
ପୁଣି ଦେଶଭେଦେ ତାହା ସଞ୍ଚାର କରଇ
ଯୋଗ୍ୟଲୋକ ମଧ୍ୟ ଗୁଡ଼ି ନ ପାରନ୍ତି ରହି ।
ତହିଁରୁ ପୂରୁଷଙ୍କର ହୁଏ ଅପକୀର୍ତ୍ତି
ଦୂଷିତ ହୁଅନ୍ତି କୁଳ କାମିନୀଏ ଅତି ।
ତପସ୍ୟା ବଳରେ ଯେଉଁମାନେ ପାପରାଶି
ନାଶ କରିଥାନ୍ତି ତାକୁ ସେ କଳୁଷ ଗ୍ରାସି ।
ନପାରଇ କଦାଚନ ଆହେ ତପୀବର
ଏହା କହି ତୁନି ହେଲେ ସୂତଙ୍କ କୁମର ।
ଅମୃତମୟ ଅଟଇ ଏ ବ୍ରହ୍ମବୈବର୍ତ୍ତ
ଅଧମ କ୍ଷେତ୍ର ମୋହନ ଭାବଲେଖେ ଗୀତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଘୃତାଚୀ ଓ ବିଶ୍ୱକର୍ମାଆଦି
ଉପାଖ୍ୟାନେ ନାମତ୍ରୟୋଦଶୋଽଧ୍ୟାୟ ।

---

# ଚତୁର୍ଦ୍ଦଶ ଅଧ୍ୟାୟ

## ଅଶ୍ୱିନୀ କୁମାରଙ୍କ ଦ୍ୱାରା ବିପ୍ରପତ୍ନୀ ହରଣ ଏବଂ ବୈଦ୍ୟ, ଗଣକ, ଅଗ୍ରଦାନୀ, ସୂତ ଓ ଭଟ୍ଟମାନଙ୍କର ଉତ୍ପତ୍ତି ।

ମୁନିମାନଙ୍କୁ ସମ୍ବୋଧି ସୌତି ବାକ୍ୟବର
ବୋଇଲେକ ଶୁଣ ସର୍ବେ ମୋହର ଉତ୍ତର ।
ଅଶ୍ୱିନୀ କୁମାର ବୀର୍ଯ୍ୟେ ବ୍ରାହ୍ମଣୀ ଜଠରେ
ଜନମିଲେ ବୈଦ୍ୟ ଜାତି ଜାଣିବେ ଅନ୍ତରେ ।
ବୈଦ୍ୟ ଆଉ ଶୂଦ୍ରାଣୀରୁ ହେଲା ବହୁଜନ
ମନ୍ତ୍ରାଦି ଜାଣନ୍ତି ସେହୁ ବିଦିତ ଭୁବନ ।
ତାହାଙ୍କ ଔରସେ ପୁଣ ଶୂଦ୍ରାଣୀ ଜଠରେ
ବହୁସୁତ ଜନମିଲେ ଅବନୀ ମଧ୍ୟରେ ।
ସାପୁଆ କେଳା ନାମେ ବିଖ୍ୟାତ ଭୁବନ
ସର୍ପବିଦ୍ୟା ସର୍ପମନ୍ତ୍ରେ ଅତି ବିଚକ୍ଷଣ ।
ଏତେକ ବଚନ ଶୁଣି ଶୌନକ ସୁମତି
ପୁଚ୍ଛାକଲେ ଶୁଣ ପୁଣି ଆହେ ମହାମତି ।

ବ୍ରାହ୍ମଣୀ ହରିଲେ କିମ୍ପା ଅଶ୍ୱିନୀ କୁମାର
ସେଇ ସବୁ କଥା କୁହ କରିଣ ବିସ୍ତାର ।
ସୌତି ବୋଇଲେକ ଶୁଣ ଶୁଣ ତପୋଧନ
କହିବା ବିସ୍ତାରି ତବ ଅଗ୍ରତେ ସମସ୍ତ ।
ତୀର୍ଥଯାତ୍ରା ଲାଗି ଏକ ବିପ୍ରର ରମଣୀ
ପଦବ୍ରଜେ ଯାଉଥିଲା ଶୁଣ ମହାମୁନି ।
ପଥଶ୍ରମେ କ୍ଲାନ୍ତ ହୋଇ ଦେଖିଲା ନୟନ
ଅଗ୍ରତେ ଦିଶଇ ଏକ ନିର୍ଜନ କାନନ ।
ବିଶ୍ରାମ ନିମନ୍ତେ ସତୀ ପାଞ୍ଚିଣ ମାନସ
ବସିଲା ସେଠାରେ ମନ ହୋଇଣ ସନ୍ତୋଷ ।
ସେଇ ପଥରେ ଅଶ୍ୱିନୀ କୁମାରଙ୍କ ସୁତ
ଯାଉଥିଲା ରମଣୀକୁ ଦେଖିଲା ସେ ନେତ୍ର ।

ନାରୀର ମୋହନ ରୂପ କରିଣ ଦର୍ଶନ
କାମବଶେ ଧରିବାକୁ କରିଲା ଗମନ ।
ତାହାଦେଖି ବିପ୍ରନାରୀ ନିଷେଧ କରିଲା
ନାନା ପ୍ରକାର ଭୟ ମଧ୍ୟ ଦେଖାଇଲା ।
କିନ୍ତୁ ସେ କଥାରେ ନ କରିଣ କର୍ଣ୍ଣପାତ
ମନସାଧ ମେଣ୍ଟାଇଲେ କରି ବଳାତ୍କୃତ ।
ଦଇବ ଲିଖନ କେବା କରିପାରେ ଆନ
ପ୍ରସବ କଲା ବ୍ରାହ୍ମଣୀ ଏକଇ ନନ୍ଦନ ।
ସେ ପୁତ୍ରକୁ କୋଳେ ଧରି ବିପ୍ରବର ନାରୀ
ପତି ଗୃହରେ ପ୍ରବେଶ ହେଲା ଆସିକରି ।
ଶୁଣି ରୋଷେ ସେହି ବିପ୍ର ପ୍ରଜ୍ୱଳିତ ହୋଇ
ବର୍ଜନ କରିଲା ପୁତ୍ର ସହ ନାରୀକୁହିଁ ।
ପତ୍ନୀକୁ ବ୍ରାହ୍ମଣ ଯଦ୍ୟପି ବର୍ଜନ କରିଲା
ସେ ନାୟିକା ଯୋଗକରି ପ୍ରାଣ ବିନାଶିଲା ।
ଗୋଦାବରୀ ନଦୀ ନାମ ଅଟଇ ତାହାର
ଆଉ ଏକ କଥା ଶୁଣ ମନ କରି ସ୍ଥିର ।
ନଦୀରୂପେ ସେ ନାୟିକା ତିଷ୍ଠି ରହିଥିଲା
ପୁତ୍ର ଶୋକ ଅଶ୍ୱିନୀଙ୍କ ସୁତ ପାଉଥିଲା ।
ତଦନନ୍ତରେ ନିରୀକ୍ଷଣ କରି ଯତନରେ
ଯାଇଣ ପୁତ୍ରକୁ ସେହୁ ନେଲେ ଯେ ସଙ୍ଗରେ ।
ତନ୍ତ୍ର ମନ୍ତ୍ର ଚିକିତ୍ସାଦି ବିଦ୍ୟା ଶିଖାଇଲେ
ନାନାରୂପେ ଶିଳ୍ପବିଦ୍ୟା ଅଭ୍ୟାସ କରିଲେ ।
ପିତା ଯତ୍ନେ ପୁତ୍ର କ୍ରମେ ପଣ୍ଡିତ ହୋଇଲା
ତଦନ୍ତରେ ନାମ ତାର ଅମ୍ବଷ୍ଠ ହେଲା ।
ତାହାଙ୍କ ବଂଶରେ ଜନ୍ମି ଆଜ ଯେତେ ଜନ
ବେଦବିଦ୍ୟା କାର୍ଯ୍ୟ ସବୁ କରିଲେ ବର୍ଜ୍ଜନ ।
ଲୋଭବଶେ ସେ ସକଳେ ବେତନ ନେଇଣ
ଜ୍ୟୋତିଃ ଶାସ୍ତ୍ର ଆଲୋଚନା କଲେ ଆନନ୍ଦେଣ
ସେହି ଜ୍ୟୋତିଃଷ ନାମରେ ହେଲେ ପରିଚିତ
ଆବର ଗଣକ ନାମେ ହୋଇଛନ୍ତି ଲିଖିତ ।
କେହି ୨ ଲୋଭବଶେ ଶୂଦ୍ରଦାନ ନେଲେ
ଅଗ୍ରଦାନ ନେଇ ସେହୁ ଆଦ୍ୟକ୍ରିୟା କଲେ
ଅଗ୍ରଦାନୀ ନାମରେ ସେ ହେଲେ ପରିଚିତ
ଆଶ୍ଚର୍ଯ୍ୟ ଘଟଣା ମାନ କରିବା ବ୍ୟକତ ।
ଏହା କହି ସୂତମୁନି ହରଷିତ ହେଲେ
ଧ୍ୟାନସ୍ଥ କ୍ଷେତ୍ରବାସୀ ଚିତ୍ତରେ ଭଣିଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଅଶ୍ୱିନୀ କୁମାରଙ୍କଦ୍ୱାରା ବିପ୍ରପତ୍ନୀ ହରଣଆଦି ବିଧାନେ ନାମୋ ଚତୁର୍ଦ୍ଦଶୋଽଧ୍ୟାୟଃ ।

## ପଞ୍ଚଦଶ ଅଧ୍ୟାୟ

### ଅଶ୍ୱିନୀ କୁମାରଙ୍କ ପ୍ରତି ଶାପ ଓ ପୁନଶ୍ଚ ଶାପ ମୋଚନ

ଶୌନକ କହିଲେ ଶୁଣ ଶୁଣ ଦ୍ୱିଜବର
କି କାର୍ଯ୍ୟ କରିଲେ ଶେଷେ ମହର୍ଷି ପ୍ରବର ।
ନିଜ ଗୃହିଣୀଙ୍କୁ ଋଷି କରିଣ ବର୍ଜ୍ଜନ
ତାହାପର କିବା କାର୍ଯ୍ୟ କରିଲେ ସାଧନ ।
ଅଶ୍ୱିନୀ କୁମାର କାହା ବଂଶେ ଜାତ ହେଲେ
ଆମ୍ଭ ଅଗ୍ରତରେ ତାହା ବଖାଣନ୍ତୁ ଭଲେ ।
ଶୌନକ ବଚନ ଶୁଣି ପୌରାଣିକ ସୂତ
କହିଲେ ଶ୍ରବଣ କର ଏ ଅପୂର୍ବ ତତ୍ତ୍ୱ ।
ରମଣୀର ପତି ସେହି ସୁତପା ଆଖ୍ୟାନ
ଭରଦ୍ୱାଜ ପୁତ୍ର ଅଟେ ଆହେ ତପୋଧନ ।
କ୍ରୋଧବଶେ ରମଣୀକୁ କରିଣ ବର୍ଜ୍ଜନ
ହିମାଳୟକୁ ଚଳିଲେ ତପସ୍ୟା କାରଣ ।
ଏକମନେ ଧ୍ୟାନେ ତିଷ୍ଠି ରହି ଲକ୍ଷେ ବର୍ଷ
କୃଷ୍ଣ ଆରାଧନା କଲେ ମୁନିଙ୍କର ଈଶ ।
ଲକ୍ଷେ ବର୍ଷ ଏହିରୂପେ କରିଣ ଯାପନ
ଶ୍ରୀକୃଷ୍ଣଙ୍କ ଜ୍ୟୋତିରୂପ ଦେଖିଣ ନୟନ ।
ବର ମାଗିଲେ ଯେ ଋଷି ବର ତତକ୍ଷଣ
ତବପଦେ ସଦା ମନ ରହିବ ମୋ ଜାଣ ।
ତତକ୍ଷଣେ ଆକାଶୁଁ ବାଣୀ ହେଲା ନିରନ୍ତର
ଦାରଗ୍ରହ କରି ପୁତ୍ରମୁଖ ଦେଖ ନିଜ ଘର ।
ଶେଷାନ୍ତେ ଏକାନ୍ତ ଭକ୍ତି ଅର୍ପିବୁ କୃଷ୍ଣରେ
ଏତେ ଶୁଣି ଋଷିଗଣ ଗଲେ ନିଜଘରେ ।
ପିତୃଲୋକ ମାନଙ୍କର ମାନସୀ କନ୍ୟା
ତାହାରେ ବିବାହ କଲେ ସେହି ମହାମୁନି ।

କଲ୍ୟାଣ ମିତ୍ରଙ୍କ ଜନ୍ମ ତ ହାର ଉଦରେ
ତାହାଙ୍କ ପବିତ୍ର ନାମ ଯେଉଁ ଜନ ସ୍ମରେ ।
ବଜ୍ର ଭୟ ନ ରହଇ କେତେବେଳେ ତାର
ମିତ୍ର ବିରହ କଦାପି ନ ରହେ ତାହାକୁ ।
ଏକଦା ସୁତପା ଋଷି ବିଶେଷ କାରଣେ
ରମଣୀରେ ପରିତ୍ୟାଗ କଲେ କ୍ରୋଧମନେ ।
ଅଶ୍ୱିନୀ କୁମାର ପରେ ପୂର୍ବ ଥିଲା ରୋଷ
ଅଭିଶାପ ଦେଲେ ଋଷି କ୍ରୋଧିଣ ଅଶେଷ ।
ଯଜ୍ଞ ହବିର୍ଭାଗ କେବେ ତୁମ୍ଭଙ୍କୁ ନ ଦେବେ
ବ୍ୟାଧି ଗ୍ରସ୍ତ ହୋଇ ସଦା ଅପୂଜ୍ୟ ରହିବେ ।
ଏତେ ବୋଲି ଅଭିଶାପ କରିଣ ପ୍ରଦାନ
କଲ୍ୟାଣ ମିତ୍ରଙ୍କ ସାଥେ ଚଳିଲେ ସଦନ ।
ବ୍ୟାଧି ଯୁକ୍ତ ହେବା ପରେ ଅଶ୍ୱିନୀ କୁମାରେ
ଉପନୀତ ସୂର୍ଯ୍ୟଦେବ ମୁନିଙ୍କ ଗୋଚରେ ।
ନାନାରୂପେ ସ୍ତୁତି କଲେ ଦେବ ଦିବାକର
ସ୍ତବେ ତୁଷ୍ଟ ହୋଇ ପରେ ସେହି ବିପ୍ରବର
ତୁଷ୍ଟ ହୋଇ ଦିବାକରେ ବୋଇଲେ ବଚନ
ତୁମ ସ୍ତବରେ ସନ୍ତୁଷ୍ଟ ହେଲା ମୋର ମନ ।
ରୋଗ ମୁକ୍ତ କଲି ମୁହିଁ ଅଶ୍ୱିନୀ କୁମାରେ
ଯଜ୍ଞଭାଗ ପାଇବେ ମୁଁ କହିଲି ତୁମରେ ।
ବରପାଇ ସୂର୍ଯ୍ୟଦେବ ସନ୍ତାନଙ୍କୁ ନେଇ
ଚଳିଲେକ ନିଜସ୍ଥାନେ ହରଷିତ ହୋଇ ।
ପୁରାଣେ ପ୍ରଧାନ ବ୍ରହ୍ମବୈବର୍ତ୍ତ ପୁରାଣ
ଯେଉଁ ଜନ ଶୁଣେ ସେହି ମହାପୁଣ୍ୟବାନ ।
ଏକମନେ ଏ ଗ୍ରନ୍ଥ ଯେ କରଇ ଶ୍ରବଣ
ଅନ୍ତମେ ସେ ଯାଇ ଯିବେ ବୈକୁଣ୍ଠ ଭୁବନ ।
ପୁନ ନ ଆସଇ ସେହୁ ଭବ କାରାଗାରେ
ବିଘ୍ନ ବାସନା ନ ଲାଗଇ ତ ଅଙ୍ଗରେ ।
ଅଧମ କ୍ଷେତ୍ର ମୋହନ କହେ ଯୋଡ଼ିକର
ଏକ ମନେ ହରି ପଦ ଚିନ୍ତ ସର୍ବନର ।

— * —

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଅଶ୍ୱିନୀ କୁମାରଙ୍କୁ ଶାପ ଓ ପୁନଶ୍ଚ
ଶାପ ମୋଚନେ ନାମ ପଞ୍ଚଦଶୋଽଧ୍ୟାୟଃ ॥

# ଷଷ୍ଠଦଶ ଅଧ୍ୟାୟ

## ବିଧାତାଙ୍କର ଶାପରେ ନାରଦଙ୍କର ଗନ୍ଧର୍ବ କୁଳରେ ଜନ୍ମ

ଶୌନକ ବୋଇଲେ ଶୁଣ ଆହେ ମହାମତି
ଶୁଣିଲୁ ତୁମ୍ଭର ମୁଖୁଁ ଅପୂର୍ବ ଭାରତୀ ।
ଆହୁରି ଏକଇ କଥା କୁହ ତପୋଧନ
ପିତାଙ୍କ ଆଦେଶେ ସୃଷ୍ଟି କରେ କେଉଁଜନ ।
କେଉଁ ୨ ଜନ ଗଲେ ଯୋଗ ସାଧନାରେ
ନାରଦଙ୍କର କି ହେଲା କୁହନ୍ତୁ ସତ୍ୟରେ ।
ବିରୋଧ କରିଣ ପିତୃ ଦେବଙ୍କ ସହିତ
ନାରଦ କି କଲେ ତାହା କରନ୍ତୁ ବର୍ଣ୍ଣିତ ।
ପୁତ୍ରଶାପେ ବିଧାତାର କି ହୋଇଲା ଗତି
ବିସ୍ତାର କରିଣ ବାରେ କୁହ ମହାମତି ।
ସୌତି ବୋଲେ ଶୁଣ ୨ ତପୋଧନଗଣ
କେଉଁମାନେ ପିତୃ ଆଜ୍ଞା ନ କଲେ ପାଳନ ।
ହଂସୀ ଯତି ଅରୁଣୀ ଯେ ବୋଢୁ ପଞ୍ଚଶିଖ
ସନକାଦି ପୁତ୍ରଙ୍କୁ ଛାଡ଼ି ହେ ଶୌନକ ।
ଏହାଭିନ୍ନ ଅନ୍ୟ ୨ ତନୟ ନିକର
ପିତାଙ୍କ ଆଦେଶେ ସୃଷ୍ଟି କଲେ ପରସ୍ପର ।
ନାରଦଙ୍କ ଅଭିଶାପେ ଦେବ ପଦ୍ମାସନ
ଅପୂଜ୍ୟ ହୋଇଣ ରହେ ଏ ତିନି ଭୁବନ ।
ଗନ୍ଧର୍ବ କୁଳେ ନାରଦ ଜନମ ଲଭିଲେ
ବିସ୍ତାରି କହୁଛି ତାହା ଶୁଣନ୍ତୁ ସକଳେ ।
ଗନ୍ଧର୍ବଙ୍କ ରାଜାଥିଲେ ଅତି ମହାମତି
ମହାଧର୍ମୀ ଅଟନ୍ତି ସେ ବିବେକ ସୁମତି ।
କିଛିହିଁ ଅଭାବ ତିଳେ ନଥିଲା ତାଙ୍କର
କିନ୍ତୁ ଭାଗ୍ୟ ଦୋଷେ ପୁତ୍ର ନ ହେଲା ତାଙ୍କର ।
ବଶିଷ୍ଠ ମୁନିଙ୍କ ପାଶେ ସେହୁ ବିନୟରେ
ବୋଇଲେ କି ରୂପେ ପୁତ୍ର ହୋଇବ ମୋହରେ ।
ତା ଶୁଣି ବଶିଷ୍ଠ ତାହା ପ୍ରତି ଦୟା କଲେ
ଶିବଙ୍କ କବଚ ସ୍ତୋତ୍ର ଆଦି ତାରେ ଦେଲେ ।
ଆବର ବୋଇଲେ ତୁମ୍ଭେ ପୁଷ୍କର ତୀର୍ଥରେ
ଶିବଙ୍କୁ ଅର୍ଚ୍ଚନା କର ମୋର ଆଦେଶରେ ।
ଶୁଣିଣ ଗନ୍ଧର୍ବ ରାଜ ସେହିକ୍ଷଣି ଯାଇ
ପୁଣ୍ୟ ପୁଷ୍କର ତୀର୍ଥରେ ପ୍ରବେଶ ହୋଇ ।

ଭକ୍ତିଭରେ ସେହିସ୍ଥାନେ ହୋଇ ଏକମନ
ଦିବା ନିଶି ସ୍ତବିଲେକ ଶିବଙ୍କ ଚରଣ ।
କବଚ ସ୍ତୋତ୍ରାଦି ମନ୍ତ୍ର ଦ୍ୱାଦଶ ଅକ୍ଷର
ବଶିଷ୍ଠଙ୍କ ଠାରୁ ପାଇଥିଲେ ଯେ ସକଳ ।
ଜପ ତପ ସ୍ତବ କରେ ଐକାନ୍ତିକ ମନେ
ଦିବ୍ୟ ଶତ ବର୍ଷ ଗତ ହେଲା କ୍ରମେ କ୍ରମେ ।
ତାପରେ ସନ୍ତୁଷ୍ଟ ହୋଇ ଦେବ ପଞ୍ଚାନନ
ଆବିର୍ଭାବ ହେଲେ ବ୍ରହ୍ମ ତେଜ ପ୍ରକାଶିଣ ।
ତ୍ରିଶୂଳ ପଟ୍ଟିଶ କରେ ବିଶେ ଶୋଭନ
ବୃଷଭ ବାହନେ ବିଜେ ଦେବ ପଞ୍ଚାନନ ।
ସୁମଧୁର ହାସ୍ୟ ଶୋଭେ ବଦନ କମଳେ
ସ୍ଫଟିକର ସମ ଶୋଭା ଦିବ୍ୟ କଳେବରେ ।
ଶିରେ ଶୋହେ ଜଟାଜାଳ ମହା ଧ୍ୱାନ୍ତମୟ
ଗଳା ଦେଶେ ନାଗ ମାଳ ଶୋଭାର ଆଳୟ ।
ମହେଶ୍ୱରଙ୍କୁ ନିରେଖି ଗନ୍ଧର୍ବ ନୃପତି
ପ୍ରଣାମ କରିଣ ଭକ୍ତିଭରେ କଲେ ସ୍ତୁତି ।
ସ୍ତବେ ତୁଷ୍ଟ ହୋଇ ଦେବ ଦେବ ପଞ୍ଚାନନ
ବରମାଗ କହିଲେକ ମଧୁର ବଚନ ।
ବେନିକର ଯୋଡ଼ି କହେ ଗନ୍ଧର୍ବ ଭୂପତି
ବୋଇଲେକ ଶୁଣ ଶୁଣ ଆହେ ମହାମତି ।
ବର ଦେବେ ଯଦି ପ୍ରଭୁ ନିବେଦି ଚରଣେ
ହରି ଭକ୍ତି ପାଏ ଯେହ୍ନେ ସଦା ମୁହିଁ ପ୍ରାଣେ ।
ଆଉ ଏକ ଭିକ୍ଷା ମୋର ଆହେ ପଞ୍ଚାନନ
ପରମ ବୈଷ୍ଣବ ପୁତ୍ର ଦିଅ ଏକ ଜଣ ।
ଏହା ଶୁଣି ବୋଇଲେକ ଦେବ ପଶୁପତି
ଶୁଣ ୨ ମୋର ବାକ୍ୟ ଗନ୍ଧର୍ବ ଭୂପତି ।
ଏକ ବର ମାଗ ତୁମ୍ଭେ ଯାହା ଇଚ୍ଛା ତବ
ଦୁଇ ବର ମାଗିବା ଯେ ନୁହଇଁ ସମ୍ଭବ ।
ବିଶେଷି କହୁଛୁ ଯାହା କରନ୍ତୁ ଶ୍ରବଣ
ହରି ଭକ୍ତି ଦେଇ ନ ପାରିବ କଦାଚନ ।
ବ୍ରହ୍ମତ୍ୱ ଇନ୍ଦ୍ରରେ କିବା ଯାହା ଇଚ୍ଛା ହୁଏ
ଏକ୍ଷଣି ଅର୍ପିବି ତାହା ଶୁଣ ମହାଶୟେ ।
ଅମୂଲ୍ୟ ହୃଦୟ ଧନ ଶ୍ରୀହରି ଭକତି
ତାହା ଦେଇ ନ ପାରଇ ଆହେ ମହାମତି ।

ଏତେକ ବଚନ ଶୁଣି ସେ ଗନ୍ଧର୍ବ ରାୟ
ନିବେଦି ବୋଇଲେ ଶୁଣ ଶୁଣ ଦୟାମୟ ।
ଆଜ ମୋର ଆନ ବରେ ଅଭିଳାଷ ନାହିଁ
ହରି ଭକ୍ତି ଆଉ ପୁତ୍ର ଏ ଦୁଇ ମାଗଇ ।
କେ ଏମନ୍ତ ମୂର୍ଖ ଅଛୁ ଅବନୀ ମଧ୍ୟରେ
ହରି ଭକ୍ତି ତେଜି ଅନ୍ୟ ବରେ ବାଞ୍ଛା କରେ ।
ଯଦ୍ୟପି ବାସନା ମୋ ନ କରିବେ ପୂରଣ
ଆପଣଙ୍କର ମସ୍ତକ କରିବ କର୍ତ୍ତନ ।
ଜ୍ୱଳନ୍ତ ଅନଳ ମଧ୍ୟେ ପକାଇବି ନେଇ
ନିବେଦନ ଏହା ମୋର ଆହେ ଉମାସାଇଁ ।
ଏତେ ବୋଲି ଅଶ୍ରୁଜଳ କରିଲେ ମୋଚନ
ପ୍ରବୋଧି ବୋଇଲେ ତାଙ୍କୁ ଦେବ ପଞ୍ଚାନନ ।
ପରମ ବୈଷ୍ଣବ ପୁତ୍ର ଗୋଟିଏ ପାଇବ
ତାହା ଯୋଗେ ହରିଭକ୍ତି ନିଶ୍ଚେ ପ୍ରାପ୍ତ ହେବ ।
ସୁନ୍ଦର ସୁଠାମ ରୂପ ହେବ ନନ୍ଦନର
ଜିତେନ୍ଦ୍ରିୟ ହେବ ସେହୁ ଗୁଣର ଆକର ।
ଏତେ ବୋଲି ଅନ୍ତର୍ହିତ ହେଲେ ପଞ୍ଚାନନ
ଗନ୍ଧର୍ବ ସାନନ୍ଦେ କଲେ ପୁରକୁ ଗମନ ।
ଏ ସର୍ବ ବୃତ୍ତାନ୍ତ ଶୁଣି ଆତ୍ମୀୟ ସ୍ୱଜନ
ଆନନ୍ଦ ଜଳଧି ମଧ୍ୟେ ହୋଇଲେ ମଗନ ।
ଏଣେ ସେ ପିତାଙ୍କ ଶାପେ ନାରଦ ଧୀମାନ
ଦେହ ତେଜି ଧରାତଳେ କରିଲେ ଗମନ ।
ଗନ୍ଧର୍ବ ନୃପତି ଘରେ ପ୍ରବେଶ ହୋଇଲେ
ସେ ରାଜ୍ୟରେ ରାଣୀ ଗର୍ଭ ହେଲା ତତକାଳେ ।
ଯଥା ସମୟରେ ଏକ ଅପୂର୍ବ ନନ୍ଦନ
ପ୍ରସବ କରିଲେ ରାଣୀ ହୋଇ ତୋଷମନ ।
ପୁତ୍ର ପ୍ରସବ ହେବାର ବାରତା ପାଇଣ
ତାହାଙ୍କ ଗୁରୁ ବଶିଷ୍ଠ ମିଳିଲେ ତକ୍ଷଣ ।
ବୋଇଲେ ସର୍ବତ୍ର ପୂଜ୍ୟ ହେବ ଏ କୁମର
ଉପବର୍ହଣ ନାମ ହୋଇଲା ତାହାର ।
ବ୍ରହ୍ମବୈବର୍ତ୍ତ ପୁରାଣେ ନାରଦଙ୍କ କଥା
ଶ୍ରବଣ ମାତ୍ରେ ଯାଏ ଭବ ଭୟ ବ୍ୟଥା ।
କେ ଅବା ଜାଣିବ ଲୀଳା ଲୀଳାମୟଙ୍କର
କ୍ଷେମ ମୋହନ ବୋଲଇ ତାର ଦୁଃଖ ହର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ବିଧାତାଙ୍କ ଶାପରେ ନାରଦଙ୍କର ଗନ୍ଧର୍ବ କୁଳରେ ଜନ୍ମ ବିବରଣେ ନାମ ଷୋଡ଼ଶଅଧ୍ୟାୟ ।

# ସପ୍ତଦଶ ଅଧ୍ୟାୟ

## ଉପବର୍ହଣର ପଞ୍ଚାଶତ ରମଣୀ ଗ୍ରହଣ ଓ ନୃତ୍ୟଗୀତ ଦର୍ଶନାର୍ଥେ ପୁଷ୍କର ତୀର୍ଥକୁ ଗମନ, ଓ ପରେ ଦେହତ୍ୟାଗ ଏବଂ ମାଲାବତୀର ବିଳାପ ।

ଏଥୁ ଅନନ୍ତରେ ଶୁଣ ଆହେ ତପୋଧନ
ଏହିରୂପେ ସୁତ ଲଭି ଗନ୍ଧର୍ବ ରାଜନ ।
ନିମଗ୍ନ ହୋଇଣ ସେହୁ ଆନନ୍ଦ ସାଗରେ
ଦୀନ ଦୁଃଖୀ ଦରିଦ୍ରଙ୍କୁ ନାନା ଦାନକଲେ ।
ସେ କୁମାର ଦିନୁଁ ଦିନ ବର୍ଦ୍ଧିତ ହୋଇଲା
ଶୁକ୍ଳ ଶଶୀ ପ୍ରାୟେ ତାର ରୂପ ପ୍ରକାଶିଲା ।
ଯୌବନ ଅବସ୍ଥା କ୍ରମେ ହୁଅନ୍ତେ ପ୍ରବେଶ
ନାନା ବିଦ୍ୟା ଅଧ୍ୟୟନ କଲେ ନୃପଶିଷ ।
ହରିମନ୍ତ୍ର ପାଇ ଶେଷେ ବଶିଷ୍ଠ ଦ୍ୱାରେ
ତପ କରିବା ନିମନ୍ତେ ଗମିଲେ ସତ୍ୱରେ ।
ଏକଦା ଗଙ୍ଗାକୂଳ ତଟରେ ଉପବିଷ୍ଟ ହୋଇ
ହରିଙ୍କୁ କରିଲେ ଧ୍ୟାନ ଏକାଗ୍ରରେ ସେହି ।
ସେହିକାଳେ ପଞ୍ଚାଶତ ଗନ୍ଧର୍ବ ରମଣୀ
ସ୍ନାନ କରିବା ନିମନ୍ତେ ଆସିଲେ ତକ୍ଷଣି ।
ସେ ଗନ୍ଧର୍ବ ରୂପ ସେହୁ କରି ଦରଶନ
କାମ ଅନଳରେ ସର୍ବେ ହୋଇଲେ ଦହନ ।
ତାହାପରେ ମୂର୍ଚ୍ଛା ହୋଇ ସେଠାରେ ପଡ଼ିଲେ
ଗନ୍ଧର୍ବ ରୂପକୁ ଚିନ୍ତି ପରାଣ ହାରିଲେ ।
ଚିତ୍ରରଥ ଘରେ ଆସି ହୋଇଲେ ଜନମ
ଉପବର୍ହଣଙ୍କୁ କଲେ ପତିରୂପେ ବରଣ ।
ବରମାଲ୍ୟ ଗଳେ ଦେଇ କରିଣ ଆଦର
ମନୋରଥ ସିଦ୍ଧକଲେ ବହୁଦିନ ପର ।
ଜପ ତପ ଆଦି ତେଜି ଗନ୍ଧର୍ବ ନନ୍ଦନ
ରମଣୀ ସଙ୍ଗରେ ହେଲେ ଆନନ୍ଦେ ମଗନ ।
ତିନି ଲକ୍ଷ ବର୍ଷ ରହି ନିର୍ଜନ ପ୍ରଦେଶେ
ରତିରଙ୍ଗ କଲେ ସୁଖେ ମଦନ ଆବେଶେ ।
ଅନନ୍ତର ସିଂହାସନେ କରି ଆରୋହଣ
ବହୁଦିନ ରାଜ୍ୟ ପ୍ରଜା କରିଲେ ଶାସନ ।
ତାହାପରେ ଯାହା ହେଲା ଶୁଣ ସୁଜ୍ଞଜନ
ସେ ଉପବର୍ହଣଙ୍କର କେମନ୍ତ ବିଧାନ ।

ଦିନେ ସେ ଉପବର୍ହଣ ବ୍ରହ୍ମାଙ୍କର ପୁରେ
ଯାଇଣ ହରିଙ୍କ ଗାଥା ଗାଇଲେ ସେଠାରେ ।
ସେ ସମୟେ ଅପସରାମାନେ ନାଚୁଥିଲେ
ତାହାଙ୍କୁ ଏକଦୃଷ୍ଟିରେ ଅନାଇ ରହିଲେ ।
ସେମାନଙ୍କ ମଧ୍ୟେ ରମ୍ଭା ନାମରେ କାମିନୀ
ସର୍ବାଙ୍ଗସୁନ୍ଦରୀ ମୁନି ମାନସମୋହିନୀ ।
ତାର ମୁଖ ପୀନସ୍ତନ ପୃଥୁଳ ନିତମ୍ବ
ଦେଖି ତାହାଙ୍କର ମନେ ନ ରହିଲା ଦମ୍ଭ ।
ସେହିକ୍ଷଣି ରେତ ଖସି ପଡ଼ିଲାକ ତଳେ
ତା ସହି ନ ପାରି ଶୀଘ୍ରେ ମୂର୍ଚ୍ଛା ସେ ପାଇଲେ
ସଙ୍ଗୀତବାଣୀ ବାଦନ ଆଦି ସବୁକଥା
ଠେକିଣ ପଡ଼ିଲେ ସଭାତଳେ ମହାରଥା ।
ତା ଦେଖି ସକଳ ଦେବେ ଉଚ୍ଚେରେ ହସିଲେ
ବ୍ରହ୍ମା ସେହି ଉପବର୍ହଣଙ୍କୁ ଶାପ ଦେଲେ ।
ବୋଇଲେ ରେ ମୂଢ଼ ତୁହି କାମିନୀଲାଳସୀ
ହୋଇ କରି ଲମ୍ପଟରେ ନେଇ ଦିବାନିଶି
ଏବେ ପୁଣି ସଭା ମଧ୍ୟେ ଲାଜ ଛାଡ଼ିକରି ।
ପଡ଼ିଅଛୁ ସାଧାରଣ ମୂର୍ଖଲୋକ ପରି ।
ଏ ହେତୁ ଆମ୍ଭର ଶାପେ ଯକ୍ଷଦେହ ତେଜି
ଶୂଦ୍ର ଯୋନିରେ ଜନମ ହୁଅ ତୁହି ଆଜି ।
କେତେକାଳ ଗଲେ ବୈଷ୍ଣବଙ୍କ ସଙ୍ଗ ପାଇ
ଆସିବୁ ମୋହର ପାଶେ ନିଜଦେହ ବହି ।
ଆପଦ ଭୋଗ ନକଲେ କେଉଁ ପୁରୁଷର
ମହିମା ବଢ଼ଇ ନାହିଁ ମନରେ ବିଚାର ।
ସୁଖ ଦୁଃଖ ଦୁଇକଥା କ୍ରମେ ଭୋଗ ହୁଏ
ଏହି ପରକାରେ ସବୁଠାରେ ଦେଖାଯାଏ ।
ଏମନ୍ତ କହିଣ ବ୍ରହ୍ମା ଦେବତାଙ୍କୁ ଘେନି
ଆପଣା ସ୍ଥାନକୁ ଗଲେ ଜାଣ ମହାମୁନି ।
ସେହିକ୍ଷଣି ବ୍ରହ୍ମାଙ୍କର ବଚନ ପ୍ରମାଣେ
ସେ ଗନ୍ଧର୍ବପୁତ୍ର ରହିକରି ସେହି ସ୍ଥାନେ ।

ସେହି ମୁହୂର୍ତ୍ତରେ ଦେହ ପ୍ରାଣତ୍ୟାଗ କଲେ
ଷଡ଼ଚକ୍ର ଭେଦକରି ବ୍ରହ୍ମେ ଲୟ ହେଲେ ।
ମୂଳାଧାର ସ୍ୱାଧିଷ୍ଠାନ ମଣିପୁର ପୁଣି
ଅନାହତ ବିଶୁଦ୍ଧ ସେ ଆଜ୍ଞାନାମ ଯେହ ।
ଏହି ଷଡ଼ଚକ୍ର ଭେଦକରି ସେ ଅନ୍ତରେ
ଷୋଡ଼ଶ ନାଡ଼ୀକି ଭେଦକଲେ ସହଜରେ ।
ସେ ନାଡ଼ୀଙ୍କ ନାମମାନ କହୁଅଛୁ ଶୁଣ
ଇଡ଼ା ସୁଷୁମ୍ନା ସୁମେଧା ପିଙ୍ଗଳା ଯେ ପୁଣ ।
ପ୍ରାଣ ସଂହାରଣୀ ସର୍ବଜ୍ଞାନ-ପ୍ରଦାୟିନୀ
ମନ-ସଂଯମନୀ ଶୁଦ୍ଧା ନିରୁଦ୍ଧାଙ୍କ ଯେନ ।
ତେଜଃଶୁଷ୍କକାରୀ ବଳପୁଷ୍ଟିବିଧାୟିନୀ
ବୁଦ୍ଧି ତୋଷାରଣୀ ଜ୍ଞାନ ନିମ୍ନଣକ୍ଷରଣୀ ।
ସର୍ବ ପ୍ରାଣ ବଶୀକର୍ତ୍ତା ଜୀବନକାରିଣୀ
ଏମନ୍ତ ସେ ନାଡ଼ୀଙ୍କର ନାମମାନ ପୁଣି ।
ସେ ଅନ୍ତେ ମନ ସହିତ ପରମହଂସଙ୍କୁ
ଯୋଗ ପ୍ରଭାବରେ ନେଇ ବ୍ରହ୍ମରନ୍ଧ୍ରଠାକୁ ।
ମୂର୍ଦ୍ଧ୍ୱ ପର୍ଯ୍ୟନ୍ତ ଉର୍ଦ୍ଧ୍ୱ କରାଇ ବିଶ୍ରାମ
କଲେ ନେଇ ଅଦ୍ୱିତୀୟ ବ୍ରହ୍ମରେ ଯୋଜନ ।
ଆହେ ଜନକ ଜାତିସ୍ମର ହୋଇ କରି
ଥିବାରୁ ସେ ଯକ୍ଷସୁତ ବହୁତପ କରି ।
ନିଷ୍କଳଙ୍କ ବ୍ରହ୍ମମୟ ହୋଇଲେଟି ଜାଣ
ଏଥୁ ଅନନ୍ତରେ ଯାହା ହେଲା ଏବେ ଶୁଣ ।
କୁଶ ତଳପଟରେ କରିଥିଲେ ତ ଶୟନ
ପୂର୍ବକୁ ଦକ୍ଷିଣ ମୁଣ୍ଡ ପଶ୍ଚିମେ ଚରଣ ।
ହି ତନ୍ତ୍ରୀ ବୀଣାକୁ ବାମସ୍କନ୍ଧରେ ପକାଇ
ଶୁଦ୍ଧସ୍ଫଟିକ ମାଳାକୁ ଦକ୍ଷକରେ ଥୋଇ ।
ବେଦସାର ପରଂବ୍ରହ୍ମ ମନ୍ତ୍ର ଜପକରି
ନିସ୍ତାର କାରଣ କୃଷ୍ଣନାମ କଣ୍ଠେ ଧରି ।
ହରେ କୃଷ୍ଣ ହରେ କୃଷ୍ଣ ଏ ଷୋଳଅକ୍ଷର
ପୁନଃପୁନଃ ଉଚ୍ଚାରଣ କରିଣ ସତ୍ୱର ।
ପରମ ବ୍ରହ୍ମକୁ ପ୍ରାପ୍ତ ହୁଅନ୍ତେ ସେ ଯାଇ
ଗନ୍ଧର୍ବରାଜ ତାହାଙ୍କୁ ଦେଖି ଦୁଃଖୀ ହୋଇ ।
ଭାରଯା ସହିତେ ଯୋଗ ଆସନରେ ବସି
ଶ୍ରୀକୃଷ୍ଣ ଶ୍ରୀହରି ନାମ ମୁଖେ ଘୋଷି ଘୋଷି ।
ପରମବ୍ରହ୍ମରେ ଯାଇ ବିଲୀନ ହୋଇଲେ
ତା ଦେଖି କାମିନୀଗଣ ମହାଚିନ୍ତା କଲେ ।

ବାନ୍ଧବଙ୍କୁ ସେହି ଅବସ୍ଥେ ଶୋକକରି
କାନ୍ଦିଲେ ଉଚ୍ଚରେ ଯେତେକ ନାରୀ ରୂପସୀ ।
ତାଙ୍କମଧ୍ୟେ ମାଳାବତୀ ପରମା ସୁଦଶୀ
ସମଧିକ ପ୍ରେୟସୀମା ଥିଲା ସେହି ଦାସୀ ।
ବକ୍ଷେ କରାଘାତ ଧରି କରି ବନସନ
ଧୂଳିରେ ଲୋଟିଣ କରେ ସଘନେ ରୋଦନ ।
ହେନାଥ ଆମ୍ଭଙ୍କୁ ପେଲି ଦୁଃଖର ସାଗରେ
କି ଦୋଷରେ ଚାଲିଗଲ ବୁଢ଼ନ୍ତୁ ଆମ୍ଭରେ ।
କି କହିବା ଆହେ ନାଥ ତୁମ୍ଭର ବିହୁନେ
ଚଉଦିଗ ଶୂନ୍ୟ ଲାଗେ ଦିଶୁଛି ନୟନେ ।
ଶୟନେ ଭୋଜନେ ସ୍ୱପ୍ନେ କିବା ଜାଗରଣେ
ସଦାଚିତ୍ତ ରୂପନାଥ ପଡ଼ୁଅଛି ମନେ ।
ଯେତେକ ପରକାର ମୁହିଁ ଚେଷ୍ଟା କରୁଅଛୁ
କଦାପି ମୋହର ମନ ନାଥ ନ ବୁଝୁଛୁ ।
ଏହିରୂପେ ଖେଦକରି ମାଳାବତୀ ଦାସୀ
ଧରାରେ ମୂର୍ଚ୍ଛିତା ହୋଇ ପଡ଼ିଲା ସୁଦଶୀ ।
କ୍ଷଣ କ୍ଷଣ ସେହି ଦଶା ଅଧିକ ହୋଇଲା
ସ୍ୱଭାବେ ଗଗନସ୍ଥ ତାର ଚେତନା ଜନ୍ମିଲା ।
ତାପରେ ଉଠିଣ ଗୋଷ୍ଠୀ କରଇ ରୋଦନ
କେଉଁଣେ ଅନ୍ତ କୃଷ୍ଣ ଦୟାମୟ ଭଗବାନ ।
ଜଗତର କର୍ତ୍ତା ତୁମେ ଆହେ ନାରାୟଣ
କି ହେତୁ ମୋପରେ ପ୍ରଭୁ ହେଲ ନିଦାରୁଣ ।
କାମିନୀମାନଙ୍କ ଗତି ଅଟେ ପତି ଧନ
ସେ ଧନ ହରଣ କଲେ ପ୍ରଭୁ କି କାରଣ ।
ଏ ଗୁରୁ ଜୀବନେ ମୋର କିବା ପ୍ରୟୋଜନ
ଯେ ରୂପେ ହେଉ ତେଜିବି ଏ ପାପ ପରାଣ ।
ଶୁଣ ୨ ଦୁରାତ୍ମାନ ଯେତେ ସୁରବର
ଧ୍ୱଂସ କରିବ ମୁଁ ଦର୍ପ ତୁମ୍ଭମାନଙ୍କର ।
ଶୁଣ ଆହେ ନାରାୟଣ କହୁଛି ତୁମ୍ଭରେ
ପ୍ରାଣନାଥ ଜୀବାଅ କର ମୋହର ପକ୍ଷରେ ।
ନହୁବା ତୁମକୁ ମୁହଁ ଦେବି ଅଭିଶାପ
ଅଭିଶାପେ ପଡ଼ିଣାମେ ହେବ ମନସ୍ତାପ ।
ଶୁଣ ୨ ମୋର ବାକ୍ୟ ଆହେ ପଦ୍ମାସନ
ପୁଣ ଶାପେ ଭଗ୍ନେ ନକ୍ଷି ତୁମ୍ଭର ସୃଜନ ।
ମୂର୍ଖ ମଧ୍ୟ ପୁଣି ଶାପ ଅର୍ପିବି ତୁମ୍ଭରେ
ଅଧିକାର ଚ୍ୟୁତ ହେବ ଜାଣିବେ ଅନ୍ତରେ ।

ତୁମକୁ ତ ଶାପ ଦେବ ଆହେ ପଞ୍ଚାନନ
ଚତୁରାନନ ଲୁପ୍ତ ତୁମେ ହେବ ତ୍ରିନୟନ ।
ଶୁଣ ଶୁଣ ଧର୍ମଦେବ ବଚନ ମୋହର
ଅଭିଶାପେ ଧର୍ମଲୋପ ହୋଇବ ତୁମର ।
ଭର୍ତ୍ତୃର ମୃତ୍ୟୁରେ କନ୍ୟା ଶାପ ଆଚରଣୀ
ଅଭିଶାପ ଦେବ ତାରେ କହିଲ ଏକ୍ଷଣି ।

ଏତେ ବୋଲି ମାଳାବତୀ ମୃତ୍ୟୁ ପତି ନେଇ
ସକଳ ବୃନ୍ଦ ବେଦନ କଲେ ବୃଦ୍ଧମୂର୍ତ୍ତି ।
କୌଶିକୀ ନଦୀକୁ ଶେଷେ କରିଲା ଗମନ
ଅଭିଶାପ ଦେବାପାଇଁ ବଳୁଥିଲା ମନ ।
ତବେ ଜଳଧର ଗୋସାଇଁ ହୋଇଲେ ଉଦ୍ୟତ
ଧ୍ୟାନସ୍ଥାନ ଛେଡ଼ି ବ୍ରାହ୍ମୀ ବାହାରିଲା ଶୀଘ୍ର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଉପବର୍ହଣର ଦେହତ୍ୟାଗରେ ମାଳାବତୀର ବିଳାପେ ନାମ ସପ୍ତଦଶୋଽଧ୍ୟାୟଃ ।

## ଅଷ୍ଟାଦଶ ଅଧ୍ୟାୟ

### କ୍ଷୀରୋଦ ସାଗରକୁ ହରିଙ୍କ ନିମନ୍ତେ ଦେବଗଣଙ୍କର ଗମନ ଓ ବିଷ୍ଣୁଙ୍କର ସ୍ତବ ଏବଂ ତତ୍‌କର୍ତ୍ତୃକ ଦେବଗଣଙ୍କୁ ଅଭୟ ପ୍ରଦାନ ।

ଏ ଅନ୍ତରେ ବ୍ରହ୍ମାଆଦି ଦେବତା ନିକର
ବିଷ୍ଣୁଙ୍କ ସନ୍ନିଧେ ଗଲେ କ୍ଷୀରୋଦ ସାଗର ।
କ୍ଷୀରନଦୀ ତୀରେ ସର୍ବେ ପ୍ରବେଶ ହୋଇଲେ
ସ୍ନାନ କରି ସର୍ବେ ତହିଁ ଶୁଦ୍ଧ ପୂତ ହେଲେ
ସତୀ ନାରୀ ଅଭିଶାପ ଦେବୁ ଭୟ ପାଇ
ବିଷ୍ଣୁଙ୍କର ସ୍ତୁତି କଲେ ଏକମନେ ତହିଁ ।
ସର୍ବାଗ୍ରରେ ବେଦବର ବ୍ରହ୍ମା ଉଭା ହୋଇ
ପରମ ଆତ୍ମାକୁ ମନେ ଧ୍ୟାନ କଲେ ତହିଁ ।
ସ୍ତୁତି ଆରମ୍ଭ କରିଲେ ସର୍ବ ଦେବ ଯାକ
ବୋଇଲେ ନମସ୍ତେ ଦେବ ଭୁବନ ପାଳକ ।
ତୁମକୁ ଅନ୍ତର ମଧ୍ୟେ ଯୋଗୀ କରି ଧ୍ୟାନ
ସଂସାର କଳୁଷ ପାପୁଁ ହୁଅନ୍ତି ମୋଚନ ।
ଶୟନ ସ୍ୱପନ ଜନ୍ମ ମରଣେ ଯେ ନର
ଭକ୍ତିଭାବ ମନେ ରଖି ତୁମ୍ଭ ଶ୍ରୀ ପଦ୍ମର ।
ସ୍ମରଣ କରନ୍ତି ପୁଣି ଜପନ୍ତି ସର୍ବଦା
ତାହାକୁ କଳୁଷ ଛୁଇଁ ନ ପାରଇ କଦା ।
ଶରଣ ଜନ ରକ୍ଷଣ ପ୍ରଭୁ ଦଇତ୍ୟାରି
ସାବଧାନ ରୁହ ପ୍ରଭୁ ଶଙ୍ଖ ଚକ୍ରଧାରୀ ।
ତବ ଶ୍ରୀ ଚରଣ ତଳେ ପଶୁଛୁ ଶରଣ
ଉଦ୍ଧାର କର ଆମ୍ଭଙ୍କୁ ଜଗତ କାରଣ ।
ଧାତା ବୋଇଲେ ସନ୍ତାନ ଶାପରେ ମର୍ତ୍ତ୍ୟରେ
ମୋର ପୂଜା ନ ହୁଅଇ ସଂସାର ମଧ୍ୟରେ ।

ଏବେ ଦେଖ ସତୀ ଉପବର୍ହଣଙ୍କ ପତ୍ନୀ
ତା ପତି ମୃତ୍ୟୁରେ ହୋଇ ସେହୁ ଦୁଃଖୀ ଅତି
ମୋହ ସମ୍ମତରେ ସବୁ ଦେବତାଙ୍କୁ ଶାପ
ଦେବ ଆମ୍ଭ ପ୍ରଭୁପଣ କରିବାକୁ ଲୋପ ।
ସଂକଳ୍ପ କରି ବସିଛନ୍ତି ନିଜ ମନେ
କି ରୂପେ ଉଦ୍ଧାର ଏଥୁଁ ହେବୁ ଆମ୍ଭେମାନେ ।
ସେ କଥା ବିଚାର କର ଆହେ ଜଗଦୀଶ
ରକ୍ଷା କର ସତୀ ଶାପୁଁ ସକଳ ତ୍ରିଦଶ ।
ତବ କୃପାବଳେ ସବୁ ଅଧିକାର ପାଇ
ଆମ୍ଭେମାନେ ପ୍ରଭୁ ହୋଇଅଛୁ ରମାସାଇଁ ।
ଏବେ ସେହି ପ୍ରଭୁପଣ ହେବାକୁ ବିନାଶ
ବସିଅଛୁ ତୁମ୍ଭେ ନ ରଖିଲେ ଯିବୁ ନାଶ ।
ଏହିରୂପେ କହି ଧାତା ନୀରବ ରହିଲେ
ଏଥୁଅନ୍ତେ ମହାଦେବ ଉଠି ସ୍ତବ କଲେ ।
ବୋଇଲେ ନମୋହେ ଦେବ ପରମ ଈଶ୍ୱର
ତୁମ୍ଭର ଦୟାରେ ତିନି ଭୁବନ ଆବର ।
ଅଶେଷ ବ୍ରହ୍ମାଣ୍ଡ ଚଳାଚଳ ହେଉଅଛି
ତୁମ୍ଭଠାରୁ ଭିନ୍ନ ହୋଇ ଆଉ ନାହିଁ କିଛି ।
ଦୁର୍ଲ୍ଲଭ ପରମ ଗୁପ୍ତ ଯେଉଁ ଦିବ୍ୟଜ୍ଞାନ
ମୋହର ଦୁଷ୍କର ତପ ଫଳରୂପେ ପୁଣ ।
ପୂର୍ବରେ ପୁଷ୍କର ତୀର୍ଥେ ସମର୍ପଣ କରି
ଜଗତେ ଅଧିକ ମୋତେ କରିଅଛ ହରି ।

ଐଶ୍ୱର୍ଯ୍ୟ ସମ୍ପଦ ଧନ ବିଦ୍ୟା ଅବା ବଳ
ଜ୍ଞାନର କଳାକୁ ଯୋଗ୍ୟ ନୁହଁନ୍ତି ସକଳ ।
ଜ୍ଞାନ ଯୋଗେ ସବୁକଥା ଜଣାଯାଏ ସୁଖେ
ଅସାଧ୍ୟ ହୋଇଣ କିଛି ନାହିଁ ଜ୍ଞାନପକ୍ଷେ ।
ଯେମନ୍ତ ସେ ତତ୍ତ୍ୱଜ୍ଞାନ ଦେଇଛ ମୋଠାରେ
ତାହା ଲୋପ ହେଉଅଛି ସତୀର ଶାପରେ ।
ପତିବ୍ରତା ତେଜଠାରୁ ଅନ୍ୟତେଜ ସବୁ
ନିଊନ ଅଟଇ ଦେବ ଆଉ କି କହିବୁ ।
ଯେଉଁ ତେଜ ପ୍ରଭାବରେ ମୋହପଥ ଲୋକ
ଦଗ୍ଧ ହେବ ବୋଲି ଭୟେ ବହୁଅଛି ଶୋକ
ତାହାର ମହିମା କିସ କହିବାକୁ ଅଛି
ହେ ପ୍ରଭୁ ତୁମ୍ଭଙ୍କୁ ମୁହିଁ ଏତେକ ମାଗୁଛି ।
ଯେରୂପ ତହିଁରେ ଛିଡ଼ ନହେବ ଦହନ
ସେହି ପରକାରେ କର ତା ପ୍ରତି ବିଧାନ ।
ଏଥୁଁ ଅନ୍ତେ ଧର୍ମ ଦେବ ଯୋଡ଼ି ବେନିକର
ବୋଇଲେ ହେ ଦେବ ଦେବଗଣ ଅଧୀଶ୍ୱର
ସମସ୍ତ ତନ୍ତ୍ରରେ ସାର ଧର୍ମ ରୂପ ରତ୍ନ
ଯାହା ରଖିଅଛି ମୁହିଁ କରି ଅତି ଯତ୍ନ ।
ତାହା ପାଇଥିଲି ଆପଣଙ୍କ କୃପାବଳେ
ଏବେ ତାହା ନାଶ ହୁଏ ସତୀ ଶାପାନଳେ ।
ଅନେକ ତପସ୍ୟା କରି ମୁହିଁ ତୁମ୍ଭଠାରେ
ପାଇଥିବା ପଦାର୍ଥ ଯେ ନାଶ ଯାଏ ବାରେ ।
ଏ ହେନ ଅସହ୍ୟ ହେଉଅଛି ଆହେ ନାଥ
ତୁମ୍ଭେ ନ ରଖିଲେ ନାଶ ହୋଇବ ସମସ୍ତ ।
ଆନ ଆନ ଦେବଗଣ ଅତି ବ୍ୟାକୁଳରେ
ସ୍ତୁତି ଆରମ୍ଭିଲେ ପ୍ରଭୁ ରଖ ବିପଦରେ ।
ତୁମ୍ଭର ବଳରେ ଆମ୍ଭେ ଅଟୁ ବଳୀୟାନ
ଯଜ୍ଞଭାଗ ଭୁଞ୍ଜୁଅଛୁ ହୋଇ ତୋଷମନ ।
ସତୀ ସ୍ତ୍ରୀ ସ୍ତ୍ର ଶାପେ ତାହା ହେଉଛି ବିନାଶ
ରକ୍ଷାକର ଏତେବେଳେ କମଳାଙ୍କ ଈଶ ।
ଏହା କହି ସର୍ବ ଦେବ ସଂଯତ ଭାବରେ
ରହିଲେ ସେଠାରେ ଭୟ କରିଣ ମନରେ ।
ଏହି ସମୟରେ ହେଲା ଅଶରୀରୀ ବାଣୀ
ଆହେ ଦେବଗଣେ ତୁମ୍ଭେ ଯାଅ ଏହିକ୍ଷଣି ।
ଯେଉଁ ସ୍ଥାନେ ମାଳାବତୀ ଅଛି ତହିଁ ଯାଅ
ମନରେ କୌଣସି ମତେ ଭୟ ଯେ ନ ପାଅ ।
ତୁମ୍ଭ ପଛେ ପଛେ ଯାଇ ବ୍ରାହ୍ମଣ ବେଶରେ
ପ୍ରବେଶ ହୋଇବ ମୁହିଁ ଶୁଣ ମନସ୍ଥିରେ ।
ତାହା ଶୁଣିଲା ମାତ୍ରକେ ସକଳ ଅମର
ମନ ମଧ୍ୟରେ ଆନନ୍ଦ ହୋଇଲେ ଅପାର ।
ବ୍ରହ୍ମାଙ୍କୁ ସଙ୍ଗରେ ନେଇ ସକଳେ ଚଳିଲେ
ମାଳାବତୀ ବାସ ସ୍ଥାନେ ପ୍ରବେଶ ହୋଇଲେ ।
ଦେଖିଲେ ସେ ପତିବ୍ରତା ମାନଙ୍କ ଈଶ୍ୱରୀ
ବସିଅଛି ସାକ୍ଷାତରେ ମହାଲକ୍ଷ୍ମୀ ପରି ।
ଭୂଷିତା ହୋଇଛି ନାନା ରତ୍ନ ଅଳଙ୍କାରେ
ଦେଖାଯାଏ ଯେସନ୍ତେ ସୂର୍ଯ୍ୟ ଉଦୟ ସେଠାରେ
ଅଗ୍ନି ପରିଷ୍କୃତ ବସ୍ତ୍ର ପରିଧାନ କରି
ତେଜରେ କରୁଛି ନିନ୍ଦା ରବିଶ୍ରୀ ଅଇର ।
ମସ୍ତକରେ ଶୋଭେ ଭଙ୍ଗ ସିନ୍ଦୂରର ବିନ୍ଦୁ
ଶରୀର ଦିଶୁଛି ଯେସନ୍ତେ ଶରତ୍କାଳ ଇନ୍ଦୁ ।
ଚିରକାଳୁଁ ପତିସେବା ଧର୍ମ ପ୍ରଭାବରେ
ପ୍ରଜ୍ୱଳିତ ଅଗ୍ନି ସମ ଦିଶେ କିରଣରେ ।
ପତିଙ୍କର ଶବ ନିଜ ବକ୍ଷଦେଶେ ଧରି
ବସି ଅଛି ନିଶ୍ଚଳରେ ଯୋଗଧ୍ୟାନ କରି ।
ଯେବଣ ରୂପର ଯୋଗୀମାନ କରି ସ୍ଥିର
ତପ କରୁଥାଏ ସେହିପରି ସମାଦର ।
ଏକଧ୍ୟାନେ ବସିଅଛି ବୁଦ୍ଧି ସ୍ଥିର ହୋଇ
ପତିଙ୍କର ବୀଣା ହସ୍ତେ ଧରିଅଛି ସେହି ।
ଅକ୍ଷମାଳା ଦୁଇ ଶୋଭା ପାଏ ଅଙ୍ଗୁଳିରେ
କିଂ ପୁରୁଷ ମାଳା ଗୋଟି ଧରିଅଛି କରେ ।
ପତିଠାରେ ସ୍ନେହ ଭକ୍ତି ଥିବାରୁ ତାହାର
ଯୋଗମୁଦ୍ରା ଅନୁରୂପ ଧରି ଦକ୍ଷକର ।
ପରଶ କରଇ ସ୍ୱାମୀ ସକଳ ଶରୀର
ଦେଖାଯାଏ କାନ୍ତିମତୀ ପାର୍ବତୀ ପ୍ରକାର ।
ସୁନ୍ଦର ଚମ୍ପକ ସମ ତା ଅଙ୍ଗ ଶୋଭଇ
ଦେଖିବା ମାତ୍ରକେ ମୁନି ମନ ସେ ମୋହଇ ।
ପକ୍ୱ ବିମ୍ବ ପରି ଦିଶେ ତାର ଓଷ୍ଠାଧର
ରତନ ମାଳାର ବାଳା ଦିଶଇ ରୁଚିର ।
ଅଳପ ବୟସ ହୋଇଥିବାରୁ ତାହାକୁ
ଅଙ୍ଗର ଯୌବନ ଭାର ନିନ୍ଦଇ ରଙ୍ଗକୁ ।
ସୁନ୍ଦର କଠିନ ଦିଶେ ଉଚ୍ଚ କୁଚ ଦୁଇ
ପୃଥୁଳ ନିତମ୍ବ ମନୋହର ଯେ ଦିଶଇ ।

ଚମ୍ପକ କଳି ଜିଣିପେ ଅଙ୍ଗୁଳି ବିରାଜେ
ଅଙ୍ଗର ସୌରଭ କୋଟି ସୂର୍ଯ୍ୟ ତେଜ ଗଞ୍ଜେ
ସ୍ୱାମୀର ଶବରେ ବାରମ୍ବାର ଦୃଷ୍ଟି ଦେଇ
ଭିଜୁଥାଏ ପ୍ରେମରସେ ମନକୁ ମଜାଇ ।
ଏମନ୍ତେ ତାହାକୁ ଦେଖି ବ୍ରହ୍ମା ଆଦି ଦେବେ
ସ୍ତମ୍ଭୀଭୂତ ହୋଇ ବୃକ୍ଷ ରହିଲେକ ସର୍ବେ ।
ଦମ୍ଭରେ ତାହାଙ୍କ ତତ୍ତ୍ୱ ହେଲ ବିଚଳିତ
କ୍ଷଣେ ମାତ୍ର ସ୍ଥିର କରି ନ ପାରିଲେ ଚିତ୍ତ ।
ବେଦ ଦେବଙ୍କୁ ଯେ ସଦା ହୃଦ ପଦ୍ମେ ଧ୍ୟାଇ
ଅଚ୍ୟୁତ କ୍ଷେତ୍ର ମୋହନ ଏ ଗୀତ ରଚଇ ।

———

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ କ୍ଷୀର ସାଗର ତଟରେ ଦେବତାଙ୍କୁ ବିଷ୍ଣୁଙ୍କର ଅଭୟପ୍ରଦାନେ ନାମ ଅଷ୍ଟାଦଶଅଧ୍ୟାୟଃ ॥

## ଊନବିଂଶ ଅଧ୍ୟାୟ

### ବିଷ୍ଣୁଙ୍କର ବ୍ରାହ୍ମଣ ବେଶରେ ମାଳାବତୀଙ୍କ ନିକଟକୁ ଗମନ ଓ ତାହା ସହିତ କଥୋପକଥନ ।

ଏହାପରେ ଯାହା ହେଲା ଶୁଣ ଦେଇ ମନ
ଏ ଗ୍ରନ୍ଥ ଶ୍ରବଣେ ପାପ ହୋଇବ ଦହନ ।
ଦେବତାଏ କ୍ଷଣେ ମାତ୍ର ରହିଣ ସେଠାରେ
ମାଳାବତୀ ନିକଟକୁ ଗଲେ ଧୀରେ ଧୀରେ ।
ମୃତପତିକୁ ସୁନ୍ଦରୀ ରଖି କିଛି ଦୂରେ
ବକ୍ଷେ କରାଘାତ କରି କାନ୍ଦେ ଉଚ୍ଚସ୍ୱରେ ।
ସହସା ସେ ବିପ୍ର ଶିଶୁ ଅତି ମନୋହର
ଭ୍ରମି ୨ ପ୍ରବେଶିଲ ଯାଇଣ ସେଠାର ।
ଦଣ୍ଡ ଛତ୍ର ଶୋଭାକରେ ଅତି ମନୋହର
ଶୁକ୍ଳବସ୍ତ୍ର ପରିଧାନ ସହାସ୍ୟ ଅଧର ।
ଲଲାଟ ପଟ୍ଟରେ ଶୋହେ ଉଜ୍ଜ୍ୱଳ ତିଳକ
ଦୀର୍ଘ ପୋଥି ଶୋହେ କରେ ମନୋହର ଭେକ
ପ୍ରଶାନ୍ତ ସ୍ୱଭାବ ଯିବା ଜନ ମନ ମୋହେ
ସର୍ବାଙ୍ଗେ ଚନ୍ଦନ ଲିପ୍ତ ମଧୁପ ଗୋଡ଼ାଏ ।
ହରିଙ୍କ ଅପୂର୍ବ ଲୀଳା କେ ବୁଝି ପାରଇ
ମାୟାକରି ଆସିଛନ୍ତି ଜଗତ ଗୋସାଇଁ ।
ସହସା ପ୍ରବେଶି ତହିଁ ସେ ବିପ୍ର ନନ୍ଦନ
ବୋଇଲେ କି କରୁ ଏଥି ଦେବ ପଦ୍ମାସନ ।
ସୃଷ୍ଟି ବ୍ରହ୍ମାଣ୍ଡରେ ହର୍ତ୍ତା ଦେବ ମହେଶ୍ୱର
କି ନିମନ୍ତେ ଆସିଛନ୍ତି ଏ ସ୍ଥାନେ ସତ୍ୱର ।
ସକଳ କାର୍ଯ୍ୟରେ ଯେହୁ ସାକ୍ଷୀ ଜଗତରେ
ସେଇ ଧର୍ମଙ୍କୁ ଦେଖୁ ଛୁ ମୁହିଁ ଏ ସ୍ଥାନରେ ।
ସୂର୍ଯ୍ୟ ଚନ୍ଦ୍ର ମୃତ୍ୟୁକନ୍ୟା ଦେବ ହୁତାଶନ
ଇତ୍ୟାଦି ସକଳ ଦେବ କରିଣ ଦର୍ଶନ ।
ଏତେବୋଲି ମିଷ୍ଟଭାଷେ ଶ୍ରୀମଧୁସୂଦନ
ସତୀରେ ସମ୍ବୋଧି ଧୀରେ ବୋଇଲେ ବଚନ ।
ମୃତ ନର କୋଳେ ତବ ଏ କି ଚମତ୍କାର
ପତି ବୋଲି ମନେ ବୋଧ ହେଉଛୁ ମୋହର ।
କି କାରଣେ ଏ ଭାବରେ କରୁଛ ରୋଦନ
ପ୍ରକାଶ କରିଣ ବୋଲ ମୋ ଆଗେ ବଦନ ।
ଏତେକ ବଚନ ଶୁଣି ବୋଲେ ମାଳାବତୀ
ତେଜି ଅଛନ୍ତି ପରାଣ ମୋହର ଯେ ପତି ।
ମୋର ପିତା ଚିତ୍ରରଥ ବିଦିତ ସଂସାରେ
ପଞ୍ଚାଶ ତନୟା ତାର ଭାବିବେ ଚିତ୍ତରେ ।
ସଭିଙ୍କର ଏଇ ଏକମାତ୍ର ପତି ଜାଣ
ଏକେର ବିହୁନେ ସର୍ବେ ଲଭନ୍ତି କଷଣ ।
ବ୍ରହ୍ମଶାପେ ମୋର ପତି ତେଜିଲେ ଜୀବନ
ଦେବତାଙ୍କୁ ଶାପ ଦେବି ଏ ସତ୍ୟ ବଚନ ।
କର୍ମ ଫଳ ଦାତା ଏଥୁ ଦେବତା ଅଟନ୍ତି
ଅଧିକ କହିବ କିସ ଆହେ ମହାମତି ।
ସତୀର ବଚନ ଶୁଣି ଅଖିଳର ପତି
କହିଲେକ ଶୁଣ ୨ ଆହେ ମାଳାବତୀ ।
କର୍ମଫଳେ ଜୀବଗଣ ଫଳାଫଳ ପାନ୍ତି
ଏଇ ହେତୁ କହେ ସତୀ ଶୁଣ ମୋ ଭାରତୀ ।
କର୍ମଫଳ ଜଗତରେ କେ ଖଣ୍ଡି ନ ପାରେ
ମରିଅଛୁ ତବ ପତି କର୍ମ ଅନୁସାରେ ।
ଯେଉଁ ସାଧନା ଯାହାର ସେହି ଫଳ ଲଭେ
କାହାର ନ ଦୁଷ ସତୀ କହୁଅଛୁ ଏବେ ।

ସ୍ୱକାନ୍ତର ସେବାକରେ ଯେଉଁ ନାରୀଜାତ
ମନୋମତ ପତି ଲଭେ ସେହି ମହାସତୀ ।
ଯେଉଁ ନାରୀ ନିରନ୍ତର ଶିବ ପରାୟଣ
ଶିବ ବରେ ମନୋମତ ପାଏ ପତିଧନ ।
ସୂର୍ଯ୍ୟଙ୍କୁ ଅର୍ଚ୍ଚନା କରେ ଯେହୁ ଭକ୍ତିଭରେ
ଧନଲାଭ ବିଦ୍ୟାଲାଭ ସେହିଜନ କରେ ।
ଭକ୍ତିଭରେ ଯେଉଁ ଜନ ପୂଜେ ନାରାୟଣ
ମୁକ୍ତିପଦ ପାଏ ସେହୁ ଶାସ୍ତ୍ରର ପ୍ରମାଣ ।
ତାହାର କିରଣ ଧରା ମଧ୍ୟରେ ରହଇ
ଦିବ୍ୟରଥେ ଚଢ଼ି ସେହୁ ବୈକୁଣ୍ଠେ ଗମଇ ।
ସେହିଜନ ନିରନ୍ତର ବିଷ୍ଣୁ ପରାୟଣ
ଇନ୍ଦ୍ରତ୍ୱ ବ୍ରହ୍ମତ୍ୱ ତୁଚ୍ଛକରେ ସେହିଜନ ।
ସମନ ଭୟ ନ ରହେ ତାହାର ଅନ୍ତରେ
ଶ୍ରୀହରି ଚରଣ ଭାବେ ହୃଦୟ ମଧ୍ୟରେ ।
ନିଜ ୨ କର୍ମଫଳ ପାଏ ଜୀବଗଣ
ବୃଥା ଶୋକ ନ କରନ୍ତି ଶୁଣ ମୋ ବଚନ ।
ମନୋହର ମୂର୍ଧ କର ଏ ପୁରାଣ ଗାଥା
ଶ୍ରବଣ ମାତ୍ରକେ ଛୁଟେ ଭବଭୟ ବ୍ୟଥା ।
ଶ୍ରଦ୍ଧାରେ ପଢ଼େ ବା ଯେହୁ କରଇ ଶ୍ରବଣ
ଅନ୍ତକାଳେ ବୈକୁଣ୍ଠ ପୁରେ ପାଏସ୍ଥାନ ।
ତେଣୁ ସୁଜ୍ଞ ସାଧୁଙ୍କର ପଦ୍ମରେ ନମଇ
ଶ୍ରବଣ ପଠନ କର ଯୋଗବାସୀ କହି ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ବିଷ୍ଣୁଙ୍କର ବ୍ରାହ୍ମଣ ବେଶରେ ମାଳାବତୀ ନିକଟକୁ ଗମନେ ନାମ ଊନତ୍ରିଂଶୋଽଧ୍ୟାୟଃ ।

—*—

## ତ୍ରିଂଶ ଅଧ୍ୟାୟ

### ଯମ ଏବଂ ମୃତ୍ୟୁକନ୍ୟା ମାନଙ୍କ ସହିତ ମାଳାବତୀର କଥୋପକଥନ ।

ଏହାପରେ ଯାହା ହେଲା ଶୁଣ ଦେଇମନ
ମାଳାବତୀଙ୍କୁ ପୁଚ୍ଛିଲେ ସ୍ନେହେ ସେ ବ୍ରାହ୍ମଣ ।
କୁହ କେଉଁ ରୋଗେ ମଲେ ତୁମ୍ଭ ପ୍ରାଣପତି
ଶୁଣିବା ପାଇଁକ ମୋର ବଳଅଛି ମତି ।
ଚିକିତ୍ସକ ବୋଲି ମୋର ଖ୍ୟାତିବେ ଅନ୍ତରେ
ବିଶେଷେ ସମର୍ଥ ମୁହିଁ ରୋଗ ନାଶିବାରେ ।
ମୃତ୍ୟୁର ସମାନ ରୋଗ ହୁଅଇ ଯାହାର
ଅଥବା ମରଇ ଯେହୁ କାଳ କବଳର ।
ଜ୍ଞାନବଳେ ତାହୁ ମୁହିଁ ଏକ ସପ୍ତାହରେ
ଜୀବନ ନେଇଣ ପାରେ କହୁଛି ତୁମ୍ଭରେ ।
ସ୍ଥିର ହୁଅ ମାଳାବତୀ ନ କର ରୋଦନ
ନିଶ୍ଚୟ ମୁଁ କରିପାରେ ଅସାଧ୍ୟ ସାଧନ ।
କ୍ରନ୍ଦନ କରିଲେ କିଛି ମାତ୍ର ଆଉ ନାହିଁ
ପ୍ରତୀକାର ଚିନ୍ତାକର ଆଗୋ ଚନ୍ଦ୍ରମୁହିଁ ।
ବ୍ୟାଧି ଯେଉଁପରି ପଶୁ କଣ୍ଠରେ ଦଉଡ଼ି
ବାନ୍ଧି ଇଚ୍ଛା ଅନୁସାରେ ଆଣିପାରେ ଭିଡ଼ି ।
ସେହିପରି ଜରାମୃତ୍ୟୁ ଯମ କାଳଦଣ୍ଡ
ସମସ୍ତଙ୍କୁ ଏକସ୍ଥାନେ କରିପାରେ ରୁଣ୍ଡ ।
ମୋହର ମହିମା ଏବେ ଶୁଣ ଗୋ ସୁନ୍ଦରୀ
ଦେବୀଙ୍କ ଦେହରେ ରୋଗ ନ ହେବ ଯେପରି ।
ତାହାର ଉପାୟ ମୁହିଁ ଜାଣେ ଭଲକରି
ସାବଧାନେ ଶୁଣ ତାହା ମନେ ହେତୁକରି ।
ଯେଉଁ ଯେଉଁ କାରଣରୁ ହୁଏ ଯେଉଁ ରୋଗ
ଯେତେକାଳ ରହି ଦେହେ ପୁଣି କରେ ଭୋଗ ।
ସମସ୍ତ କଥାକୁ ବୁଝି ଚିହ୍ନିଅଛି ମୁହିଁ
ସନ୍ଦେହ କରିବା ପାଇଁ କିଛି ହେଲେ ନାହିଁ ।
ଶାସ୍ତ୍ର ଅନୁସାରେ ସବୁ ନିଦାନ କାରଣ
ଯୋଗ ଆଦି କରି ବୁଝିଅଛଇ ମୁଁ ପୁଣ ।
ଯେବେ କଷ୍ଟଯୋଗେ ପ୍ରାଣୀ ଜୀବହତ୍ୟା କରେ
ଜୀଇଁବା ଉପାୟ ତାର ସେବଣ ପ୍ରକାରେ ।
ହୋଇବ ଉତ୍ତମରୂପେ ସେ ସକଳ କଥା
କହିବି ସେ ସମ୍ବନ୍ଧରେ ନ ହେବ ଅନ୍ୟଥା ।
ଏମନ୍ତେ ବ୍ରାହ୍ମଣ ମୁଖ ବଚନକୁ ଶୁଣି
ଅଳ୍ପହସି ମାଳାବତୀ ସତୀ ଶିରୋମଣି ।

ତାହାଙ୍କ ମୁଖରୁ ସ୍ୱର୍ଣ୍ଣ ବୋଇଲେ ହେ ଦ୍ୱିଜ
ଆଶ୍ଚର୍ଯ୍ୟ କଥା ଶୁଣିଲି ତୁମ୍ଭଠାରୁ ଆଜ ।
ବୟସରେ ହୋଇଅଛ ନିତାନ୍ତ ବାଳକ
କହୁଅଛ ବୁଝି ସର୍ବ ଯୋଗଶାସ୍ତ୍ରଯାକ ।
ତୁମ୍ଭେ ଯେ ପ୍ରତିଜ୍ଞା କଲ ମୋହର କାନ୍ତକୁ
ସମରଥ ହେବ ବୋଲି ଜୀଆଇଁ ଦେବାକୁ ।
ତେଣୁ ବିଶ୍ୱସୁଛି ନିଶ୍ଚେ ଜୀଇଁବେ ମୋ ଧବ ।
ମହତ ବଚନ କେବେ ଅନ୍ୟଥା ନୋହିବ ।
ମାତ୍ର ତାଙ୍କୁ ଜୀବଦାନ ଦେବାର ପୂର୍ବରେ
କହିବ କେତେକ କଥା ମୋହର ଆଗରେ ।
ଯେଉଁ ଯେଉଁ ବିଷୟରେ ହେଉଛି ସନ୍ଦେହ
ପଚାରିବି ତାହାସବୁ ଆହେ ମହାଶୟ ।
ଯେତେବେଳେ ପତି ମୋର ଜୀବନ ପାଇବେ
ଦେବଙ୍କ ସହିତେ ସଭା ମଧରେ ବସିବେ ।
ତାହାଙ୍କ ପାଶରେ ମୁହିଁ ଉଭା ହୋଇକରି
ତୁମ୍ଭଙ୍କୁ ଜଣାଇ ନ ପାରିବଟି ପଚାରି ।
ଏବେ ଯେ ଅଛନ୍ତି ବ୍ରହ୍ମା ରୁଦ୍ର ଆଦି ଦେବେ
ଅଶେଷ ଗୁଣ ଭୂଷିତ ଅଟନ୍ତି ସରବେ ।
ଆପଣ ଯେ ବେଦଶାସ୍ତ୍ରଗଣରେ ନିପୁଣ
ମୋହର ଅଧୃଷ୍ୟ ହୋଇ କେହିନାହିଁ ଜାଣ ।
ପତି ଯେବେ ଭାରିଯାକୁ ରକ୍ଷା କରିଥାଏ
ଛୁଇଁବାକୁ ତାକୁ କେହି ସମର୍ଥ ନ ହୁଏ ।
ଶାସ୍ତି ଦିଏ ଯେବେ ପତି ଆପଣା ସ୍ତ୍ରିୟକୁ
ସମର୍ଥ ନୁହଇ କେହି ରଖିବାକୁ ତାକୁ ।
ପତ୍ନୀ ପ୍ରତି ଗୃହସ୍ଥର ଯେତେ ଅଧିକାର
ତାହା ନ ପାଇବେ ବ୍ରହ୍ମା ରୁଦ୍ର ପୁରନ୍ଦର ।
ଏହିପରି ଅଟେ ସ୍ତ୍ରିୟ ପୁରୁଷଙ୍କ ଭାବ
କାମିନୀର ଭର୍ତ୍ତା କର୍ତ୍ତା ଅଟନ୍ତି ଟି ଧବ ।
ମୋକ୍ଷଣ ପାଳନକାରୀ ସର୍ବ ସୁଖଦାତା
ପତି ଏକା ରମଣୀର ଆହେ ଦେବଜ୍ଞାତା
ସ୍ୱାମୀଠାରୁ ପୂଜ୍ୟ ଅଉ ଇଷ୍ଟ ହୋଇକରି
ଜଗତରେ ନ ଥିବ କେହି ଆହେ ତପସ୍ୱୀ ।
ଯେଉଁ କନ୍ୟା ଭଦ୍ରକୁଳେ ଜନ୍ମ ହୋଇଥାଏ
ସବୁବେଳେ ପିତାଙ୍କର ଅନୁଗତା ହୁଏ ।
ସ୍ୱଭାବରେ ଦୁଷ୍ଟ ଯେହୁ ସେ ହୁଏ କୁଳଟା
ପତିର ବୋଲକୁ ଭାଙ୍ଗେ କହି ସଟାବଟା ।

ପର ପୁରୁଷରେ ଇଚ୍ଛା କଲାଇ ସେ ନିତ
ସ୍ୱାମୀର ନିନ୍ଦାକଥାରେ ଦେଇଥାଏ ମତ ।
ଆହେ ଦ୍ୱିଜ ମୁହିଁ ଉପବର୍ହଣଙ୍କ ଭାର୍ଯ୍ୟା
ଚିତ୍ରସେନ ଗନ୍ଧର୍ବଙ୍କ ଅଟଇ ତନୁଜା ।
ପତିଙ୍କ ଚରଣସେବା ବିନା ଅନ୍ୟକଥା
ମୋହର ମନକୁ ଛୁଇଁ ନଥାଏ ସର୍ବଦା ।
ତୁମ୍ଭେ ତ ବୋଲୁଛ ସବୁ ସୃଷ୍ଟିର ସଂହାର
କରିବାକୁ ବିଦ୍ୟାବୁଦ୍ଧି ଅଛଇ ମୋହର ।
ଏ ସକାଶୁ ବୋଲୁଅଛୁ ମୋଠାରେ କରୁଣା
କାଞ୍ଚିତେ କରିବାହେଉ ବିପ୍ର ମହାମନା ।
କାଳଯମ ମୃତ୍ୟୁକନ୍ୟା ମୋହର ପାଶକୁ
ଆସିବେ ଯେ ରୂପେ କର ତେମନ୍ତ କାର୍ଯ୍ୟକୁ ।
ମାଳାବତୀ ବାକ୍ୟ ଶୁଣି ସେ ବ୍ରାହ୍ମଣବର
ଯମ ମୃତ୍ୟୁ ଆଦି ସମସ୍ତଙ୍କୁ ଯେ ସତ୍ୱର ।
ଆହ୍ୱାନ କରନ୍ତେ ସର୍ବେ ଗୋଟି ଗୋଟି ହୋଇ
ଆସିଲେ ସଭା ମଧ୍ୟକୁ ଗୋଟିଏ ନ ରହି ।
ମାଳାବତୀ ସେମାନଙ୍କୁ ଦେଖି ଜଣାଇଲେ
ସଭିଙ୍କ ଅଗ୍ରତେ ମୃତ୍ୟୁକନ୍ୟାକୁ ଦେଖିଲେ ।
କୃଷ୍ଣବର୍ଣ୍ଣ ଅବୟବ ମହାଘୋର ରୂପ
ଭୟଙ୍କର ମୁଖଦିଶେ ଯେହ୍ନେ କାଳସର୍ପ ।
ବାମ ଆଉ ଦକ୍ଷିଣରେ ଷଡ଼ଭୁଜ ସାଜେ
ମନ୍ଦହାସ ଯୋଗେ ଦନ୍ତ କିରଣ ବିରାଜେ ।
ପିନ୍ଧିଅଛି ସେ କାମିନୀ ରକ୍ତ ବସନ
କଣ୍ଠଦେଶେ ଶୋଭାପାଏ ମନ୍ଦାର ସୁମନ ।
ବୟୋବତୀ ଶାନ୍ତଭାବ ପତିବ୍ରତା ସତୀ
କାଳ ପୁରୁଷ ଯେ ଅଟେ ତାର ନିଜ ପତି ।
ତାହାର ବାମ ଭାଗରେ ଚତୁଃଷଷ୍ଠୀ ସୁତା ।
ସଙ୍ଗତରେ ଯେନ ହୋଇଅଛି ଅବସ୍ଥିତା ।
ତଦନ୍ତରେ କାଳପୁରୁଷକୁ ମାଳାବତୀ
ନିରୀକ୍ଷଣ କରି ପୁଣି ଦେଖିଲା ତା ମୂର୍ତ୍ତି ।
ବିଷ୍ଣୁଙ୍କ ଅଂଶରେ ଜାତ ସେ କାଳ ପୁରୁଷ
ମହା ଉଗ୍ରରୂପ ଯେହ୍ନେ ପ୍ରଚଣ୍ଡ ହୁତାଶ ।
ଛଅ ଗୋଟି ମୁଖ ପୁଣି ଶୋଳଗୋଟି ଭୁଜ
ମଧ୍ୟାହ୍ନ ସୂର୍ଯ୍ୟଙ୍କ ପରି ଦିଶୁଅଛି ତେଜ ।
ବିକଟ ବିକୃତ ମୁଖ ଅତି ଭୟଙ୍କର
ଦେଖିବା ମାତ୍ରକେ ଦେହ କମ୍ପେ ଥରହର ।

ଛଅଗୋଟି ପାଦ ତାର ଚବଶଟି ନେତ୍ର
ପ୍ରତିମୁଖରୁ ଅଗ୍ନିଜ୍ୱାଳା ହୁଅଇ ନିର୍ଗତ ।
ସକଳ ଜୀବର କାଳ ଅଟଇ ଯେ ସେହି
ଶୁଣ ଆହେ ସଜନକ ମନକର୍ଣ୍ଣ ଦେଇ ।
ଦେବଙ୍କର ଦେବତା ସେ ସନାତନ ଦେବ
ତିନ ଭୁବନରେ ତାହାତୁଲ୍ୟ କେ ନଥିବ ।
ଦେଖଅଛି ମନ୍ଦହାସ ମୁଖରେ ପ୍ରକାଶ
ଅଙ୍ଗ ମାନରେ ସର୍ବାଙ୍ଗ ଦିଶଇ ସୁବେଶ ।
ପରମବ୍ରହ୍ମ ଯେ ନିରାକାର ନିରାମୟ
ଶ୍ରୀକୃଷ୍ଣ ଦେବଙ୍କ ଠାରେ ରହିଅଛି ଲୟ ।
ତାହାଙ୍କର ମନ୍ତ୍ର ଜପ କରି ହୃଦଗତେ
ଅନାଇ ରହିଲେ ତାଙ୍କୁ ଥିଲେ ଯହିଁ ସେଥେଁ ।
ଏଥିଅନ୍ତେ ମାଳାବତୀ ବ୍ୟାଧିକୁ ଅନାଇ
ଦେଖିଲେ ସବୁଠୁଁ ଅତି ବୃଦ୍ଧ ଦିଶେ ସେହି ।
ତଥାପି ଆପଣା ମାତା ସ୍ତନ ମଧ୍ୟୁ କ୍ଷୀର
ପିଉଛନ୍ତି ବ୍ୟାଧିମାନେ ହରଷ ଅନ୍ତର ।
ତଦନ୍ତରେ ସତୀ ମାଳାବତୀ ଆଉଥରେ
ଅନାଇ ଦେଖିଲା ଜନୁପତିଙ୍କ ପାଖରେ ।
ସ୍ଥୂଳପଦ କୃଷ୍ଣବର୍ଣ୍ଣ ଧର୍ମ ପରିପୂର୍ଣ୍ଣ
ଧ୍ୟାନ କରୁଛନ୍ତି ହୃଦେ କୃଷ୍ଣ ନାରାୟଣ ।
ପୁଣି ବଇଷ୍ଣବ ମନ୍ତ୍ର ଜପ କରୁଛନ୍ତି
ଧର୍ମ ଅଧର୍ମ ବିଶ୍ୱର କର୍ତ୍ତା ସେ ଅଟନ୍ତି ।
ଅରଜିଲା କର୍ମ ପ୍ରାଣୀମାନଙ୍କୁ ଦିଅନ୍ତି
ପାପ ପୁଣ୍ୟ ଆଦି ସେହୁ ତୁଳନା କରନ୍ତି ।
ଏହିପରି ସମସ୍ତଙ୍କୁ ଦେଖି ମାଳାବତୀ
ଯମଙ୍କ ପାଶକୁ ଆଗ ଯାଇ ମହାସତୀ ।
ପ୍ରହୃଷ୍ଟ ମନରେ ତାଙ୍କୁ କହିଲା ବଚନ
ବୋଇଲା ହେ ଧର୍ମବନ୍ତ ପୁରୁଷ ପ୍ରଧାନ ।
ଧାର୍ମିକ ପଣରେ କେହି ନାହିଁ ତବସରି
ତୁମ୍ଭେ ପାପୀତାପି ମାନଙ୍କର ଦଣ୍ଡକାରୀ ।
ଅକାଳରେ କିମ୍ପା ନେଲ ମୋର ପତିପ୍ରାଣ
ମୋହର ଅଗ୍ରତେ ତାହା କରନ୍ତୁ ବଖାଣ ।
ତାହାଶୁଣି ଯମରାଜା ବୋଇଲେ ଗୋ ଦେବୀ
ଶୁଣ ତୁମ୍ଭେ ସାବଧାନେ ଯାହା ମୁଁ କହିବି ।
ଏ ଜଗତମଧ୍ୟେ କାର କାଳ ନ ପୂରିଲେ
ମରଣକୁ ନ ପାଇବ ଜାଣିଥାଅ ଭଲେ ।

ଈଶ୍ୱରଙ୍କ ଆଦେଶ ମୁଁ କରଇ ପାଳନ
ସମୟ ହୁଅଇ ଯାର ନିଏ ତାର ପ୍ରାଣ ।
କିନ୍ତୁ ତିନେମାସ ଆୟୁ ରହିଥିବ ଯାର
କଦାପି ପରାଣ ନେଇ ନପାରଇ ତାର ।
ଏମନ୍ତ ଆଦେଶ ମୋତେ ପ୍ରଭୁଛନ୍ତିଦେଇ
ଯାର କାଳ ପୂରେ ତାକୁ କ୍ଷଣେ ନ ରଖଇ ।
ଆୟୁଷ ଶେଷ ହେବାର ଜାଣି ମୃତ୍ୟୁବାଳା
ଆଗଯେଉଁ ଜନ୍ତୁରଟି ଚପିଥାଏ ଗଳା ।
ତାର ପଛେ ଯାଇ ମୁହିଁ ତାହାର ଜୀବନ
ସଂହାର କରଇ ତାହା ଅଟଇ ବିଧାନ ।
ଏବେତ ତୁମ୍ଭର ଆଗେ ରହିଛନ୍ତି ସେହି
ପତିର ଏମନ୍ତ କାର୍ଯ୍ୟ କରନ୍ତି କମାଇ ।
ଯମଙ୍କର ଏ ବଚନ କରିଣ ଶ୍ରବଣ
ମୃତ୍ୟୁର କନ୍ୟାକୁ ସତୀ ପୁଛିଲା ତକ୍ଷଣ ।
ଶୁଣ ୨ ମୃତ୍ୟୁ କନ୍ୟା ବଚନ ମୋହର
ତୁମେତ ଅବଳାଜାତି କହିବ କି ଗିର ।
ସ୍ୱାମୀର ବିରହେ ନାରୀ ଯେ ବେଦନା ପାଏ
ଅନୁଭବେ ଜାଣିଥିବ ତୁମ୍ଭେତ ନିଶ୍ଚୟେ ।
ମୁହିଁ କହୁଅଛି କିମ୍ପା ତୁମ୍ଭେ ମୋ ପତିରେ
ନେଇଗଲ ବୁଝାଇଣ କୁହ ମୋ ଆଗରେ ।
ସତୀର ଏତେକ ବାକ୍ୟ କରିଣ ଶ୍ରବଣ
ମୃତ୍ୟୁ କନ୍ୟା ଧୀରେ ୨ ବୋଇଲେ ବଚନ ।
ମୋର ତିଳେ ଦୋଷ ନାହିଁ ଶୁଣ ଗୋ ସୁନ୍ଦରୀ
ବିଧିର ଆଦେଶେ ମୁହିଁ ସର୍ବ କାର୍ଯ୍ୟ କରି ।
ମୋହର ଉପରେ ସେହୁ ଦେଇଛନ୍ତି ଭର
କୁହ ଧନୀ ଏଥେଁ କେଉଁ ଦୋଷ ଅଛି ମୋର ।
ମୃତ୍ୟୁ ଯଦି ହୁଏ ମୋର ତହିଁ ସୁଖ ଗଣି
ଏ ସମସ୍ତ ଦେଖି ପୁଣି ନାରୀ ସୁ ବଦନୀ ।
ପତି ଧୃତ ଭାଗ୍ୟେ ଯାହାଥାଏ ତାହାହୁଏ
ମୋହର ମରଣ ଶ୍ରେୟ ଜାଣୁଛି ହୃଦୟେ ।
କାଳର ଆଦେଶେ ମୁହିଁ ସର୍ବକାର୍ଯ୍ୟ କରେ
ପୂର୍ବଗତେ ଭ୍ରମୁଛନ୍ତି ସେ କାଳ ଆଜ୍ଞାରେ ।
ଯଦ୍ୟପି ବିଶ୍ୱାସ ଏଥେଁ ନ ହୁଏ ତୁମ୍ଭର
କାଳକୁ ପଚାର ବୁଝ ଏ ସଭା ମଧ୍ୟର ।
ଏତେକ ବଚନ ଶୁଣି ମାଳାବତୀ ସତୀ
କାଳକୁ ସମ୍ବୋଧି ଧୀରେ ବୋଇଲେ ଭାରତୀ ।

ବୋଇଲେ ମୋ ନମସ୍କାର ତୁମ୍ଭେ ସେନାକର
ତୁମ୍ଭେ ଦୟାମୟ ଅଟ ଧର୍ମ ଅବତାର ।
ନିବେଦନ କରେ ଦେବ ତୁମ୍ଭର ଚରଣେ
ମୋ ପତିଙ୍କୁ ନେଲେ କିମ୍ପା ଯମ ମୁଁ ସଦନେ
ସତୀର ବଚନ କର୍ଣ୍ଣେ କରିଣ ଶ୍ରବଣ
ଉତ୍ତରେ ବୋଇଲେ କାଳ ମଧୁର ବଚନ ।
କିବା ମୂର୍ତ୍ତି କିବା ଯମ କିବା ବ୍ୟାଧିଗଣ
କିବା ମୃତ୍ୟୁ କନ୍ୟା ଆଦି ଯେତେ ୨ ଜନ ।
କାହିଁ ଶକ୍ତି କ୍ଷମତା ନାହିଁ ଜାଣିବେ କାହାର
ପରମ ବ୍ରହ୍ମ ଅଟନ୍ତି ସର୍ବ ମୂଳାଧାର ।
ତାହାଙ୍କ ଆଦେଶ ସର୍ବେ ଏକାନ୍ତ ଅନ୍ତରେ
ନିରନ୍ତରେ ଭ୍ରମୁଥାନ୍ତି ଜଗତ ମଧ୍ୟରେ ।
ମରିଅଛନ୍ତି ତବ ପତି କେବଣ କାରଣେ
ଆମ୍ଭଙ୍କୁ ମା ଦୂଷୁ ଅଛ ନ ଜାଣେ କେ ଜଣେ
ପତିର ଜୀବନ ତୁମ୍ଭେ ମୋଠାରୁ ବାଞ୍ଛୁଛ
ଏଥିରେ କୌଣସି ଫଳ ନାହିଁ ମନେ ମାଣ ।
ଯାହାଙ୍କ ଇଚ୍ଛାରେ ସର୍ବେ ହୋନ୍ତି ଆତଯାତ
ଯାହାଙ୍କ ଇଚ୍ଛାରେ ତିନି ଭୁବନ ସୃଜିତ ।
ଯାହାଙ୍କ ଆଜ୍ଞାରେ ବାୟୁ ମନ୍ଦ ୨ ବହେ
ଯାହାଙ୍କ ଆଜ୍ଞାରେ ଅଗ୍ନି ନିଜଗତ ବହେ ।
ଯାହାଙ୍କ ଆଜ୍ଞାରେ ବ୍ରହ୍ମା ସୃଷ୍ଟି ସରଜଇ
ଯାହାଙ୍କ ଆଦେଶ ମତେ ସାଗର ବନ୍ଧଇ ।
ଯାହାଙ୍କ ଆଦେଶେ ବିଷ୍ଣୁ ବ୍ରହ୍ମାଣ୍ଡ ପାଳନ୍ତି
ଯାହା ଆଜ୍ଞାରେ ଶଙ୍କର ସର୍ବ ସଂହାରନ୍ତି ।
ଯା ଆଜ୍ଞାରେ ସୂର୍ଯ୍ୟଚନ୍ଦ୍ର ସଦା ଭ୍ରମୁଥାଇ
ଯାହାର ଆଜ୍ଞାରେ ଇନ୍ଦ୍ର ବରଷା କରଇ ।
ଯାହାର ମାୟାରେ ମୁଗ୍ଧ ସର୍ବ ଜୀବଗଣ
ପ୍ରକୃତି ସତତ ଖ୍ୟାତ ଯାହାର କାରଣ ।
ବ୍ରହ୍ମା ବିଷ୍ଣୁ ନିରନ୍ତର ଯା ନାମ ଗାଆନ୍ତି
ମୂଳାଧାର ଏକମାତ୍ର ସେ ପ୍ରଭୁ ଅଟନ୍ତି ।
ସେହି ଦୟାମୟ କୃପାନିଧି ନିରଞ୍ଜନ
ତାହାଙ୍କ ଚରଣେ ନିଅ ଏକାନ୍ତ ଶରଣ ।
ତାହାଙ୍କ କରୁଣା ବଶେ ତବ ପତି ସତୀ
ଅବଶ୍ୟ ଜୀବିତ ହେବେ କହିଲୁ ଧାରଣି ।
ତାହାଙ୍କ ଆଦେଶେ ମୁହିଁ ଭ୍ରମେ ଅନୁକ୍ଷଣ
ମୋହର କ୍ଷମତା ତିଳେ ନାହିଁ ଦେଖାଜାଣ ।

ଏତେକହି ମହାକାଳ ବିରତ ହୋଇଲେ
ବିପ୍ରରୂପୀ ଜନାର୍ଦ୍ଦନ ତକ୍ଷଣେ ବୋଇଲେ ।
ଏ ବ୍ରହ୍ମବୈବର୍ତ୍ତ ଗାଥା ଅତି ମନୋହର
ଶୁଣିଲେ ସେ ଜନ ତରେ ଏ ଭବ ସାଗର ।
ହରିଙ୍କ ଯାବତ ଲୀଳା କିଏ ବୁଝିପାରେ
ମାୟାବଳେ ମୁଗ୍ଧ କରି ଅଛନ୍ତି ସଂସାରେ ।
ମାୟାଜାଲ କାଟିପାରେ ସଂସାରେ ଯେ ଜନ
ସେ ଜନ ପରମ ଭକ୍ତି ଲଭେ ଅନୁକ୍ଷଣ ।
ପୁଣ୍ୟଫଳେ ହରିଭକ୍ତି ଜନମେ ଅନ୍ତରେ
ପରମ ବୈଷ୍ଣବ ହୋନ୍ତି ସେହିଫଳେ ନରେ ।
ସହଜେ ମିଳଇ ନ ହୁଏ ଶ୍ରୀହରିଙ୍କ ଭକ୍ତି
ଜାଣିବେ ତାପସଗଣ ମନେ ଏହା ଶନ୍ତି ।
ଲକ୍ଷ ଲକ୍ଷ କୋଟି କୋଟି ଜନଙ୍କ ଭିତରେ
ଦୈବବଳେ ଜଣେ କେହି ଭକ୍ତି ଲଭ କରେ
ହିଂସାବାଦ ପାସୋରିଣ ରହେ ଶୁଦ୍ଧମନେ
ହରିଙ୍କ ଚରଣେ ମନରଖି ନିଶିଦିନେ ।
ସର୍ବ କର୍ମେ ଅନାଦର ଯେଉଁ ଜନ କରେ
ଭାଗ୍ୟବଶେ ସେହୁ ହରି ଭକ୍ତି ଲଭ କରେ ।
ସେଇ ଏକା କୃଷ୍ଣଭକ୍ତ ସଂସାର ମଧ୍ୟରେ
ତାହାଙ୍କୁ ଦେଖିଲେ ପୁଣ୍ୟ ହୃଦରେ ସଞ୍ଚରେ ।
ଦେଖିଲେ ସମସ୍ତ ପାପ ହୁଅଇ ଖଣ୍ଡନ
ଅନ୍ତର ପବିତ୍ର ହୁଏ ଶାସ୍ତ୍ରର ବଚନ ।
ବୈଷ୍ଣବ ଜନର ଯଦି ଦରଶନ ହୁଏ
ଭକ୍ତିଭରେ ତା ପଦୁକ ବନ୍ଦିବେ ନିଶ୍ଚୟେ ।
ହରିସମ ଜ୍ଞାନ ସେହୁ ଲଭିବେ ଅନ୍ତରେ
ଅତ୍ୟନ୍ତ ପବିତ୍ର ହୃଦ ହୋଇବ ତାହାରେ ।
ପୁରାଣେ ରହିଛି ଦେଖ ନାନା ଉପାଖ୍ୟାନ
ମୂଳ ଅଟେ ହରିଭକ୍ତି ଆହେ ମତିମାନ ।
ହରିଭକ୍ତି ଏ ଜଗତେ ଅଟେ ମୂଳ ମାତ୍ର
ଭଜିଲେ ସକଳ ପାପ ହୋଇବ ଦୂରିତ ।
ପ୍ରାଣ ଯିବା ସମୟରେ ଯେବେ କେହିଥରେ
ଶ୍ରୀ ହରିଙ୍କ ନାମ ମୁଖେ ଧରି ପ୍ରାଣ ହାରେ ।
ତାହା ପୁଣ୍ୟ କିବା ମୁହିଁ କହିବ ଗାୟନ
ସ୍ୱୟଂ ବେଦବର କହି ନ ପାରେ ବର୍ଣ୍ଣନ ।
ଯମଦୂତମାନେ ତାର ପାଶ ନ ଯାଆନ୍ତି
ବିମାନେ ବସାଇ ବିଷ୍ଣୁଲୋକେ ନେଇଯାନ୍ତି ।

ବୈକୁଣ୍ଠ ଭୁବନେ ସେହୁ ଲଭନ୍ତି ଆଶ୍ରୟେ
ଲଭନ୍ତି ଅନନ୍ତ ସୁଖ ମୁକ୍ତେ କହନ୍ତୁହେଁ ।
ସେ ହରି ଭକ୍ତଙ୍କ ପାଦେ ରହୁ ମୋର ମନ
ଗୀତ ଛନ୍ଦେ ବଖାଣଇ ଅଧମ ମୋହନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଯମ ଓ ମୃତ୍ୟୁ କନ୍ୟାମାନଙ୍କ ସହ ମାଳାବତୀର କଥୋପ କଥନେ ନାମ ବିଂଶୋଽଧ୍ୟାୟଃ



## ଏକବିଂଶ ଅଧ୍ୟାୟ

### ବ୍ରାହ୍ମଣ ବେଶି ହରି ମାଳାବତୀ ସହିତ ରୋଗ ବୃତ୍ତାନ୍ତ କଥୋପ କଥନ

ସେ ସୁନ୍ଦରୀ ମାଳାବତୀ ମୁଖରୁ ଅନାଇଁ
ବିପ୍ରବେଶି ନାରାୟଣ ବୋଇଲେକ ତହିଁ ।
କାଳଯମ ମୃତ୍ୟୁକନ୍ୟା ଆଉ ବ୍ୟାଧିଗଣ
ସାକ୍ଷାତେ ଦେଖିଲେ ସତୀ ଆପଣା ନୟନ ।
ଆଉ ଯଦି ଇଚ୍ଛାଥାଏ କହି ପୁଚ୍ଛିବାରେ
ନିର୍ଭୟ ଚିତ୍ତରେ ତୁମ୍ଭେ ପଚାର ମୋଠାରେ ।
ଏତେକ ବଚନ ଶୁଣି ମାଳାବତୀ କହେ
ଶୁଣ ୨ ମୋର ବାକ୍ୟ ଆହେ ବିପ୍ରରାୟେ ।
କେଉଁ କାରଣରୁ ବ୍ୟାଧି ପ୍ରାଣୀଙ୍କୁ ନାଶଇ
କେଉଁ ପ୍ରକାରେ ଜୀବଗଣେ ତ୍ରାଣ ପାଇ ।
ଏହି ସମସ୍ତ ବିସ୍ତାରି କୁହ ମୋ ଅଗ୍ରତେ
ଯାହା ମନକୁ ପାଇଲି ପଚାରିଲି ଏଥେ ।
ସହଜେ ଅବଳା ମୁଁ ତ ନାହିଁ ମୋର ଜ୍ଞାନ
ବିସ୍ତାରି ସକଳ ଗାଥା କରନ୍ତୁ ବର୍ଣ୍ଣନ ।
ମାଳାବତୀ ବାକ୍ୟ ଶୁଣି ବୋଲନ୍ତି ଶ୍ରୀହରି
ଆମ୍ଭର ବଚନ ଗୋଷି ଶୁଣ ହେତୁ କରି ।
ଯେଉଁଜନ ସ୍ୱରବେଦ ସୃଷ୍ଟି କରିଛନ୍ତି
ଭକ୍ତିଭରେ ତାର ପାଦତଳେ କରେ ସ୍ତୁତି ।
ପ୍ରଥମେତ ପ୍ରଜାପତି ଛନ୍ତି ସମ୍ମୁଖରେ
ସୃଷ୍ଟି ଯହିଁ ସ୍ୱରବେଦ ଶୁଣ ଏ ଠାବରେ ।
ସ୍ୱର ବେଦ ଅର୍ଥ ଚିନ୍ତା କରି ପଦ୍ମାସନ
କରିଲେକ ଶେଷେ ଆୟୁର୍ବେଦର ସୃଜନ ।
ସାଦରେ ଅର୍ପିଲେ ତାହା ଭାସ୍କରଙ୍କ କରେ
ପଢ଼ିଲେ ଭାସ୍କର ତାହା ସାଦର ଅନ୍ତରେ ।
ତାହାଦେଖି କରିଲେ ସେ ସଂହିତା ନିର୍ମାଣ
ଶିଷ୍ୟଗଣ ହାତେ ତାହା କରିଲେ ପ୍ରଦାନ ।
ଧନ୍ୱନ୍ତରୀଆଦି କରି ଶିଷ୍ୟ ଷୋଳଜଣ
ସାଦରେ ସଂହିତା ସେ କରିଲେ ଅଧ୍ୟୟନ ।

ଷୋଳ ଜଣ ଷୋଳ ଖଣ୍ଡି ଗ୍ରନ୍ଥ ବିରଚିଲେ
ତାହାଙ୍କ ନାମ ଶ୍ରବଣ କର ସବେ ହେଳେ ।
ଆଦ୍ୟେ ଧନ୍ୱନ୍ତରୀ କଲେ ଚିକିତ୍ସା ସଂଗ୍ରହ
ସଂସାର ଭଞ୍ଜନ ବିରଚିଲେ ମହାଶୟ ।
ଯେତେ ଆୟୁର୍ବେଦ ଗ୍ରନ୍ଥ ନଜରେ ପଡ଼ଇ
ସେହୁ ସମସ୍ତର ମୂଳ ଧନ୍ୱନ୍ତରୀ ହୋଇ ।
ପରମ ଧାର୍ମିକ ସେହୁ ମହା ମତିମାନ
ଚିକିତ୍ସା ବିଷୟେ ତାହାଙ୍କର ବହୁ ଜ୍ଞାନ ।
ବ୍ୟାଧିର ବିନାଶ ବୈଦ୍ୟ ଯେ କରି ପାରନ୍ତି
ମୃତ ଲୋକେ ଜୀବ ଦେବାନାହିଁ ତାଙ୍କ ଶକ୍ତି ।
ଯେତେ ପ୍ରକାର ବ୍ୟାଧି ବିଧିର ସୃଜନ
ଜ୍ୱର ହୋଇଛି ତା ମଧ୍ୟେ ଅତ୍ୟନ୍ତ ଭୀଷଣ ।
ଶିବ ଭକ୍ତ ମହା ଯୋଗୀ ନାମ ଶିବଜ୍ୱର
ନିଷ୍ଠୁର ନିର୍ଦ୍ଦୟ ସେହୁ ଅତି ଭୟଙ୍କର ।
ତିନ ପାଦ ତିନମୁଣ୍ଡ ପୁଣି ଛଅ ହାତ
ନଅ ଚକ୍ଷୁ ଭସ୍ମବର୍ଣ୍ଣ ଅତ୍ୟନ୍ତ ବିକୃତ ।
ସୁଯୋଗ ପାଇଲେ ସେହୁ କେବେଁ ନ ଛାଡ଼ଇ
କାଳାନ୍ତକ ଯମ ସମ ଦେହେଁ ଆକ୍ରମଇ ।
ବାୟୁପିତ୍ତ କଫ ପୁଣି ମନ୍ଦାଗ୍ନି ଜନମେ
ମନ୍ଦାଗ୍ନି ହୋଇଲେ ଜ୍ୱର ଜାଣିବେକ ମନେ ।
ଚତୁର୍ବିଧ ଜ୍ୱର ସେହୁ ବିଦିତ ସଂସାର
ବାତ ପିତ୍ତ କଫ ଜାତ ତ୍ରିଦୋଷ ଆକର ।
ଏହା ଭିନ୍ନ ପାଣ୍ଡୁ ଆଦି କରି ବ୍ୟାଧିଗଣ
ଚତୁଃ ଷଷ୍ଠୀ ସଂଖ୍ୟା ତାର ଶାସ୍ତ୍ରର ବଚନ ।
ମୃତ୍ୟୁ କନ୍ୟା ଏ ସଭିଙ୍କ ଜନନୀ ଅଟଇ
ଆଉଏକ ଜ୍ୱର ସହୋଦର ନାମ ହୋଇ ।

ସହୋଦର ଗଣସଙ୍ଗେ ମିଳି ନିରନ୍ତର
ଭ୍ରମଣ କରେ ସେ ଜ୍ୱର ସଂସାର ଭିତର ।
ସୁଯୋଗ ପାଇବା ମତେ ସେହୁ ନ ଛାଡ଼ଇ
ରୋଗୀ ଉପରେ ଆକ୍ରମିଣ ସେ ବସଇ ।
ନେତ୍ର କର୍ଣ୍ଣ ପାଦ ଆଉ ମସ୍ତକ ଉପରେ
ଶୀତଳ ଲଗାଏ ଯେହୁ ପ୍ରାତ ଜାତମାତ୍ରେ ।
ବସନ୍ତେ ଭ୍ରମଣ କରେ ବହ୍ନିର ସେ ବନ
ଯୁବତୀ ସହିତ କାମ୍ୟା ଯେ କରେ ରମଣ ।
ଶୀତଳ ଜଳରେ ସ୍ନାନ ଯେଉଁଜନ କରେ
ଚନ୍ଦନ ଲେପଇ ଯେହୁ ଆପଣା ଶରୀରେ ।
ଗ୍ରୀଷ୍ମ କାଳେ ଅପରାହ୍ନେ କରଇ ଭ୍ରମଣ
ଶୀତଳ ବାୟୁ ଆନନ୍ଦେ କରେ ଆହରଣ ।
ବର୍ଷାକାଳେ ଉଷ୍ଣୋଦକେ ଯେହୁ କରେ ସ୍ନାନ
ସର୍ବଦା ଭୋଜନ କରେ ସମାନ ସମାନ ।
ଶରତ୍ କାଳେ ଆତପରେ ଯେ ନକରେ ଭ୍ରମଣ
ଦିନ କାଟେ ଉପୁଅନ୍ନ କରଇ ଭୋଜନ ।
ଶିଶିର କାଳରେ ବସ୍ତ୍ର ଢାଙ୍କେ କଳେବର
ସଦ୍ୟୋମାଂସ ନବାନ୍ନ ଖାଏ ଯେଉଁ ନର ।
ପ୍ରତିଦିନ ଯେହୁ ଘୃତ ଦୁଗ୍ଧ ପାନ କରେ
ଯୁବତୀ କାମିନୀ ସହ ସମୟେ ବିହରେ ।
କ୍ଷୁଧା କାଳେ ଉତ୍ତମାନ୍ନ ଯେ କରେ ଆହାର
ତାମ୍ବୁଳେ ଆସକ୍ତ ସଦା ମାନସ ଯାହାର ।
ପ୍ରତିଦିନ ନବନୀତ କରଇ ଭୋଜନ
ଇନ୍ଦ୍ରିୟ ନିଗ୍ରହ ସଦା କରେ ସେଇଜନ ।
ଜ୍ୱର ବ୍ୟାଧି ସେ ଜନଙ୍କୁ କଦାପି ନ ଘେରେ
କହିଲୁ ନିଗୂଢ଼ ତତ୍ତ୍ୱ ତୁମ୍ଭ ଅଗ୍ରତରେ ।
ଯେଉଁ ଜନ ରତ ହୁଏ ବୃଦ୍ଧା ରମଣୀରେ
ଅତିଶୟ ରତ ହୁଏ ଯେ ବାସି ଦଧିରେ ।
ରଜନୀରେ ଦଧି ଖାଏ ଯେଉଁ ମୂଢ଼ ନର
ବେଶ୍ୟାଳୟକୁ ଗମନ କରେ ବାର ବାର ।
ରଜସ୍ୱଳା ନାରୀସହ ଯେ ବିହାର କରେ
ବେଶ୍ୟା ଘରେ ଅନ୍ନ ଭୁଞ୍ଜେ ଯେହୁ ଆନନ୍ଦରେ
ଜରା ଆଉ ବ୍ୟାଧି ଆସି ତାହାକୁ ଘେରଇ
ଜ୍ୱର ସକଳେ ଏହା କହିଲ ବୁଝାଇ ।
ଯେଉଁଥିରେ ପାପ କର୍ମ ହୁଏ ଆଚରଣ
ତା ଦେଖେଁ ଏ ବ୍ୟାଧି ଜନ୍ମେ ଶାସ୍ତ୍ରର ବଚନ ।
କିନ୍ତୁ ହରିନାମ ଯେହୁ କୃଷ୍ଣରେ ଭଜଇ
ଗୁରୁ ଆଉ ଅତିଥିକୁ ଯେ ସେବା କରଇ ।
ଗରୁଡ଼ ଦର୍ଶନେ ଯଥା ଭୁଜଙ୍ଗ ପଳାଏ
ସେଜନ ନିକଟେ ବ୍ୟାଧି ନ ପଶଇ ଭୟେ ।
ସେ ମହାତ୍ମା ଅଙ୍ଗେ ବ୍ୟାଧି ପଶି ନ ପାରଇ
ସକଳ ରୋଗର ମୂଳ ଜ୍ୱର ଯେ ଅଟଇ ।
ପିତ୍ତ କଫ ଆଉ ବାୟୁମାନ ବୃଦ୍ଧ ହେଲେ
ଜ୍ୱରର ଉତ୍ପତ୍ତି ହୁଏ ଜାଣିବେ ସକଳେ ।
ପିତ୍ତ କଫ ବାୟୁ ଯେହୁ ଦମନ କରଇ
ଆପଣ ଶରୀର ପ୍ରତି ଦୃଷ୍ଟି ରଖିଥାଇ
ଏମନ୍ତ ଅଟଇ ରୋଗମାନଙ୍କ କାରଣ
ତାଙ୍କୁ ଦୋଷ ଦେବା ଦେବୀ ଅଟେ ଅକାରଣ ।
ଆବର ଏକଇ କଥା ଶୁଣ ଦେଇ ମନ
ଯେବଣ ରୋଗେ ମରିଛି ତବ ପ୍ରାଣଧନ ।
ତାହା ବିସ୍ତାରିଣ ମୁହିଁ କହୁଛି ବୁଝାଇ
ମନକର୍ଣ୍ଣଦେଇ ବାରେ ଶୁଣ ବରମୁହିଁ ।।
ଯେଉଁଥିରେ ତବ ପତି ପାଇବ ଜୀବନ
ତାହାର ଉପାୟ ଆମ୍ଭେ କହିବା ଏକ୍ଷଣ ।
ତକ୍ଷଣ ଆନନ୍ଦେ ମାଳାବତୀ ବୋଲେ ଗିର
ଆହେ ଦୟାମୟ ବିପ୍ର ଶୁଣ ମୋ ଉତ୍ତର ।
ମୋର ପତି ଯାଇଥିଲେ ଅମର ସଭାକୁ
ଅପ୍ସରାଙ୍କ ରୂପଦେଖି ଲୋଭକଲେ ତାଙ୍କୁ ।
ଦେଖି ଅଭିଶାପ ଦେଲେ ତାହାଙ୍କୁ ବିଧାତା
ସେହି ଯୋଗେ ପ୍ରାଣ ବିନାଶିଲେ ମୋର ଭର୍ତ୍ତା
ଭାଗ୍ୟବଶେ ଲଭିଲି ମୁଁ ତବ ଦରଶନ
ବଞ୍ଚାଅ ପତିଙ୍କୁ ମୋର ଧରୁଛି ଚରଣ ।
ସତୀର ଏତେକ ବାକ୍ୟ କରିଣ ଶ୍ରବଣ
ଦେବତାମାନଙ୍କ ପାଶେ ଗଲେ ଜନାର୍ଦ୍ଦନ ।
କ୍ଷେତ୍ର ମୋହନ କହଇ ଶୁଣ ସୁଜ୍ଞନର
ଶ୍ରୀହରିଙ୍କ ଲୀଳା ଅଟେ ଅତି ଚମତ୍କାର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ମାଳାବତୀସହିତ
ବ୍ରାହ୍ମଣବେଶି ହରିଙ୍କର କଥୋପକଥନେ ନାମ ଏକବିଂଶୋଽଧ୍ୟାୟଃ ।

# ଦ୍ୱାବିଂଶ ଅଧ୍ୟାୟ

## ଉପବର୍ହଣର ପୁନର୍ଜୀବନ ପ୍ରଦାନାର୍ଥେ ଦେବଗଣଙ୍କୁ ଶ୍ରୀକୃଷ୍ଣଙ୍କର ଆଦେଶ

ସୌତି ବୋଇଲେକ ଶୁଣ ୨ ତପୋଧନ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇ ମହାନ ।
ଶ୍ରଦ୍ଧା ଆଉ ଭକତିରେ ଯେ ଜନ ପଢ଼ଇ
ଅନ୍ତକାଳେ ଯାଇ ବଇକୁଣ୍ଠରେ ବସଇ ।
ଏହାପରେ ଆନଗାଥା ଶୁଣ ଦେଇ ମନ
ଯେମନ୍ତ ଭିଆଣ କଲେ ପ୍ରଭୁ ଭଗବାନ ।
ବିପ୍ରରୂପୀ ନାରାୟଣ ମାୟା ଭିଆଇଲେ
ତାହାଙ୍କୁ ଦେବତା ମାନେ ଚିହ୍ନି ନ ପାରିଲେ
ଅବଶେଷେ ଦେବଗଣେ କରି ସମ୍ବୋଧନ
କହିଲେକ ବିପ୍ରରୂପୀ ଦେବ ନାରାୟଣ ।
ଶୁଣ ୨ ଦେବଗଣେ ମୋହର ବଚନ
ଉପବର୍ହଣ ଭାର୍ଯ୍ୟାକୁ ଦେଖନ୍ତୁ ନୟନ ।
ପତି ଶୋକେ କାନ୍ଦେ ଚିତ୍ରରଥର କୁମାରୀ
ପତି ଭିକ୍ଷା ମାଗେ ଅତି ଆକୁଳରେ ଗୋରୀ ।
ସମସ୍ତେ ଉଚିତ ଯାହା କରନ୍ତୁ ସକଳେ
ପତି ଶୋକେ କାନ୍ଦେ ସତୀ ଅନ୍ତର ବ୍ୟାକୁଳେ ।
ଅଚଳନ୍ତି ଅଭିଶାପ କରିବେ ଅର୍ପଣ
ତୁମ ହିତ ହେତୁ ମୋର ଅଟେ ଆଗମନ ।
ପତି ପାଇବା ନିମନ୍ତେ ପ୍ରବୋଧ ବଚନେ
ଶାନ୍ତ୍ୱନା କରି ରଖିନ୍ତୁ ତାଙ୍କୁ ଏହିସ୍ଥାନେ ।
ଏଥି ପୂର୍ବେ ସମ୍ମିଳିତ ହୋଇ ସର୍ବ ଦେବେ
ହରିଙ୍କ ସଦନେ ଯାଇଥିଲେ ଏଥି ପୂର୍ବେ ।
ପ୍ରଭୁ ଆସିବାକୁ କହିଥିଲେ ଶୂନ୍ୟବାଣୀ
କିମ୍ପା ନ ଆସିଲେ ଏ ପର୍ଯ୍ୟନ୍ତ କମ୍ବୁପାଣି ।
ଏତେ ବୋଲି ମୌନଭାବ ଧରିଲେ ବ୍ରାହ୍ମଣ
ତାହାଙ୍କୁ ସମ୍ବୋଧି ବୋଇଲେକ ପଦ୍ମାସନ ।
ଶୁଣ ୨ ଆହେ ବିପ୍ର ବଚନ ଆମ୍ଭର
ମମ ପୁତ୍ର ଅଟେ ଏହି ଗନ୍ଧର୍ବ କୁମାର ।
ଅଭିଶାପେ ଜନମିଛି ଗନ୍ଧର୍ବ ଭବନେ
ଅଭିଶାପେ ମରିଅଛି ଯୋଗବଳ ସ୍ୱନେ ।
ନିରୂପିତ କାଳ ହୋଇନାହିଁ ଯେ ପୂରଣ
ସହସ୍ରେ ବରଷ ସ୍ୱାର ରହିଅଛି ପ୍ରାଣ ।
ହରିଙ୍କ ପ୍ରସାଦେ ଏହିକ୍ଷଣି ଏ ପୁତ୍ରକୁ
ବଞ୍ଚାଇଣ ଦେବ ସତ୍ୟ କହିଲି ତୁମ୍ଭଙ୍କୁ ।
ଏବେ ଏକ କଥାକୁ ହେ କରନ୍ତୁ ଶ୍ରବଣ
ସକଳ ଘଟରେ ବିଜେ ଜଗତ କାରଣ ।
ତେଜୋମୟ ପରମାତ୍ମା ସେହୁ ସନାତନ
ମୂର୍ତ୍ତି ନାହିଁ ତାହାଙ୍କର ଶୁଣ ଦେଇ ମନ ।
ଭକ୍ତ ଉପରେ କରନ୍ତି କରୁଣା ପ୍ରକାଶ
ଶରୀର ଧରନ୍ତି ସମୟରେ ଜଗଦୀଶ ।
ସର୍ବବ୍ୟାପି ହୋଇ ରହିଅଛନ୍ତି ଭୁବନେ
ଏଣୁ ହେତୁ ବିଷ୍ଣୁ ବୋଲି ଡାକେ ସର୍ବଜନେ ।
ତାହାଙ୍କ ଆଦେଶେ ମୂର୍ତ୍ତି କରଇ ସୃଜନ
ବିନାଶ କରନ୍ତି ପୁଣି ଦେବ ପଞ୍ଚାନନ ।
ତାହାଙ୍କ ଆଦେଶ ଶିରେ କରିଣ ଧାରଣ
ଧର୍ମସାକ୍ଷୀ ଧର୍ମ ଦେବ କରନ୍ତି ଶାସନ ।
ତାହାଙ୍କ ଆଦେଶେ କାଳ ସମସ୍ତ ଅନ୍ତରେ
ହବାନଣି କରେ କାର୍ଯ୍ୟ ଏ ତିନ ସଂସାରେ ।
ଏତେ ବୋଲି ମୌନ ହେଲେ ଦେବ ପଦ୍ମାସନ
ବିପ୍ରଙ୍କୁ ସମ୍ବୋଧି ପୁଣି କହେ ପଞ୍ଚାନନ ।
ଶୁଣ ୨ ଆହେ ଶିଶୁ ବିପ୍ରର ତନୟ
କି ନାମ କାହାର ଶିଷ୍ୟ ଦିଅ ପରିଚୟ ।
କାହାର ବଂଶରେ ତୁମ୍ଭେ ଧରିଛ ଜନମ
କାରେ ଯାଇ କରିଅଛ କହ ଅଧ୍ୟୟନ ।
ମୋହର ଈଶ୍ୱର ସେହି କରି ଦୟାମୟ
ତାଙ୍କୁ ଉପହାସ କର ଏ ବଡ଼ ବିସ୍ମୟ ।
ପରମାତ୍ମା ହରି ସେହି ସଭିଙ୍କ ଅନ୍ତରେ
ବିରାଜ କରନ୍ତି ସଦା କହିଲୁ ତୁମ୍ଭରେ ।
ମନ ଜ୍ଞାନ ମେଧା ଆଦି ବସ୍ତୁ ଆଦିକରେ
ଯେତେ କିଛି ଶକ୍ତି ଅଛି ଶରୀର ମଧ୍ୟରେ ।
ତାଙ୍କ ଆଜ୍ଞାବଶ ସର୍ବ ଜାଣିବେ ନିଶ୍ଚୟ
ସେ ମଧ୍ୟ ଦେହ ତେଜନ୍ତି ଆହେ ମହାମୟ ।
ତତକ୍ଷଣେ ସେ ସର୍ବ ଶକ୍ତି କରହେ ପ୍ରସ୍ଥାନ
ଅଧିକ ବୋଲିବ କିବା ତବ ବର୍ତ୍ତମାନ ।

କେତେକାଳ ତପ ମୂର୍ତ୍ତି କରିଛୁ ସାଧନ
କେତେ କାଳ ତପ କରିଛନ୍ତି ପଦ୍ମାସନ ।
ତଥାପି ଆପଣମାନେ ବିବେଚନା କରି
ପରମାତ୍ମା ହରିଙ୍କ ତତ୍ତ୍ୱ ନପ ବୁଝି ନ ପାରି ।
ପଞ୍ଚମୁଖେ ହରିନାମ କରିଣ କୀର୍ତ୍ତନ
ମୃତ୍ୟୁଞ୍ଜୟ କରିଅଛୁ ବସ୍ତ୍ରର ନନ୍ଦନ ।
ହରିଗୁଣ ଗାଏ ଯେହୁ ଏକାନ୍ତ ଅନ୍ତରେ
ମୃତ୍ୟୁ ଭୟ ନ ରହଇ ତାହାର ଶରୀରେ ।
ଶୁଣ ୨ ବତ୍ସଗଣ ଆମ୍ଭର ବଚନ
ଗୋଲୋକେ ବସନ୍ତେ ସେହୁ ଦେବ ସନାତନ
ଯେ ଜନ ଭଜନ କରେ ବୈକୁଣ୍ଠ ନଗରେ
ଶ୍ୱେତ ଦ୍ୱୀପବାସୀ ସେହୁ ଜାଣିବେ ଅନ୍ତରେ ।
ଏ ତିନ ପ୍ରଭେଦ ଜ୍ଞାନ କରିବାର ନାହିଁ
ଏକଥି ଶ୍ରବଣ କର ତୁମ୍ଭେ ମନ ଦେଇ ।
ଏକ ବ୍ରହ୍ମା ପତି ହୋନ୍ତି ଯେତେ ସଂଖ୍ୟାବନେ
ହରିଙ୍କ ନିମିଷେ ହୁଏ ଶୁଣ ସର୍ବଜନେ ।
ଆମ୍ଭ ସଦୃଶରେ ଛନ୍ତି ଯେତେ ଋଷିଗଣ
ଶ୍ରୀକୃଷ୍ଣଙ୍କର କଳାରୁ ହୋଇଛୁ ଉତ୍ପନ୍ନ ।
ତାହାଙ୍କ ମହିମା କେବେ ନ ପାରୁଛୁ ଜାଣି
ଏତେ ବୋଲି ମୌନ ହେଲେ ଦେବ ଶୂଳପାଣି
ତାହାରେ ଧର୍ମ ବୋଇଲେ ଆହେ ବିପ୍ରବର
ସର୍ବବ୍ୟାପି ଜଣି ବାକ୍ୟ ମନ ଅଗୋଚର ।
ସର୍ବ ଆତ୍ମା ନିରଞ୍ଜନ ହୁଏ ଯେଉଁ ଜନ
ତାଙ୍କୁ ଉପହାସ କରେ ପଡ଼ିଣ ଭ୍ରମେଣ ।
ସାଧୁଗଣ କେବେହେଁ ଆନେ ନିନ୍ଦା ନ କରନ୍ତି
ତାହାଙ୍କୁ ନିନ୍ଦଇ ଯେହୁ ଲଭଇ ଦୁର୍ଗତି ।
ହରି ନିନ୍ଦାକରେ ଅବା ଶୁଣେ ଯେଉଁଜନ
କୁମ୍ଭିପାକ ନରକେ ସେ କରଇ ଗମନ ।
ଏତେ ବୋଲି ଧର୍ମ ଦେବ ମଉନ ହୋଇଲେ
ବିପ୍ରରୂପୀ ହରି ବୋଇଲେକ କୁତୂହଳେ ।
ଶୁଣ ୨ ବିପ୍ରଗଣ ଆମ୍ଭର ବଚନ
ଅଳିକ ବିବାଦ କମ୍ପାକର ସର୍ବଜନ ।
ହରିନିନ୍ଦା କିବା ହେଲା ବଚନେ ଆମ୍ଭର
ଧର୍ମତଃ ଆମ୍ଭର ପାଶେ କର ହେ ପ୍ରସ୍ୱର ।
କହିଲେ ଆପଣା ମୁଖେ ତୁମ୍ଭେ ସର୍ବଜନ
ସର୍ବବ୍ୟାପି ହରି ରହିଛନ୍ତି ସର୍ବସ୍ଥାନ ।

ତାହାଯଦି ସତ୍ୟ ହୋଇଥାଏ ଦେବଗଣ
ଶ୍ୱେତ ଦ୍ୱୀପେ ଯାଇଥିଲ କୁହ କି କାରଣ ।
ଅଂଶେବା ଅଂଶୀରେ ଭେଦ କିଛିମାତ୍ର ନାହିଁ
ଏଇହେତୁ କହୁଅଛୁ ଶୁଣ ମନଦେଇ ।
କଳାଅଂଶ ତ୍ୟାଗକରି ମିଳଣ ସକଳେ
ପୂର୍ଣ୍ଣବ୍ରହ୍ମ ସମୀପକୁ କିମ୍ପା ଯାଇଥିଲେ ।
କିବା ବିଷ୍ଣୁ କିବା ବ୍ରହ୍ମା କିବା ମହେଶ୍ୱର
ଧର୍ମ ଦିଗପାଳ ପୁଣି ଯେତେ ଦିଗମ୍ବର ।
କିବାଏଇ ଚରାଚର ଯେତେ ଭୂତଗଣ
ପ୍ରତି ବିମ୍ବ ବିରାଜିତ ଛନ୍ତି ସର୍ବକ୍ଷଣ ।
କେତେ ଶତ ଅଛି ପୁଣି ଏହି ଜଗତରେ
କେତେ ବ୍ରହ୍ମାବିଷ୍ଣୁ ଛନ୍ତି କେତେ ଯେ ଅମରେ ।
ଈଶ୍ୱର ଇପ୍ସିତା କେହୁ କହି ନ ପାରଇ
ସକଳ ଈଶ୍ୱର କୃଷ୍ଣ ଶୁଣ ମନ ଦେଇ ।
ବ୍ରହ୍ମାଣ୍ଡର ଉର୍ଦ୍ଧ୍ୱ ଭାଗେ ବୈକୁଣ୍ଠ ନଗର
ଗୋଲୋକ ବସକେ ଜାଣ ତାହାର ଉପର ।
ଚତୁର୍ଭୁଜ ଲକ୍ଷ୍ମୀକାନ୍ତ ବୈକୁଣ୍ଠର ପତି
ପାର୍ଷଦ ତଥା ନନ୍ଦ ସୁନନ୍ଦ ପ୍ରଭୃତି ।
ଗୋଲୋକ ବିହାରୀ ଜଣି ସଭିଙ୍କ ଈଶ୍ୱର
ଦ୍ୱିଭୁଜ ରାଧିକା କାନ୍ତ ଶୁଣ ପରାତ୍ପର ।
ବେଷ୍ଟିତ ଅଛନ୍ତି ତହିଁ ଗୋପାଙ୍ଗନାଗଣେ
ଗୋପ-ପରିଷଦ କେତେ ନ ହୁଏ ଗଣନେ ।
ପରିପୂର୍ଣ୍ଣ ପୂର୍ଣ୍ଣବ୍ରହ୍ମ ତାହାଙ୍କୁହିଁ କହି
ସର୍ବଜୀବ ଆତ୍ମାରୂପୀ ସ୍ୱେଚ୍ଛାମୟ ସାଇଁ ।
କୋଟି ସୂର୍ଯ୍ୟ ଜଣି ଜ୍ୟୋତିଃ ଅତି ଚମତ୍କାର
ସେ ଜ୍ୟୋତିଃ ବିରାଜକରେ ସଦା ଗୋଲାକାର ।
ଯୋଗୀଗଣ ବ୍ରହ୍ମଜ୍ଞାନେ ଏକାନ୍ତ ଅନ୍ତରେ
ନିରନ୍ତର ଧ୍ୟାନକରେ ସେଇ ଜ୍ୟୋତି କରେ ।
ସେ ଜ୍ୟୋତି ଭିତରେ ରୂପ କରିଣ ଧାରଣ
ସଦା ଶୋଭାପାନ୍ତି କୃଷ୍ଣ ଅତି ବିମୋହନ ।
ନବୀନ ନୀରଦ ଶ୍ୟାମ ସେଇ କଳେବର
ମୃଦୁ-ହାସ ପରିପୂର୍ଣ୍ଣ କିବା ଓଷ୍ଠାଧାର ।
ପୀତବାସ ପରିଧାନ ବ୍ରହ୍ମ ପୂର୍ଣ୍ଣ-ତମ
ଆପଣା ରୂପରେ କରେ ଆପଣି ରମଣ ।
ବୈଷ୍ଣବ ଯେ ହୃଦପଦ୍ମେ ବସାଇଣ ତାରେ
ଏକାନ୍ତ ଅନ୍ତରେ ଧ୍ୟାନ ଉପାସନା କରେ ।

ଏବେ ଏକ କଥା ଶୁଣ କହୁଅଛି ଶ୍ରବଣେ
ମମ ପକ୍ଷତୟ ବୃଦ୍ଧିଅଛି ସର୍ବଜନ ।
ମୋ ସଙ୍ଗ ଘଟଣା ମାତ୍ର ଶୁଣ ମନଦେଇ
ବିବାଦ କରିବା କାର ପ୍ରୟୋଜନ ନାହିଁ ।
ଆଦ୍ୟେ ଜୀବନକୁ ତୁମ୍ଭେ ପ୍ରାଣ ଦାନ କର
ଅନ୍ୟ ଅନ୍ୟ କଥା ପରେ କହିବେ ବିସ୍ତର ।

ଏତେ ବୋଲି ବିପ୍ରରୂପୀ ଦେବ ଜନାର୍ଦ୍ଦନ
ମୌନବ୍ରତ ଅବଲମ୍ବି ହୋଇ ବର୍ତ୍ତମାନ ।
ଏତେ ବୋଲି ଶେଷୁ ଦାସୀ କହେ ଯୋଡ଼କର
ଶ୍ରୀହରିଙ୍କର ଚରଣେ ଭକ୍ତ ସର୍ବପର ।

— * —

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଉପବର୍ହଣଙ୍କର ଜୀବନ ଦାନଲାଗି ହରିଙ୍କର ଦେବତାଗଣଙ୍କୁ ଆଦେଶ ପ୍ରଦାନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

## ତ୍ରୟୋବିଂଶ ଅଧ୍ୟାୟ

### ଉପବର୍ହଣର ପୁନର୍ଜୀବନ ପ୍ରାପ୍ତି ଓ ମାଳାବତୀଙ୍କର ସ୍ତବ

ସୌତି ବୋଇଲେ ନ ଶୁଣ ଆହେ ତପୋଧନ
ହରିର ଅପୂର୍ବ ଲୀଳା କର ଦରଶନ ।
ବ୍ରହ୍ମା ଆଦି ଦେବଗଣ ବିଷ୍ଣୁଙ୍କ ମାୟାରେ
ମୁଗ୍ଧ ହୋଇ ବିପ୍ରବର ଗଲେ ଧୀରେ ଧୀରେ ।
ଉପନୀତ ହୋଇ ସର୍ବେ ସଖୀର ଗୋଚରେ
କମଣ୍ଡଳୁ ଜଳ ବ୍ରହ୍ମା ଦେଲେ ଶବ ପରେ ।
ସଲିଳ ସ୍ପର୍ଶିଲା ସର୍ବ ଶରୀରେ ଯେସନ
ମନଃ ସଞ୍ଚାରିତ ହେଲା ଜାଣିବେ ତେସନ ।
ସୁନ୍ଦର ଶରୀର ହେଲା ଅତି ଚମତ୍କାର
ଜ୍ଞାନ ଦାନ କଲେ ତାର ଶିବ ବିଶ୍ୱମ୍ଭର ।
ଧର୍ମ ଦେଲେ ଧର୍ମଜ୍ଞାନ ବିପ୍ର ପ୍ରାଣଦାନ
ଜଠରାଗ୍ନି ଦେଲେ ତାରେ ବହ୍ନି ମତିମାନ ।
କାମ ଦରଶନେ ହେଲା କାମର ସଞ୍ଚାର
ନିଶ୍ୱାସ ପ୍ରଶ୍ୱାସ ଦେଲେ ବାୟୁ ଗୁଣାଧାର ।
ସୂର୍ଯ୍ୟଙ୍କ ଦର୍ଶନେ ହେଲା ଦୃଷ୍ଟିର ଶକତି
ବାକଶକ୍ତି ସମର୍ପିଲେ ଦେବୀ ସରସ୍ୱତୀ ।
କମଳା ଦର୍ଶନ ତାର ହୋଇଲେ ଯେସନ
ଶରୀର ଶୋଭା ଧାରଣା କଲା ତତକ୍ଷଣ ।
ଏହିରୂପେ ଜୀବଦାନ ଯଦ୍ୟପି ପାଇଲା
ତଥାପି ଜଡ଼ ପରାୟ ସେ ପଡ଼ି ରହିଲା ।
ପରମାତ୍ମା ଯେ ପର୍ଯ୍ୟନ୍ତ ନୋହିଲେ ସଞ୍ଚାର
ଉଠି ନ ପାରିଲା ଶକ୍ତି ନ ହେଲା ତାହାର ।
ଏହା ଦେଖି ମାଳାବତୀ ବ୍ୟାକୁଳିତା ମନ
ସ୍ତବ ଆରମ୍ଭିଲା ସତୀ ନିତ୍ୟ ନିରଞ୍ଜନ ।
ବୋଇଲେ ଗୋଲକ ପତି ବୈକୁଣ୍ଠ ବିହାରୀ
ତୁମେ ପରାତ୍ପର ଅଟ ସର୍ବ ଘଟେ ଧରି ।

ସକଳ କାର୍ଯ୍ୟରେ ତୁମ୍ଭେ ସାବଧାନ ହୋଇଲେ
ବର୍ଣ୍ଣି ନ ପାରଇ ଜୀବ ଏ ଜଗତେ ତିଳେ ।
ନିର୍ଲିପ୍ତ ସକଳ କାର୍ଯ୍ୟେ ତୁମେ ଆହେ ନାଥ
ସାକ୍ଷୀରୂପେ ବିରାଜ କରିଛ ସର୍ବନାଥ
ସଦା ସର୍ବ ସ୍ଥାନେ ତୁମେ ଅଟ ବିଦ୍ୟମାନ
ତୁମର ଚରଣେ କରେ ସତତ ପ୍ରଣାମ ।
ବ୍ରହ୍ମାଦି ଦେବତାଗଣେ ତବ ଆଜ୍ଞାବହ
ତୁମରି ସର୍ଜନା ଅଟେ ଏ ଜଗତ ମୟ ।
ସବୁଠାରେ ଥାଇ ତୁମ୍ଭେ ସବୁ ଲୋକଙ୍କରେ
ଦେଖା ଯାଉଅଛ ପ୍ରଭୁ ସବୁ ସମୟରେ ।
ତ୍ରୈଲୋକ୍ୟ ଜନନୀ ଯେଉଁ ପ୍ରକୃତି ଈଶ୍ୱରୀ
ତାହାକୁ ଯେ ତୁମ୍ଭେ ନିଜେ ଅଛ ଜାତ କରି ।
ସୃଷ୍ଟି କର୍ତ୍ତା ପ୍ରଜାପତି ସେହିପରି ନିତି
ତୁମ୍ଭ ଗୁଣ ଗାନ କରୁଥାନ୍ତି ବିଶ୍ୱପତି ।
ପାଳନ ସଂହାରକାରୀ ବିଷ୍ଣୁ ରୁଦ୍ର ପୁଣି
ଆପଣଙ୍କୁ ଧ୍ୟାନ କରୁଥାନ୍ତି ଗୁଣୀ ଗୁଣି ।
ସକଳ ଦେବତା ଯକ୍ଷ ଦାନବ କିନ୍ନର
ସିଦ୍ଧ ସାଧ୍ୟ ଯୋଗୀ ମନୁ ମାନବ ଆବର ।
ତୁମ୍ଭ ରୂପ ଚିନ୍ତା କରି ଆହେ ନାରାୟଣ
କରନ୍ତି ଅଶେଷ ଦୁଃଖ ପାତକ ହରଣ
ତପ ଫଳଦାତା ବରଦାତା ତୁମ୍ଭେ ଅଟ
ହେଲେ ତବ ଦୟା ଦୂର ହୁଅଇ ସଙ୍କଟ ।
ତପସ୍ୟା ସ୍ୱରୂପ ସର୍ବରୂପ ସର୍ବମୟ
ସମସ୍ତ କର୍ମ ଆଶ୍ରୟ ସୂକ୍ଷ୍ମ ନିରାମୟ ।

ହୋଇଅଛ ତୁମ୍ଭେ ଏବା ପ୍ରଭୁ ସନାତନ
କରୁଥାଅ ଭକତର ମଙ୍ଗଳ ସାଧନ ।
କେତେ ମୁନି ଋଷିମାନେ ନିରାକାର ଭାବେ
ତୁମ୍ଭରୂପ ଚିନ୍ତାକରି ନିସ୍ତରନ୍ତି ଭବେ ।
କୋଟିସୂର୍ଯ୍ୟ ତୁଲ୍ୟ ତେଜମୟ ଅଟ ହରି
ମଣ୍ଡଳ ଆକାରେ ସବୁ ସ୍ଥାନେ ଅଛ ପୂରି
ସୁନ୍ଦର ମୂରତି କମନୀୟ ତୁମ୍ଭ ରୂପ
ଦରଶନ କଲେ ଛୁଇଁ ନ ପାରଇ ପାପ ।
ନବୀନ-ନୀରଦ ପରି ଶ୍ୟାମଳ ବଦନ
ଶରଦ- ପଙ୍କଜଦଳ ସମାନ ଲୋଚନ ।
ପୂର୍ଣ୍ଣଚନ୍ଦ୍ର ସମ ତୁଲ୍ୟ ଶ୍ରୀମୁଖମଣ୍ଡଳ
ମନ୍ଦହାସେ ଦିଶୁଥାଏ ଅତ୍ୟନ୍ତ ମଞ୍ଜୁଳ ।
କୋଟିଏ କନ୍ଦର୍ପ ନୁହେ ସୌନ୍ଦର୍ଯ୍ୟର ସରି
ଲୀଳାର ସ୍ଥାନ ଯେ ତୁମ୍ଭେ ଅଟ ହେ ଶ୍ରୀହରି ।
ଚନ୍ଦନରେ ବିଲେପିତ ସର୍ବାଙ୍ଗ ଆବରି
ରତ୍ନ ଅଳଙ୍କାରେ ଦିଶୁଥାଇ ମନୋହର ।
ବେନି ଭୁଜେ ସୁମଧୁର ମୁରଲୀ ବିରାଜେ
କଟିତଟେ କ୍ଷୀଣ ପୀତ ସୂକ୍ଷ୍ମ ବାସ ସାଜେ ।
କିଶୋର ବୟସ ଶାନ୍ତ ରାଧିକା ବଲ୍ଲଭ
ଗୋପାଙ୍ଗନାଗଣେ ବେଷ୍ଟିତ ବାସୁଦେବ ।
କେତେବେଳେ ବୃନ୍ଦାବନେ କରୁଛ ବିହାର
କେବେ ଅବା ରାସଯାତ୍ରା ମଧ୍ୟେ ସୁରେଶ୍ୱର
ରାଧାଆଦି ରମଣୀଙ୍କ ସେବାରେ ତୃପତ
ହୁଅ କେତେବେଳେ ତାଙ୍କୁ କରୁଅ ମୋହିତ ।
ପୁଣି ଗୋପବାଳକଙ୍କ ମେଳେ କେତେବେଳେ
ରମ୍ୟ ଉପବନେ ଖେଳା କରି ଚରୁଚଳେ ।
ବତ୍ସ ସହିତରେ ଗାଭୀମାନଙ୍କ ରକ୍ଷଣ
କରୁଅଛ କେତେ ଶିଶୁ ରୂପରେ ଭ୍ରମଣ ।
ଗୋଲକରେ ପାରିଜାତ ବନକୁଞ୍ଜେ ଥାଇ
ସୁରଙ୍ଗ ଅଧରେ ଦିବ୍ୟ ମୁରଲୀ ବଜାଇ ।
ଗୋପୀମାନସ ମୋହନ କରି ଅନୁକ୍ଷଣେ
ବିହାର କରୁଛ ଦେବ ଆନନ୍ଦିତ ମନେ ।
ବୈକୁଣ୍ଠରେ ଚତୁର୍ଭୁଜ ଶଙ୍ଖ ଚକ୍ରଧାରୀ
ଦେଖାଯାଏ ପ୍ରଭୁ ପାଶେ କମଳାଙ୍କୁ ଧରି ।
ଚତୁର୍ଭୁଜ ପାର୍ଷଦଗଣରେ ବେଷ୍ଟିତ
ହୋଇଥାଏ ଆହେ ଲକ୍ଷ୍ମୀକାନ୍ତ ଜଗନ୍ନାଥ

କେବଳ ସ୍ଥାନରେ ଅଂଶରୂପେ ଅବତରି
ଦୁଷ୍ଟ ନାଶି ରକ୍ଷା କରୁଅଛ ବସୁନ୍ଧରା ।
ଶ୍ୱେତଦ୍ୱୀପେ ବିଷ୍ଣୁରୂପେ ଲକ୍ଷ୍ମୀଦେବୀ ସହ
ବିରାଜିତ ହୋଇଅଛ ଆହେ ବିଶ୍ୱମୟ ।
କେଉଁଠାରେ ଅଂଶକଳା ଯେବେ ହୁଅ ଜାତ
ବ୍ରହ୍ମରୂପେ ବ୍ରହ୍ମାଣ୍ଡରେ ହୋଇଛ ବିଦିତ ।
ଶଙ୍କର ସ୍ୱରୂପ ତୁମ୍ଭେ ଅଟ ଶିବଲୋକେ
ଅଂଶମାତ୍ରେ ପୂରି ରହିଅଛ ମହୀଯାକେ ।
ଆହେ ବିଶ୍ୱରୂପ ତୁମ୍ଭ ଲୋମମୂଳେ ସ୍ଥାନ
ଲଭିକରି ରହିଅଛି ନିଖିଳ ଭୁବନ ।
ଏ ରୂପେ ଅଶେଷ ଲୋକ ପାଳନ ଅର୍ଥରେ
ଅବତାର ହେଉଅଛ ନାନା ପରକାରେ ।
କେତେବେଳେ ଯୋଗୀଙ୍କର ହୃଦେ ବାସକର
କେତେବେଳେ ମାୟାବଳେ ତାଙ୍କ ମନହର ।
ଜୀବରୂପ ସନାତନ ନିର୍ଗୁଣ ଯେ ଦେବ
ତାହାଙ୍କୁ ମୋ ଭଳି କିବା ବର୍ଣ୍ଣନା କରିବ ।
ସହସ୍ର ମୁଖରେ ତୁମ୍ଭ ଗୁଣକୁ ଅନନ୍ତ
ବର୍ଣ୍ଣନା କଲେହେଁ ପାଇ ନ ପାରିବେ ଅନ୍ତ ।
ବ୍ରହ୍ମା ରୁଦ୍ର ଗଣପତି ମୟୂର ବାହନ
ତୁମ୍ଭଙ୍କୁ ବର୍ଣ୍ଣିବା ପାଇଁ ନୁହନ୍ତି ଭାଜନ ।
ଜଗତମୋହିନୀ ମାୟା ତୁମ୍ଭର ମାୟାରେ
ମୋହିତ ହୋଇଣ ରହିଅଛି ନିରନ୍ତରେ ।
ତୁମ୍ଭ ସ୍ତୁତି ଗାଇବାକୁ ଲକ୍ଷ୍ମୀ ସରସ୍ୱତୀ
ସମର୍ଥ ନୋହିଣ ଜଡ଼ ପ୍ରାୟେ ରହିଥାନ୍ତି ।
ମୂର୍ତ୍ତି ଯେଉଁ ବେଦ ଅଟେ ପୁରାଣରେ ସାର
ତର୍କରେ ଯେ ଆଦିଅନ୍ତ ନ ମିଳେ ତୁମ୍ଭର ।
ଏମନ୍ତ ପ୍ରଭୁଙ୍କୁ ମୁହିଁ ଅବଳା କାମିନୀ
ବିହ୍ୱଳା ହୋଇଛି ପୁଣି ପତିଚିନ୍ତା ଯେଣୁ ।
ଶୋକରେ ଅଧୀର ହୋଇଅଛି ମୋର ମନ
କି କରି ପାରିବି ପ୍ରଭୁ ବିଶେଷ ବର୍ଣ୍ଣନ ।
ସର୍ବ ଅନ୍ତର୍ଯ୍ୟାମୀ ନାଥ ଅଟ ଆହେ ହରି
ମୋ ପତିଙ୍କୁ ଜୀବଦାନ ଦିଅ ଦୟାକରି ।
ଏତେବେଳେ ମାଳାବତୀ ନୀରବ ହୋଇଲା
ଶ୍ରୀକୃଷ୍ଣଙ୍କଠାରେ ମନ ଦେଇଣ କାନ୍ଦିଲା ।
ସେ କଥାକୁ ଯୋଗବଳେ ଜାଣି ଜନାର୍ଦ୍ଦନ
ଭକ୍ତି ସହିତରେ କଲେ ଶବହୃଦେ ସ୍ଥାନ ।

ଉପବର୍ହଣ ଗନ୍ଧର୍ବ ଉଠି ତତକାଳେ
ବୀଣା ବେନ ପରବେଶ ହୋଇ ନଖାଜଳେ ।
ବସନ ଧଉତ କରି ଦେବଙ୍କ ଚରଣେ
ବନ୍ଦନା କରି ଦେଖିଲେ ଅଛନ୍ତି ବ୍ରାହ୍ମଣେ ।
ସେହିକ୍ଷଣି ଯାଇ ତାଙ୍କ ପାଦତଳେ ପଡ଼ି
ସମସ୍ତଙ୍କ ଆଗେ ଉଭାହେଲେ କରଯୋଡ଼ି ।
ତାହା ଦେଖି ଦେବଗଣ ଦୁନ୍ଦୁଭି ବଜାଇ
ପୁଷ୍ପ ବରଷଣ କଲେ ସେହିଠାରେ ନେଇ ।
ସେ ପତି ପତ୍ନୀଙ୍କୁ ଶୁଭ ଆଶୀର୍ବାଦ କଲେ
ଆପଣା ପୁରକୁ ସୁଖେ ଯାଅ ହୋବୋଇଲେ ।
ଦେବଙ୍କ ଆଗରେ ଉପବର୍ହଣ କନ୍ନର
ନୃତ୍ୟ ଗାନ କଲେ ରହି ଦଣ୍ଡେକ ମାତର ।
ଦେବତାଙ୍କ ବରେ ପୁଣି ତାଙ୍କ ପିତାମାତା
ଜୀବନ ପାଇଲେ ସେହିକ୍ଷଣି ଗୁଡ଼ ଶନ୍ତା ।
ପିତା, ମାତା ପତ୍ନୀ ଘେନ ସେ ଉପବର୍ହଣ
ଗନ୍ଧର୍ବ ନଗର ପ୍ରତି କଲେକ ଗମନ ।
ଦେବତାଏ ଆପଣାର ଭବନକୁ ଗଲେ
ବ୍ରାହ୍ମଣ ବାଳକ ତହିଁ ଅନ୍ତର୍ଦ୍ଧାନ ହେଲେ ।
ଆନନ୍ଦରେ ମାଳାବତୀ ଦ୍ୱିଜଙ୍କୁ ଡକାଇ
ଦାନ କରିଦେଲେ ବହୁଧନ ରତ୍ନ ଗାଈ ।
ଏ ବାହାରେ ନାନାବିଧ ଭକ୍ଷ୍ୟ ଦ୍ରବ୍ୟମାନ
ଭୋଜନ କରାଇ ଦେଲେ ଦକ୍ଷିଣାକୁ ପୁଣ ।
ଦେବତା ମଧ୍ୟରେ ବେଦପାଠ କରାଇଲେ
ବିବିଧ ମଙ୍ଗଳ ଗୀତ ନୃତ୍ୟ ଆରମ୍ଭିଲେ ।
ପତିଙ୍କୁ ଘେନିଣ ମହାସୁଖେ ନିଜ ଘରେ
ପ୍ରବେଶ ହୋଇଲେ ଯାଇ ହରଷ ମନରେ ।
ଆହେ ମୁନିମାନେ ଯେଉଁ ସ୍ତବ ମାଳାବତୀ
ପାଠକଲେ ତାର ଫଳ ଶୁଣ ଦେଇ ମତି ।

ଦେବପୂଜା ସମୟରେ ଏ ସ୍ତବକୁ ଯେବେ
ପଢ଼ିବ ଶ୍ରୀକୃଷ୍ଣ ତୋଷ ହୋଇବେଟି ତେବେ ।
ବର ପାଇବା ଇଚ୍ଛାରେ ଯେଉଁ ଭକ୍ତଜନ
ପଢ଼ଇ ତାହାକୁ ବର ଦିଅନ୍ତି ଭଗବାନ ।
ପୁଣି ଧର୍ମ ଅର୍ଥ କାମ ମୋକ୍ଷ ଏହି ଚାରି
ଫଳ ପ୍ରାପତ ହୁଅଇ ଆହେ ତପସ୍ୱୀ ।
ବିଦ୍ୟା ଅଭିଳାଷୀ ହୋଇ ଯେ ଜନ ପଢ଼ିବ
ତାହାକୁ ଅବଶ୍ୟ ବିଦ୍ୟା ପ୍ରାପତ ହୋଇବ ।
ଧନ ଇଚ୍ଛାରେ ପଢ଼ିଲେ ନିଶ୍ଚେ ମିଳେ ଧନ
ଭାର୍ଯ୍ୟା ଇଚ୍ଛା ଥିଲେ ମିଳେ ରମଣୀ ରତନ ।
ପୁତ୍ରାର୍ଥୀ ପଢ଼ିଲେ ହୁଏ ଉତ୍ତମ କୁମର
ଧର୍ମ ଇଚ୍ଛା ଥିଲେ ଧର୍ମ ଲଭଇ ଅପାର ।
ଯଶ ଅଭିଳାଷୀ ପାଏ ବିପୁଳ କୀରତି
ରାଜ୍ୟଭ୍ରଷ୍ଟ ହୋଇଥାଏ ଯେଉଁ ନରପତି ।
ଏ ସ୍ତବ ପଢ଼ିଲେ ରାଜ୍ୟ ମିଳଇ ତାହାକୁ
ପ୍ରଜାହୀନ ହୋଇଥିଲେ ଲଭଇ ପ୍ରଜାଙ୍କୁ ।
ବିଶ୍ୱାସେ ପଢ଼ିଲେ ରୋଗୀ ରୋଗମୁକ୍ତ ହୁଏ
ବନ୍ଧନେ ପଡ଼ିବା ଲୋକ ଉଦ୍ଧାରକୁ ପାଏ ।
ଶତ୍ରୁଠାରୁ ଅବା ସିଂହ ବ୍ୟାଘ୍ରଠାରୁ ଭୟ
ହୋଇଥାଏ ଯେବେ କେଉଁ ଲୋକର ଉଦୟ ।
ଏହି ସ୍ତୁତି ପଠନରେ ଦୂର ହୋଇଯାଏ
ସେହିପରି ଚୌର ଅଗ୍ନି ଭୟ ନଷ୍ଟ ହୁଏ ।
ଆବର ଯେ କେବେ ହେଲେ ବିପଦ ନ ପଡ଼େ
ଭକ୍ତିକରି ଯେବେ ଲୋକ ଏ ସ୍ତବକୁ ପଢ଼େ ।
କ୍ଷେତ୍ରମୋହନ ବୋଲଇ ଯୋଡ଼ି ବେନିକର
ଆହେ ପ୍ରଭୁ ମୋତେ ଭବସାଗରୁ ଉଦ୍ଧାର ।

---

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଉପବର୍ହଣଙ୍କର ପୁନର୍ଜୀବନ ପ୍ରାପ୍ତି ଓ ମାଳାବତୀଙ୍କର ସ୍ତବ ନାମ ତ୍ରୟୋବିଂଶୋ ଅଧ୍ୟାୟ ।

## ଚତୁର୍ବିଂଶ ଅଧ୍ୟାୟ

### ଉପବର୍ହଣର ମୃତ୍ୟୁ ଓ ଶୂଦ୍ରାଣୀ ଗର୍ଭରେ ଜନ୍ମ ହେବା

ଶୁଣନ୍ତୁ ବିବୁଧ ଜନେ ମନକର୍ଣ୍ଣ ଦେଇ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ମହାନ ଅଟଇ ।
ପଠନ ଶ୍ରବଣ ଯେହୁ କରେ ଭକ୍ତିଭରେ
ଅନ୍ତକାଳେ ବସିବ ସେ ବୈକୁଣ୍ଠପୁରେ ।

ବୃଦ୍ଧ ହୋଇ ଗଲେ ନସଞ୍ଜି ଦୁଇନି ଅଧାଇ
ମୃତ୍ୟୁ ପ୍ରୀତି ବ୍ରହ୍ମପୁର ଅଟେ ମୁନିରାଇ ।
ତପସ୍ୱୀ ଗଣଙ୍କୁ ସ୍ୱର୍ଗ ବୋଲଇଲେକ ସୌତି
ଏଇରୂପେ ମାଳାବତୀ ଲଭି ନିଜ ପତି ।
ବ୍ରାହ୍ମଣ ଭୋଜନ ବସ୍ତ୍ର ଧନ ଦାନ କରି
ପତନେ ଭକ୍ତଙ୍କୁ ସେବା କରନ୍ତି ସୁନ୍ଦରୀ ।
ଏକାନ୍ତେ ପତିସେବା କରି ନିରନ୍ତରେ
ପତି ସଙ୍ଗେ ରତି ରଙ୍ଗେ ମାତିଲା ସତ୍ୟରେ ।
ଏହିରୂପେ ବହୁକାଳ କରନ୍ତି ଯାପନ
ପଛରେ ଶ୍ରୀକୃଷ୍ଣ ମନ୍ତ୍ର କରଇ ସ୍ମରଣ ।
କୃଷ୍ଣ ମନ୍ତ୍ର କୃଷ୍ଣ-ସ୍ତବ କବଚ ଅର୍ଚ୍ଚନା
କରାଇ ପତିଙ୍କୁ ସତୀ ଗନ୍ଧର୍ବ ଲଳନା ।
ବଶିଷ୍ଠ ଏହା ପୂର୍ବରୁ ରହିଣ ପୁଷ୍କରେ
ଅର୍ପିଥିଲେ ସେହି ମନ୍ତ୍ରମାନ ଦମ୍ପତିରେ ।
ହରି ମନ୍ତ୍ର ଶିବମନ୍ତ୍ର କରିଥିଲେ ଦାନ
ଶିବମନ୍ତ୍ର ଭୁଲିଗଲା ଗନ୍ଧର୍ବ ଧୀମାନ ।
ତେଣୁ ସେ ବଶିଷ୍ଠ ଋଷି ବସିଣ ନିର୍ଜ୍ଜନେ
ପୁନଶ୍ଚ ଶିବଙ୍କ ମନ୍ତ୍ର ଦେଲେ ବେନି ଜଣେ ।
ମନ୍ତ୍ର ପାଇ ଆନନ୍ଦିତ ଗନ୍ଧର୍ବ ଭୂପତି
ସୁଖେ ରାଜ୍ୟ ରକ୍ଷା କରେ ସେହି ମହାମତି
ମାଳାବତୀ ଆଦି ଯେତେ ପତ୍ନୀ ସହକାରେ
ଉପବର୍ହଣ ଗମିଲା କାନନ ଭିତରେ ।
ରତି ରଙ୍ଗେ ନିଯୋଜିତ ଆପଣାର ମନ
ବୃଦ୍ଧ ନରପତି ଏକା ରହିଲେ ଭବନ ।
କହୁ ଦିନ ସୁଖେ ରହି ସମୁଚିତ କାଳେ
ପତ୍ନୀସହ ଗଲେ ବୃଦ୍ଧ ଜାହ୍ନବୀର ଜଳେ
ସେହିକାଳେ ବେନିଜନ ତେଜିଣ ଜୀବନ
ବିମାନେ ବସିଣ ଗଲେ ବୈକୁଣ୍ଠ ଭୁବନ ।
ଅନ୍ତ୍ୟେଷ୍ଟି କ୍ରିୟା କରିଣ ସେ ଉପବର୍ହଣ
ଆନନ୍ଦେ କରିଲେ ପ୍ରଜାମାନଙ୍କୁ ପାଳନ ।
ତାହାପରେ ଯୋଗବଳେ ତେଜି କଳେବର
ଜନ୍ମ ଲଭିଲେ ଯାଇ ଶୂଦ୍ରାଣୀ ଗର୍ଭର ।
ମାଳାବତୀ ସତୀ ଦେଖି ପତିର ମରଣ
ପୁଷ୍କର ତୀର୍ଥରେ କରି ଅନଳ ସ୍ଥାପନ ।
ଅଭୀଷ୍ଟ କାମନା କରି ସେ ଅନଳେ ଡେଇଁ
ଭସ୍ମ ହୋଇଗଲେ ସର୍ବେ ଦେଖୁ ୨ ଥାଇଁ ।
ଧର୍ମାତ୍ମ୍ୟ ସ୍ୱଭାବେ ସତୀ ଜାତିସ୍ମର ହୋଇ
ଧର୍ମଧ୍ୱଜ ଆଳୟେ ଜନ୍ମ ହୋଇଲେକ ଯାଇ ।
ମନୁବଂଶ ରାଜା ସେହୁ ବିଖ୍ୟାତ ସଂସାରେ
ଜନ୍ମ କରିଲା ତାର ପତ୍ନୀର ଉଦରେ ।
ଯେ କାଳେ ଅଗ୍ନିରେ ସତୀ ତେଜିଲା ଜୀବନ
କାମ୍ନା କରିଥିଲା ମନ ମଧ୍ୟରେ ତକ୍ଷଣ ।
ଉପବର୍ହଣ ଯେମନ୍ତ ମୋର ପତି ହେବ
ଏଇ ବପୁ ମୋହପଟେ ସ୍ମୃତି ରଖିଥିବ ।
ଏରୂପେ କାମନା କରି ପରମା ସୁନ୍ଦରୀ
ତେଜିଲା ଜୀବନ ପତି ନାମକୁ ସୁମରି ।
ସୌତିଙ୍କ ବଚନ ସର୍ବେ କରିଣ ଶ୍ରବଣ
ଶୌନକ ସାଦରେ କହିଲେକ ସୁ ବଚନ ।
କିରୂପେ ଉପବର୍ହଣ ଶୂଦ୍ରାଣୀ ଗର୍ଭରେ
ଜନ୍ମିଲା ପ୍ରକାଶ କରି କୁହନ୍ତୁ ଆମ୍ଭରେ ।
ତାହାଙ୍କ ବଚନ ସୌତି କରିଣ ଶ୍ରବଣ
ବୋଇଲେକ ଶୁଣ ୨ ଆହେ ତପୋଧନ ।
ଦ୍ରୁମିଳ ନାମରେ ପୂର୍ବେ ଥିଲେ ନରପତି
କନ୍ୟାକୁବ୍ଜ ନଗରରେ ତାହାଙ୍କ ବସତି ।
କଳାବତୀ ପତ୍ନୀ ତାର ପତି ପରାୟଣା
ତାହାସମ ତିନିପୁରେ ନାହିଁକେ ଲଳନା ।
ଦୁଃଖର ବିଷୟ କନ୍ୟା ସେହି ରୂପବତୀ
ପୁତ୍ରାଭାବେ ରହେ ସଦା ହୋଇ ଦୁଃଖମତି ।
ସ୍ୱାମୀ ଦୋଷେ ବନ୍ଧ୍ୟା ଶେଷେ ହୋଇଲା ପ୍ରମାଣ
କଶ୍ୟପ ମୁନିଙ୍କ ପାଶେ କରିଲା ଗମନ ।
ପୁତ୍ରପାଇବା ଆଶାରେ ଗମିଲା ସୁନ୍ଦରୀ
ଦେଖିଲା ସେକାଳେ ଆଶ୍ରମରେ ତପସ୍ୱୀ ।
ଧ୍ୟାନଯୋଗେ ବସିଅଛି ତାପସ ପ୍ରବର
ମାର୍ତ୍ତଣ୍ଡ ସମାନ ତେଜଃପୁଞ୍ଜ କଳେବର ।
ତାହାଦେଖି କଳାବତୀ ସଭୟ ଅନ୍ତରେ
ଛିଡ଼ାହୋଇ ରହିଲେକ ମୁନିବର ଦୁରେ ।
କ୍ଷଣେ ପରେ ଧ୍ୟାନଭଙ୍ଗ ହୋଇଲା ତାହାର,
କଟିତଟେ ପୀନବାସ ଅତି ମନୋହର ।
ନୟନ ଯୁଗଳ ତାର ଦିଶେ ଅନୁପମ
କଟିତଟେ ପୀତବାସ ଦିଶେ ମନୋରମ ।
ମଧ୍ୟାହ୍ନ ଭାସ୍କର ପ୍ରାୟ ତେଜ ପ୍ରକାଶଇ
ଦେଖିଣ ଲଳନା ତାଙ୍କ ନିକଟେ ନଯାଇ ।

ଥୋକାଏ ଦୂରରେ ଉଭା ହୋଇଣ ସୁନ୍ଦରୀ
ରହିଲା ଅଧୋ ବଦନେ ଲଜ୍ୟାର୍ଣ୍ଣିତା ହୋଇ ।
ଧ୍ୟାନ ଶେଷକରି ଋଷି ଦେଖିଲେକ ଅନାଇ
ଅପୂର୍ବ ଲଳନା ଗୋଟି ଦୂରେ ଅଛି ରହି ।
ରମ୍ଭା ଉର୍ବଶୀ ବା ତିଳୋତ୍ତମାଙ୍କ ସହିତ
ରୂପରେ ଉପମା ନ ହେବ ସେହୁ କଦାଚିତ ।
ସୁନ୍ଦର ବଦନ ତାର ଅତି ମନୋହର
ଚମ୍ପକ ପୁଷ୍ପ ପରାୟେ ଅଙ୍ଗ ଶୋଭା ତାର ॥
ସେ ତରୁଣୀ ସୁଅଙ୍ଗୀ ନବ ଯୌବନା ହୋଇ
ଦେଖିଲେ ତାପସ ନ ପାରିବେ ଧୈର୍ଯ୍ୟଧରି ।
ପୂର୍ଣ୍ଣିମା ଚନ୍ଦ୍ର ପରାୟେ ମୁଖ ଶୋଭାପାଏ
ଦର୍ଶନ ଶ୍ରେଣୀ ଡାଳିମ୍ବ ବୀଜ ପ୍ରାୟେ ଶୋଭେ ।
ସୁଚାରୁ ଘନ କୁଣ୍ଡଳ ଜଡ଼ିତ ଦେହରେ
ପଡ଼ ମନୋହର ଦିଶେ ଜନ ମନ ହରେ ।
ତିଳ ପୁଷ୍ପ ଜିଣି ତାର ନାସା ସୁ ଶୋଭନ
ସ୍ତନ ଦ୍ୱୟ ଦିଶେ ପକ୍ୱ ତାଳଫଳ ସମାନ ।
ନୟନ କଟାକ୍ଷ କିବା ବର୍ଣ୍ଣନ ନ ପାରେ
ଦୃଷ୍ଟିଦେଲେ ଶିର ଯୋଗୀ ଯୋଗ ଭଗ୍ନକରେ ।
ସ୍ୱର୍ଣ୍ଣମୟ ଦେବୀ ମୂର୍ତ୍ତି ପ୍ରାୟେ ସେ ଦିଶଇ
କଣ୍ଠରେ ମୁକୁତା ମାଳ ମାନ ଲମ୍ବିଥାଇ ।
ରୁଣୁ ଝୁଣୁ ଶବ୍ଦ ଥାଏ ନୂପୁର ଶବଦ
ହସ୍ତରେ ସୁବର୍ଣ୍ଣ ଚୁଡ଼ି ବାହେ ବାଜୁବନ୍ଧ ।
ପଦୁରଣ ମାଳ ମେଘି ଶାଢ଼ି ସର୍ବାଙ୍ଗରେ
ପିନ୍ଧି ଦିଶଇ କାଞ୍ଚନ ବସନ ଭିତରେ ।
ଏହିପରକାରେ ସେହି ରମଣୀର ଶୋଭା
ବର୍ଣ୍ଣିବା ପାଇଁ ନାହିଁ ତା ସଙ୍ଗେ ଉପମା ।
ମୁନିଙ୍କ ରୂପରେ ମୋହି ହୋଇଛି ମୋହିତା
ପିଇଷା ବ୍ୟଗ୍ରଚିତ ତାର ନାହିଁ ଆନ ଚିନ୍ତା ।
ତାହାଙ୍କୁ ଦେଖିଣ ସେହି ନବୀନା ସୁନ୍ଦରୀ
ନେତ୍ର କୋଣେ ଠାରି ନିଜ ଭାବ ବ୍ୟକ୍ତକରି ।
ସ୍ତନ ଉରୁ ଦ୍ୱୟ ମଧ୍ୟ ଜାଣି ୨ ସେହି
ବସନ ଖସାଇ ଦେଲା ତପସ୍ୱୀଙ୍କୁ ଚାହିଁ ।
ଆବର ବେନ ବାହୁକୁ ଟେକିଣ ଚତୁରୀ
ଅଳସ ଭାବ ଦେଖାଇ ହେଲା ବିମ୍ବାଧରୀ ।
ତାହାଙ୍କ ଏମନ୍ତ ରୀତି ଦେଖି ଋଷିବର
ଜାଣିଲେ ସମସ୍ତ କଥା ଅନ୍ତର ମଧ୍ୟର ।

କହିଲେ ସେ କାମାତୁରା ରମଣୀ ଅଟଇ
କାହିଁକି ମୋ ପାଖେ ଆସି ଏମନ୍ତ କରଇ ।
ଏହିପରି ମନମଧ୍ୟେ ଚିନ୍ତି ଋଷିବର
ପଚାରିଲେ ଶାନ୍ତଭାବେ ପାଶେ ଯାଇ ତାର ।
ଆଗୋ ସୁକୁମାରୀ ତୁମ୍ଭେ କାହାର ନନ୍ଦନୀ
କି ନାମ ତୁମ୍ଭର କିମ୍ପା ଆସିଅଛ ଏଥି ।
ଏ ନିର୍ଜନ ବନେ କି କାରଣେ ଏକାହୋଇ
ବୁଲୁଅଛ କହ ସଙ୍ଗତରେ କେହି ନାହିଁ ।
ସତ୍ୟ କହ ମୋ ଅଗ୍ରତେ କହ ଚମ୍ପାଗୋରୀ
ସନ୍ଦେହ ମୋଚନ ହେବ କର୍ଣ୍ଣେ ଶୁଣିକରି ।
ମୁନିଙ୍କର ବଚନକୁ ଶୁଣି ସେ କର୍ଣ୍ଣରେ
ଭୟରେ ସର୍ବାଙ୍ଗ ତାର ଥରିଲା ସେଠାରେ ।
ମନମଧ୍ୟେ ଶ୍ରୀକୃଷ୍ଣଙ୍କୁ କରି ସୁମରଣ
ମୁନିଙ୍କର ଆଗେ ଜଣାଇଲା ବିନୟେଣ ।
ବୋଇଲା ହେ ମୁନିଶ୍ରେଷ୍ଠ ଶୁଣ ମୋ ଉତ୍ତର
ମୁହିଁ ଗୋପନଶା କନ୍ୟା ଦ୍ରୁମିଳ ରାଜାର ।
ଆପଣଙ୍କ ସନ୍ନିଧକୁ ସ୍ୱାମୀଙ୍କ ଆଦେଶେ
ଆସିଅଛି ପୁତ୍ର ଲାଭ କରିବା ମାନସେ ।
ଅନୁରୋଧ କରେ ତବ ପାଦତଳେ ମୁହିଁ
ଦୟାକରି ମୋ ଗର୍ଭରେ ପୁତ୍ର ଦିଅ ସାଇଁ ।
ତେଣୁ ମୋହ ସଙ୍ଗତରେ ରଙ୍ଗରସେ ମାତି
ବୀର୍ଯ୍ୟ ଦାନକର ଦୟାକରି ଆହେ ଯତି ।
ଶାସ୍ତ୍ରେ ଲେଖାଅଛି ଯେବେ ରତି ବାଞ୍ଛା କରି
ଆସିଥିବା ନାରୀ ନ ଭେଜିବ ତପସ୍ୱୀ ।
ପରସ୍ତ୍ରୀ ହରଣ ଦୋଷ ନ ହେବ ତୁମ୍ଭର
ଅନଳ ସମାନ ଯତି ଅଟ ସର୍ବସାଧୁ ।
ତୁମ୍ଭେ ସର୍ବ ପାପତାପ ତପ ପ୍ରଭାବରେ
ଜଳ ପୋଡ଼ି ଭସ୍ମ କରିଦେବ କ୍ଷଣକରେ ।
ଏମନ୍ତ କାମିନୀ ଗିର ଶୁଣି ସେ କଶ୍ୟପ
କହିଲେ ତାହାକୁ ମନେ ହେଲାପରି କୋପ ।
ବୋଇଲେ ଗୋ ଚନ୍ଦ୍ରାନନୀ କହିଲୁ ଯେ ଗିର
ଆମ୍ଭ ପକ୍ଷରେ ଉଚିତ ନୁହେଁ ଏ ବେଭାର ।
ଯେଉଁଜନ ଆପଣାର ଭୋଗ କଲା ସ୍ତ୍ରୀରା
ଅପର ହାତରେ ଦେଇ ଦେଇ ଯାଚ କରି ।
ଲକ୍ଷ୍ମୀ କଦାପି ତାହାକୁ ନୁହନ୍ତି ସଦୟ
ଲେଖା ହୋଇଅଛି ଶାସ୍ତ୍ର ପୁରାଣେ ନିଶ୍ଚୟ ।

ଦୁର୍ମିତ ସ୍ୱଜନ ଯେତେ ତେଜନ୍ତି ଏବେ
ଜାଣୁଅଛୁ ଆଉ ସେବ କରି ନ ପାରିବେ ।
ଘରେ ରହିଥିବା ଦ୍ରବ୍ୟ ଫିଙ୍ଗିଲେ ବାହାରେ
ଅଲକ ପ୍ରବସ୍ତୁ ସେହୁ ଲେଉଟଇ ଘରେ ।
ସହଜେ ତ ଅଟେ ମୂର୍ଖ ଜାତରେ ବ୍ରାହ୍ମଣ
ବନେ ରହି କରୁଅଛୁ ତପ ଆଚରଣ ।
ଜାଣୁ ଜାଣୁ ଯେଉଁପର ଶୂଦ୍ରର ସ୍ତ୍ରୀ ସ
ସମ୍ଭୋଗ କରଇ ପାପ ପୁଣ୍ୟ ନ ଚିନ୍ତଇ ।
ଭାରତରେ ମାତ୍ର ଯେଉଁ ଦ୍ୱିଜ ମୂର୍ଖପଣେ
ସ୍ୱୀକୃତ କରଇ ଆଣି ତାହାକୁ ଆପଣେ ।
ଚଣ୍ଡାଳ ମଧ୍ୟରେ ସେହୁ ଗଣନା ହୁଅଇ
ବ୍ରାହ୍ମଣ ବୋଲିଣ ତାକୁ କେହି ନ ଗଣଇ ।
ପିତୃଶ୍ରାଦ୍ଧେ ଯଜ୍ଞକାଳେ ଦେବତା ପୂଜାରେ
ଅଧିକାରୀ ନୁହଁଇ ସେ କେବଣ ପ୍ରକାରେ ।
ଇହଲୋକ ଥିବାଯାକେ ପତିତ ହୁଅଇ
ମୃତ୍ୟୁପରେ କୁମ୍ଭିପାକ ନରକେ ପଡ଼ଇ ।
ଆଉର ତାହାର ଯେତେ ପିତୃ ମାତୃବଂଶ
ସକଳେ ଯାଇ ନରକେ କରନ୍ତି ନିବାସ ।
ତର୍ପଣ କାଳରେ ଯେଉଁ ଜଳ ଯେ ଦିଅଇ
ମୂତ୍ର ସମାନରେ ସେହୁ ଗଣନା ହୁଅଇ ।
ଶ୍ରାଦ୍ଧକାଳେ ପିଣ୍ଡ ଦେଲେ ପୁରୀଷ ସଦୃଶ୍ୟ
ହୁଏ ତାହା ପିତୃଲୋକେ ନ କରନ୍ତି ଗ୍ରାସ ।
ତା ହାତରୁ ପୂଜାକଲେ ନୈବେଦ୍ୟ ପଦାର୍ଥ
ନ ପାଆନ୍ତି ସୁରଗଣେ ହୁଏ ତାହା ବ୍ୟର୍ଥ ।
ସନ୍ୟାସୀ ହୋଇଣ ଦ୍ୱିଜ ଶୂଦ୍ରନାରୀ ସଙ୍ଗ
କରେ ଯେବେ ଅପବିତ୍ର ହୁଅଇ ତା ଅଙ୍ଗ ।
ତାକୁ ଛୁଇଁ ତିନ ଦିନ ଉପାସ ନ କଲେ
ତା ଅଙ୍ଗରୁ ପାପ ନାଶ ନ ହୁଅଇ ହେଲେ ।
ଯଦ୍ୟପି ତା କରୁ ଅନ୍ନ କରିବ ଗ୍ରହଣ
ପୁରୀଷ ସମାନ ତାହା ଶାସ୍ତ୍ରର ପ୍ରମାଣ ।
ସେ ପାପରୁ ଚିରକାଳ କୁମ୍ଭୀପାକେ ପଡ଼ି
ନାନା ପରକାର କ୍ଳେଶ ଭୋଗୁଥାଇ ଗଡ଼ି ।
ତା ସଙ୍ଗରେ ତାର ଏକ ବଂଶର ପୁରୁଷ
ନରକ ମଧ୍ୟରେ ଯାଇ କରିଆନ୍ତି ବାସ ।
ଶୂଦ୍ରର ଉଚ୍ଛିଷ୍ଟ ଯେବେ ଭୁଞ୍ଜଇ ବ୍ରାହ୍ମଣ
ଭକ୍ଷିଲୁ ଯେତେକ ପାପ ହୁଏ ଉତପନ ।
ତାହା କହିବା ପାଇଁକ ମୋ ଶକତ ନାହିଁ
ଶୁଣ ଗୋ ଅଙ୍ଗିରମୁନି ଯାହାଛନ୍ତି କହି ।
ବ୍ରାହ୍ମଣ ଗଣରେ ସେହୁ ଅଧର୍ମି ଅଟଇ
ତା ସମ ନାରକୀ କେହି ତ୍ରିଜଗତେ ନାହିଁ ।
ବ୍ରାହ୍ମଣୀର ଅଙ୍ଗ ସେବେ ଶୂଦ୍ର ଲେପନରେ
ପ୍ରଥମ ବୋଲାଏ ସେହି ପାପୀଙ୍କ ମଧ୍ୟରେ ।
ଚଉଦଟି ଇନ୍ଦ୍ର କଳ୍ପ ସରିବା ପର୍ଯ୍ୟନ୍ତ
ନରକ କୁଣ୍ଡରେ ଯାଇଁ ହୁଏ ଅବିରତ ।
ବ୍ରାହ୍ମଣୀ ନରକେ ଅଷ୍ଟାଦଶ ଇନ୍ଦ୍ରକଳ୍ପ
ପଡ଼ି ରହୁଥାଏ ସେହୁ ହୋଇ କୃମିପୋକ
ତଦନ୍ତରେ ଜନ୍ମ ହୋଇ ଚଣ୍ଡାଳ ଯୋନିରେ
ଉଚ୍ଛିଷ୍ଟ ଭକ୍ଷଣ କରେ ବୁଲି ଘରେ ଘରେ ।
ସେ ପାତକୀ ଶୂଦ୍ର ମଧ୍ୟ ଚଣ୍ଡାଳ ଜନମ
ଲଭଇ ସନ୍ଦେହ ଏଥେଁ ତିଳେ ନାହିଁ ଜାଣ ।
ଏଥୁଅନ୍ତେ କୁଷ୍ଠରୋଗ ହୁଏ ତା ଅଙ୍ଗରେ
ବନ୍ଧୁ ବାନ୍ଧବରେ ନ ରହନ୍ତି ତା ସଙ୍ଗରେ ।
ଏମନ୍ତ କହିଣ ତପୀ ହୋଇଲେ ମଉନ
ଏଥୁଁ ଅନ୍ତେ ଯାହା ହେଲା ଶୁଣ ଦେଇମନ ।
ବୃଷଳୀର ପୁତ୍ର ଆଶା କରି ଆସିଥିଲା
ନାହିଁ କହିବାରୁ ମୁନି ସେଠାରେ ରହିଲା ।
ତାଲୁ ଜିହ୍ୱା କଣ୍ଠ ଓଷ୍ଠ ଶୁଖି ଗଲା ତାର
ମୁଖ ଟେକି କରି ନ ପାରିଲା ସେ ଉତ୍ତର ।
ଦଇବେ ସେ ସମୟରେ ଅପ୍ସରା ମେନକା
ସୁନ୍ଦର ବେଶ ହୋଇଣ ଯାଉଥିଲା ଏକା ।
ମୁନିଙ୍କର ଆଶ୍ରମ ତ ଥିଲା ସେ ପଥରେ
ଶୀଘ୍ର ଯାଇ ଉପସ୍ଥିତ ହେଲା ସେ ଠାବରେ ।
କ୍ରମେ ୨ ଆସି ଯହୁଁ ସନ୍ନିଧିରେ ହେଲା
ତପୀଙ୍କର ଦୃଷ୍ଟି ତାହା ଉପରେ ପଡ଼ିଲା ।
ଅମର ମଣ୍ଡଳ ସ୍ତ୍ରୀ ସେ ଅଟଇ ସେହି
ଉପମା ଦେବାକୁ ତିନିପୁରେ କେହି ନାହିଁ ।
ତାର ଉରୁ ସ୍ତନ ଦେଖି ଋଷିଙ୍କର ମନ
ସ୍ଥିର ନ ହୋଇଣ କାମେ ହେଲା ଅଚେତନ ।
ବୀର୍ଯ୍ୟଧାର ସାଥେ ସାଥେ ସ୍ଖଳିତ ହୋଇଲା
ଗୋପିକା ଯେ ଋତୁ ସ୍ନାନ କରି ଯାଉଥିଲା ।
ସେ ଋଷି ରେତକୁ ଜଳ ସହ ପାନକଲା
ତତକ୍ଷଣେ ତାର ଗର୍ଭ ଲକ୍ଷଣ ଦିଶିଲା ।

ତହୁଁ ସେ ମୁନିଙ୍କ ପାଦେ ପ୍ରଣତି ଜଣାଇ
ଆପଣା ପୁରେ ଗମନ କଲେ ନୃପମୂର୍ତ୍ତି ।
ଗୋଟି ୨ କରି ସବୁ ପତିଙ୍କ ଆଗରେ
କହିଲା ଯେ ଘଟିଥିଲା ଯେଉଁ ପ୍ରକାରେ ।
ଶୁଣି ନରପତି ଅତି ଆନନ୍ଦ ହୋଇଲେ
ପ୍ରିୟାକୁ ମଧୁର ଭାବେ ବଚନ ବୋଇଲେ ।
କହିଲେ ଆରେ ସୁନ୍ଦରି ଶୁଭକ୍ଷଣେ ଯେବେ
ଋଷିଙ୍କର ବୀର୍ଯ୍ୟ ପଡ଼ିଅଛି ତବ ଗର୍ଭେ ।
ତେଣୁ ତବସମ କେହି ନାହିଁ ଭାଗ୍ୟବତୀ
ନିଶ୍ଚୟ ଜାତ ହୋଇବ ଅପୂର୍ବ ସନ୍ତତି ।
ଯେ ହେବ କଶ୍ୟପ ମୁନି ତପିଙ୍କ ଶେଖର
ବିଷ୍ଣୁଙ୍କ ସମାନ ତାଙ୍କ ତେଜ ବଳୀୟାର ।
ତାହାଙ୍କ ବୀର୍ଯ୍ୟରୁ ଯେଉଁ ପୁତ୍ର ହେବ ଜାତ
ଶ୍ରୀ ବିଷ୍ଣୁ ସମାନ ସେହୁ ହେବ ବଳବନ୍ତ ।
ଅଶେଷ ଜନମ ତପଫଳରେ ସୁନ୍ଦରି
ଏମନ୍ତ ସନ୍ତାନ ନାରୀ ଗର୍ଭେ ପାରେ ଧରି ।
ସେ ପୁତ୍ର ନିମନ୍ତେ ଶତେ ପୁରୁଷ ପର୍ଯ୍ୟନ୍ତ
ବୈକୁଣ୍ଠ ପୁରେ ବସନ୍ତ ହୋଇ ଶୁଚିବନ୍ତ ।
ଜରାମୃତ୍ୟୁ ଆଦି ସେ ଠାବରେ ନ ବାଧଇ
ବିଷ୍ଣୁଙ୍କୁ ସେବା କରନ୍ତି ଦିନ ନିତ୍ୟ ସେହି ।
ଜାଣ ଆଗୋ ପତିବ୍ରତା ରମଣୀଙ୍କ ଶିଷ
ସଂସାର କଷ୍ଟରୁ ମୁକ୍ତି ଲଭିବ ଅବଶ୍ୟ ।
ତୁମେ ଏବେ ସୁଚରିତ୍ର ବ୍ରାହ୍ମଣଙ୍କ ପାଶେ
ରହି ଦିନ ନେଉଥାଅ ମନର ସନ୍ତୋଷେ ।
ମୁହିଁ ଯାଉଅଛି ତପ କରିବା ନିମନ୍ତେ
ପୁତ୍ର ଜନ୍ମ କରି ତୁମ୍ଭେ ରହ ହର୍ଷ ଚିତ୍ତେ ।
ଜନ୍ମିଲେ ସନ୍ତାନ ଅର୍ପି ସାଧୁଙ୍କ ପଦରେ
ମୋହ ନିକଟକୁ ଯିବ ଆନନ୍ଦ ମନରେ ।
ଏହିପରି ରମଣୀକୁ ଉପଦେଶ ଦେଇ
ଧନରତ୍ନ ଦାନ କଲେ ବ୍ରାହ୍ମଣଙ୍କୁ ଯାଇ ।
ଇଷ୍ଟଦେବତାଙ୍କୁ ପୂଜାକରି ଆନନ୍ଦରେ
ନୃତ୍ୟ ଗୀତ କରାଇଲେ ନଗର ମଧ୍ୟରେ ।
ଦୁଇଲକ୍ଷ ଅଶ୍ୱ ଏକଲକ୍ଷ ମତ୍ତଗଜ
ବ୍ରାହ୍ମଣଙ୍କୁ ଦାନ ଦେଲେ କରାଇଣ ସଜ ।
ସହସ୍ରେକ ରଥ ପୁଣି ସହସ୍ରେ ଶକଟ
ଦେଲେ ସେ ରାଜନ ମନେ ନ ରଖି କପଟ ।
ପାଞ୍ଚଶତ ଗାଭି ତିନି ସହସ୍ର ବୃଷଭ
ଦାନକଲେ ବିଧିବରେ ଦୁମିକ ନରେଶ ।
ଯୋଖା ହୋଇଥିବା ତିନିଲକ୍ଷ ରାଜ ହଂସ
ଉତ୍ତମ ବ୍ରାହ୍ମଣେ ଦାନକଲେ ହୋଇ ତୋଷ
ପୁଣି ଲକ୍ଷେ ଘାର ଲକ୍ଷେ ଛୁଆଙ୍କ ସହିତ
ଦାନକଲେ ଆନନ୍ଦରେ ଢପ୍ରେ ନରନାଥ ।
ପୁଣି ଦୁଇଶତ ଦାସ ଦାସୀ ଦାନକଲେ
ତାଙ୍କ ସହିତରେ ଶହେ ଗୋଟି ଗ୍ରାମ ଦେଲେ
ବିବିଧ ପଦାର୍ଥମାନ ପୂର୍ଣ୍ଣଥିଲା ତହିଁ
ତାହା ସବୁ ଦାନକଲେ ସନ୍ତୋଷରେ ସାଇଁ ।
ଆଉର କୋଟିଏ ଛୁର ଚଣ୍ଡ୍ରୁଳ ସଙ୍ଗରେ
ସୁନା ହୀରା ମଣି ଆଦି ଦେଲେ ନୃପବରେ ।
ଏହି ପରକାରେ ବହୁ ଧନରତ୍ନ ଦେଇ
ସଭିଙ୍କ ମନକୁ ତୋଷକଲେ ନରସାଇଁ ।
ଯେ ଯାହା ମାଗିଲା ଆସି କରି ପ୍ରସାରଣ
ତାହାକୁ ଆନନ୍ଦେ ଦାନ କଲେ ନରଗଣ ।
ଏଥୁଅନ୍ତେ ଆନକଥା ଶୁଣ ମନ ଦେଇ
ଏକ ଶୁଚିବନ୍ତ ଦ୍ୱିଜ ସନ୍ନିଧିକୁ ଯାଇ ।
ବହୁ ଧନରତ୍ନ ଦାନ କରିଲେ ତାହାଙ୍କୁ
ତଦଅନ୍ତରେ ବୋଇଲେ ଆପଣା ପ୍ରିୟାକୁ ।
ନାନାବିଧ ଅଳଙ୍କାର କରିଣ ମଣ୍ଡଣୀ
ମୂଲ୍ୟବାନ ପାଟବସ୍ତ୍ର ପିନ୍ଧାଇଲେ ପୁଣି ।
କରଧରି ଦ୍ୱିଜବର ପାଶକୁ ସେ ନେଇ ।
ବୋଇଲେ ମୋହର ବାକ୍ୟ ଶୁଣନ୍ତୁ ଗୋସାଇଁ
ଏ ରମଣୀ ଶୀଘ୍ର ଅଟେ ମୋର ପ୍ରିୟବତୀ ।
କଶ୍ୟପଙ୍କ ବୀର୍ଯ୍ୟ ହୋଇଅଛି ଗର୍ଭବତୀ ।
ଆପଣଙ୍କ ସୁଚରିତ ଜାଣି ଆଗୁଁ ମୁହିଁ
ମୋ ପ୍ରିୟାକୁ ସମର୍ପଣ କରୁଛି ଗୋସାଇଁ ।
ତପସ୍ୟା ନିମନ୍ତେ ଆଜ ଜଙ୍ଗେ ମୁଁ ଗମନ
ତେଣୁ ତବ ପାଶେ ଦେଉଅଛି ନାରୀରତ୍ନ ।
ସନ୍ତାନ ଜନମ ହେଲେ ରଖାଇଣ ତାକୁ
ଏ ରମଣୀ ଶୀଘ୍ର ଯିବ ମୋହର ପାଶକୁ ।
ସେ ପର୍ଯ୍ୟନ୍ତ ଆପଣଙ୍କ ଅଧୀନରେ ରହି
ଦିନ ବିତାଇବ ଆହେ ବିପ୍ରଙ୍କର ସାଇଁ ।
ତା ଶୁଣି ବ୍ରାହ୍ମଣ ତାହା ସନମତ କଲେ
ଆପଣା ମାତା ସଦୃଶ ରାଣୀଙ୍କୁ ପାଳିଲେ ।

ଏହା କହି ସାର ପୁଣି ଦ୍ରୁମିଳ ରାଜନ
ସେ ବ୍ରାହ୍ମଣ କରେ ଅରପିଲେ ରାଜ୍ୟଧନ ।
ଅନ୍ତର ମଧ୍ୟେ ପ୍ରଭୁଙ୍କୁ ସୁମରଣା କରି
ବଦରିକା ଶ୍ରମେ ପ୍ରବେଶିଲେ ଦଣ୍ଡଧାରୀ ।
ମାନସ ସରପନ୍ତେ ତର୍ପି ତପ ଆଚରିଲେ
ତଦନ୍ତେ ଗଙ୍ଗାନଦୀ କୂଳରେ ମିଳିଲେ ।
ସେ ଠାବରେ ଯୋଗବଳେ ତେଜନ୍ତେ ଶରୀର
ବିଷ୍ଣୁ ଦୂତଗଣେ ଆସି ମିଳିଲେ ତତ୍କ୍ଷଣେ ।
ଦିବ୍ୟ ବିମାନରେ ତାଙ୍କୁ ହରଷେ ବସାଇ
ବଇକୁଣ୍ଠ ଭୁବନରେ ସ୍ଥାନ ଦେଲେ ନେଇ ।
ବିଷ୍ଣୁଙ୍କର ଦାସ ହୋଇ ସେ ଗୋପ ରାଜନ
ସେବାକରି ଆନନ୍ଦରେ ବଞ୍ଚାଇଲେ ଦିନ ।
ଏଥୁଅନ୍ତେ ଯାହାହେଲା ଶୁଣ ମନ ଦେଇ
ସ୍ୱାମୀଙ୍କର ମୃତ୍ୟୁ ବାର୍ତ୍ତା କଳାବତୀ ପାଇ ।
ଅନଳ ଜାଳିଣ ଝାସ ଦେବା ସମୟରେ
ବାରଣ କରିଲେ ବିପ୍ର ଆସିଣ ସେଠାରେ ।
ବୋଇଲେ ଗୋ ମାତ ଯାହା କରୁଅଛ ତୁମ୍ଭେ
ଉଚିତ ହେଉଛି କିବା କୁହ ମୋର ଆଗେ ।
ଶୋକଭରେ ଯେବେ ତୁମ୍ଭେ ତେଜିବ ଜୀବନ
ବାଳକ ହତ୍ୟା ଦୋଷରେ ଭାଗୀ ହେବା ଜାଣ ।
ଏପରି ସାନ୍ତ୍ୱନା ବାଣୀ କହି ଦ୍ୱିଜବର
କଳାବତୀକୁ ଘେନିଣ ଗଲେ ନିଜପୁର ।
ତାହାପରେ ବିପ୍ର ପୁରେ ରହି କିଛୁଦିନ
ସେ ଗୋପ ସୁନ୍ଦରୀ ଜନ୍ମ କରିଲା ନନ୍ଦନ ।
ତପ୍ତ ସ୍ୱର୍ଣ୍ଣ ପ୍ରାୟ ଅଟେ ବଦନ ସୁଚାରୁ
ବ୍ରହ୍ମତେଜ ବଳେ ସେହୁ ଅତି ବଳୀୟାର ।

ସେ ଗ୍ରାମରେ ଯେତେ କୁଳାଙ୍ଗନା ମାନେ ଥିଲେ
ଶିଶୁ ଦରଶନ ଲାଗି ସକଳେ ଧାଇଁଲେ ।
ଦେଖିଲେ ସେ ପୁତ୍ର ଗୋଟି ଅତି ତେଜୋବନ୍ତ
ମଧ୍ୟାହ୍ନ ସୂର୍ଯ୍ୟ ତା ତେଜେ ହୋଇବ ନିନ୍ଦିତ ।
କନ୍ଦର୍ପଠାରୁ ଅଧିକ ହୋଇଛି ସୁନ୍ଦର
ମୁଖ ନିନ୍ଦା କରୁଅଛି ପୂର୍ଣ୍ଣ ସୁଧାକର
ଶରଦ ପଦ୍ମ ପରାୟେ ନୟନ ଯୁଗଳ
ଆରକ୍ତ ଅଧର କର ଦିଶଇ ସୁଢ଼ଳ ।
ପାଦରେ ଚିହ୍ନିତ ଚମ ପଦ୍ମ ଅଛି ରହି
ହସ୍ତରେ ସେ ଊର୍ଦ୍ଧ୍ୱରେଖା ସ୍ପଷ୍ଟ ଯେ ଦିଶଇ ।
ସ୍ତନ୍ୟ ପାନ କରିବାକୁ ଜନନୀକୁ ଚାହିଁ
କ୍ରନ୍ଦନ କରଇ ପୁତ୍ର କୁଆଁ ରାବ ଦେଇ ।
ତା ଦେଖି କାମିନୀମାନେ ଆନନ୍ଦ ହୋଇଲେ
କଲ୍ୟାଣ କରିଣ ଯେ ଯା ପୁରେ ଚାଲିଗଲେ ।
ଦେଖିଥିଲେ ଯେଉଁ ବିପ୍ରବର ଗୋପିକାକୁ
ଆନନ୍ଦ ହୋଇଲେ ଦେଖି ସନ୍ତାନ ମୁଖକୁ ।
ବନ୍ଧୁ ବାନ୍ଧବ ସଙ୍ଗତେ ଆସି ତା ନିକର
ନୃତ୍ୟ ଗୀତ ଆରମ୍ଭିଲେ ଦେଖିଣ କୁମର ।
ଶୁକ୍ଳ ପକ୍ଷ ଶଶୀସମ ସେ କୁମରମଣି
ବଢ଼ିଲା ଦିନକୁ ଦିନ ଦନ୍ତ ବିଦ୍ୟାଠାଣି ।
ସେ କୁମରକୁ ବ୍ରାହ୍ମଣ ଜନନୀ ସଙ୍ଗତେ
ରଖିଲେ ଅତି ଆଦର କରି ବିଧିମତେ ।
ଦେଲେ ଦାନ ସ୍ନାନ କ୍ଷେତ୍ର ଆଦେ ସାଧୁଜନେ
ଅପୂର୍ବ ଚରିତ୍ର ଶୁଣ ଆନନ୍ଦିତ ମନେ ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଉପବର୍ହଣଙ୍କର ମୃତ୍ୟୁ ଓ ଶୂଦ୍ରାଣୀ ଗର୍ଭରେ ଜନ୍ମ ହେବା ବିବରଣେ ନାମ ଚତୁର୍ବିଂଶୋ ଅଧ୍ୟାୟ

# ପଞ୍ଚବିଂଶ ଅଧ୍ୟାୟ

## ନାରଦଙ୍କର ଶାପମୋଚନ ଓ ପୂର୍ବ ଦେହ ପ୍ରାପ୍ତ

ଶୁଣନ୍ତୁ ବିବୁଧ ଜନେ ଅପୂର୍ବ ଚରିତ
କ୍ରମେ ପାଞ୍ଚ ବରଷର ହୋଇଲା ସେ ସୁତ ।
ଜାତିସ୍ମର ହେତୁ ଜ୍ଞାନ ହେଲା ତା ଅନ୍ତରେ
ପୂର୍ବମନ୍ତ୍ର ସ୍ମୃତି ଜାଗି ଉଠିଲା ହୃଦରେ ।
ହରି ନାମ ତାହାଙ୍କର ସର୍ବଦା ବୁଲଇ
ନାଚି ୨ ଅଶ୍ରୁଜଳେ ସେହୁ ଭାସିଯାଇ ।
ଯେଉଁଠାରେ ହୁଏ ହରିନାମର କୀର୍ତ୍ତନ
ଦ୍ରୁତଗତିକରି ତହିଁ ମିଳଇ ବଦନ ।

ଆବର ପୁରାଣ ପାଠ ହୁଏ ଯେଉଁଠାରେ
ଶୁଣିବା ପାଇଁକ ସୁତ ମିଳଇ ସେଠାରେ ।
ପୁଣି କେତେବେଳେ କରି ପ୍ରତିମା ଗଠନ
ଧୂଳିର ନୈବେଦ୍ୟ ଦେଇ କରଇ ପୂଜନ ।
ସେ କାଳରେ ଯଦି ତାର ଜନନୀ ଡାକଇ
ଉତ୍ତର ମଧୁର ବାଣୀ କୁମର ବୋଲଇ ।
ଶୁଣମାତ ହରିପୂଜା କରିଛୁ ଏଠାରେ
ପୂଜା ସାରି ଯିବି ମୁହିଁ ଅବିଳମ୍ବେ ଘରେ ।
ଅନାବୃଷ୍ଟି କାଳେ ଜନ୍ମ ହୋଇଥିଲା ସେହି
ଜନମି ସଲିଳ ଦାନ କଲେ ହର୍ଷ ହୋଇ ।
ଏ ହେତୁ ନାରଦ ନାମ ରହିଲା ପୁତ୍ରର
ପରମ ବୈଷ୍ଣବ ପୁତ୍ର ଜାଣିଲେ ସଂସାର ।
ଆଉ ଏକ କଥା ସର୍ବେ ଶୁଣ ମନଦେଇ
ନାର ଶବ୍ଦେ ଜ୍ଞାନ ହୁଏ ଶାସ୍ତ୍ରେ ଅଛି କହି ।
ସକଳ ଶିଶୁଙ୍କୁ ଜ୍ଞାନ କରିବାରୁ ଦାନ
ନାରଦ ନାମ ତାହାର ରଟେ ସେ ଭୁବନ ।
ସୌନକ ବୋଇଲେ ବାରେ ଶୁଣ ମହାମତି
ଶୁଣିଲୁ ତୁମ୍ଭର ମୁଖୁଁ ଅପୂର୍ବ ଭାରତୀ ।
କଶ୍ୟପ କି ହେତୁ ଧରେ ନାରଦ ଆଖ୍ୟାନ
ପ୍ରକାଶ କରିଣ ତାହା କୁହ ମତିମାନ ।
ଶୁଣିଣ ସୌତି ବୋଇଲେ ଶୁଣ ତପୀବର
ନରନାମେ ମୁନି ଥିଲେ ଧର୍ମଙ୍କ କୁମର ।
କଶ୍ୟପ ମୁନିଙ୍କୁ ଅପୁତ୍ରିକ ଦେଖି ସେହି
ପୁତ୍ର ଏକ ଅରପଣ କଲେ ଦୟା ବହି ।
ଏ ହେତୁ ନାରଦ ନାମ ହୋଇଲା ତାଙ୍କର
ଏହାଶୁଣି ବୋଇଲେକ ସୌନକ ପ୍ରବର ।
ଶୂଦ୍ର-ଜନମ ପୂର୍ବରୁ ବ୍ରହ୍ମାଙ୍କ ତନୟ
ନାରଦ ଆଖ୍ୟାନ କିମ୍ପା ଧରିଲେକ କୁହ ।
ତାହାଙ୍କ ବଚନ ସୌତି ଶୁଣିଣ କର୍ଣ୍ଣରେ
ବୋଇଲେ ଆନନ୍ଦ ମନେ ତାହାଙ୍କ ଆଗରେ ।
କଲ୍ପାନ୍ତରେ ବିଧାତାଙ୍କ କଣ୍ଠଦେଶ ଦେଇ
ବହୁ ସଙ୍ଖ୍ୟା ନର ଜନ୍ମ ହୋଇଲେକ ମହୀ ।
ବିଧାତାଙ୍କ କଣ୍ଠ ଦେଶୁ ହୋଇବାରୁ ଜାତ
ନାରଦ ନାମ ତାଙ୍କର ହୋଇଲା ବିଖ୍ୟାତ ।
ଏହି ପରକାରେ ପୁତ୍ର ଜନ୍ମ ବିବରଣ
ଏହାପରେ ଯହୁଁହେଲା ଶୁଣ ତପୀଗଣ ।

ଶୁକ୍ଳପକ୍ଷ ଚନ୍ଦ୍ର ସମ ସେ କୁମର ମଣି
ଦିନକୁ ଦିନ ବଢ଼ିଲା ବୟସରେ ପୁଣି ।
ପାଞ୍ଚ ବରଷ ବୟସ ହେବାରୁ ସୁତର
ଏକଦା ମୁନିମାନ୍ତି ସୁତ ମିଳିଲେ ସତ୍ୱର ।
ନାରଦଙ୍କ ସଙ୍ଗତରେ ସମସ୍ତେ ସେହି
ପାଞ୍ଚ ବରଷରୁ କାହୁଁ ଅଧିକ ନୁହଇ ।
ତାଙ୍କୁ ଦେଖି ଦ୍ୱିଜବର ଆନନ୍ଦ ହୋଇଲେ
ଭକ୍ତିଭରେ ଯଥାବିଧି ସନମାନ କଲେ ।
ବସିବାକୁ ଦେଲେ ତାଙ୍କୁ ଉତ୍ତମ ଆସନ
ତା ଦେଖି ବାଳକ ଗଣେ ହେଲେ ତୋଷମନ
ସୁଖେ ବସି ପଥ ଶ୍ରମ ନିବାରଣ କରି
ଦିଶିଲେ ତେଜକୁ ଯେହ୍ନେ ମାରତଣ୍ଡ ପରି ।
ବ୍ରହ୍ମ ତେଜରେ ଆବୃତ ଅଟେ ତାଙ୍କକାୟ
ଦେଖା ଯାଉଥିଲେ ଅତଏବ ତେଜୋମୟ ।
ଏ ଅନ୍ତରେ ଗୃହୀଦ୍ୱିଜ ଫଳ ମୂଳ ଆଣି
ଦେଲେ ପିଇବା ନିମନ୍ତେ ତାଙ୍କୁ ସ୍ୱାଦୁପାଣି ।
ସେ ସବୁ ବ୍ରାହ୍ମଣ ଦେଖି ମହା ଆନନ୍ଦରେ
ଭୋଜନ କରିଲେ ଫଳ ମୂଳ ସେଠାବରେ
ତାଙ୍କଠାରୁ ଯାହକିଛି ବଳିକା ରହିଲା
ଗୋପୀକା ନନ୍ଦନ ସବୁ ବସିଣ ଭୁଞ୍ଜିଲା ।
ତାହାର ଭକ୍ତି ଦେଖିଣ ଚତୁର୍ଥ ବ୍ରାହ୍ମଣ
ଆନନ୍ଦେ ପିଠିକି ତାର ଆଉଁଷିଣ ପୁଣ ।
ଶ୍ରୀକୃଷ୍ଣ ମନ୍ତ୍ର ତାହାର କର୍ଣ୍ଣେ କହି ଦେଲେ
ତଦନ୍ତରେ ପ୍ରଜାବଧିନାମ ବତାଇଲେ ।
ମାତାର ଆଜ୍ଞାରେ ସେହି ବାଳକ ତାହାଙ୍କୁ
ସେବା କରିଣ ରହିଲା ପ୍ରକାଶି ଭକ୍ତିକୁ ।
ଏଥୁ ଅନନ୍ତେ ଦିନେ ନିଶାକାଳେ କଳାବତୀ
ସ୍ନାନ କରିବାକୁ ମାର୍ଗେ ଯାଉଥିଲେ ସତୀ ।
କାଳ ସର୍ପ ଦଂଶିବାରୁ ପଡ଼ି ସେହିଠାରେ
ହରିଙ୍କୁ ସ୍ମରଣ କରି ମାନସ ମଧ୍ୟରେ ।
ଜୀବନ ତେଜିବା ମାତ୍ରେ ଆସି ବିଷ୍ଣୁଦୂତେ
ବିମାନେ ବସାଇ ନେଇ ଗଲେକ ତୁରିତେ ।
ବୈକୁଣ୍ଠ ପୁରେ ନେଇଣ ତା ପତି ପାଶରେ
ରଖାଇଲେ ପୁଣି ନାରଦଙ୍କ ଦେଖାରେ ।
ସ୍ୱର୍ଗତ ହୁଅନ୍ତେ ତାର ପୁତ୍ର ଏକା ହୋଇ
ମାତାର ଗୁଣ ସୁମରି କାନ୍ଦିଲା ବୁହାଇ ।

ତାପରେ ବ୍ରାହ୍ମଣଙ୍କର ସଙ୍ଗେ ସାଥି ହେଲ
ପୂର୍ବେ ଥିବା ଦ୍ୱିଜସବୁ ବାହାରିଣ ଗଲ ।
ତାହାକୁ ଦେଖି ବ୍ରାହ୍ମଣେ କୃପା କଲ୍ପମନେ
କୃଷ୍ଣମନ୍ତ୍ର ଉତ୍କଳନ ଦେଇ ଏକ ସ୍ଥାନେ ।
ରଖାଇ ଆପଣା ଦେଶେ ସେତୁ ଚଳିଗଲେ
ବାଳକର କଥା ଶୁଣ କହୁଅଛୁ ଭଲେ ।
ମନୋହର ଗଙ୍ଗାନଦୀ ତୀରକୁ ସେ ଯାଇ
ବିପ୍ରେ ଦେଇଥିବା କୃଷ୍ଣମନ୍ତ୍ର ମନେ ଧ୍ୟାଇ ।
ପବିତ୍ର ଜାହ୍ନବୀ ଜଳେ ସ୍ନାନ କରି ସାରି
ଜପକଲ ଆନନ୍ଦରେ ବୋଲି ହରିହରି ।
କ୍ଷୁଧା ତୃଷା ଆଦି ତାକୁ ନ ଲାଗିଲା ଆଉ
ପ୍ରସନ୍ନ ହେବାରୁ ଲକ୍ଷ୍ମୀପତି ମହାବାହୁ ।
ମହାଘୋର ଅରଣ୍ୟରେ ଅଶ୍ୱତ୍ଥର ମୂଳେ
ଯୋଗାସନ କରି ତହିଁ ବସିଣ ନିଶ୍ଚଳେ ।
ଅନେକ ସମୟ ସେହି ସ୍ଥାନେ କଟାଇଲ
କେବଳ ତପସ୍ୟା କରିବାରେ ଚିତ୍ତ ଦେଲ ।
ଏହାଶୁଣି ସଉନକ ଉତ୍କଣ୍ଠ ସ୍ୱରରେ
ସଉତି ମୁନିଙ୍କୁ ପଚାରିଲେ ସେ କାଳରେ ।
ହେମୁନି ଏକଇ କଥା ପୁଚ୍ଛି ବଇଁ ମୁହିଁ
ଦୟାକରି ତା ଉତ୍ତର ଦିଅନ୍ତୁ ବତାଇ ।
ବାଳକକୁ ଯେଉଁମନ୍ତ୍ର ଦ୍ୱିଜେ ଅରପିଲେ
ଦୟାକରି ତାହା ଆମ୍ଭ ଆଗେ କୁହ ଭଲେ ।
ଶୁଣିବା ସାନନ୍ଦ ମନରେ ବୋଇଲେ କ ସୌତି
କହିବା ସେ ମନ୍ତ୍ର ଶୁଣ ସ୍ଥିର କରି ମତି ।
ତ୍ରୈଲୋକରେ ଦୟାକର ଶ୍ରୀକୃଷ୍ଣ ଧାତାଙ୍କୁ
ଦେଇଥିଲେ ଗୁପତରେ ସେ ମହା ମନ୍ତ୍ରକୁ ।
ଦ୍ୱାବିଂଶତି ଅକ୍ଷରଟି ଅଛଇ ତହିଁରେ
ଦୁର୍ଲ୍ଲଭ ଅଟଇ ତାହା ଦେବଙ୍କ ପକ୍ଷରେ ।
ବ୍ରହ୍ମାକାଳେ କୁମରଙ୍କୁ ଦେଲେ ଦୟାବନ୍ତ
କୁମାର ଘୋପ ଶିଶୁର ଆଗେ ଦେଲେ କହି ।
ତାହାର ସ୍ୱରୂପ ଏବେ ଶୁଣ ମୁନିବର
ନମସ୍ତେ ଶ୍ରୀ ଭଗବାନ ରାସ ଅଧୀଶ୍ୱର ।
ଶ୍ରୀକୃଷ୍ଣ ଗୋପିକା କାନ୍ତ ଏହି ପରକାରେ
ଗଠିତ ହୋଇଛି ମନ୍ତ୍ର ବାଇଶି ଅକ୍ଷରେ ।
ଫଳପ୍ରଦ ଅଟଇ ସେ କଳ୍ପବୃକ୍ଷ ପରି
ପ୍ରମାଦ ନ ପଡ଼େ ଯାକୁ ଜପିଲେ କାହାରି ।
ଆଗୁଁ କହୁଅଛୁ ମହା ପୁରୁଷ ସ୍ତୋତ୍ରକୁ
ଏମନ୍ତ ଭକ୍ତିରେ ପାଠ କରିବ ତାହାକୁ ।
ତାପରେ କବଚ ଆଦି କରିବ ପଠନ
ସେହିପରକାରେ ଅଟେ ଏ ମନ୍ତ୍ରର ଧ୍ୟାନ ।
ମୁଖ୍ୟ ସାମବେଦରେ ସେ ହୋଇଅଛି ଉକ୍ତ
ପଠନ ମାତ୍ରକେ ଜୀବ ହୋଇଯାଏ ମୁକ୍ତ ।
କୋଟି ସୂର୍ଯ୍ୟ ତେଜ ମଣ୍ଡଳରେ ଯାହାଙ୍କର
ସ୍ୱରୂପ ପ୍ରକାଶ ପାଏ ଗୋଲକ ଧାମର ।
ଧ୍ୟାନଯୋଗେ ଯୋଗୀମାନେ ଦିବସ ରଜନୀ
ଯାହାଙ୍କ ନାମକୁ ଜପ କରୁଛନ୍ତି ପୁଣି
ଆଦର ଦେବତା ସିଦ୍ଧ ବଇଷ୍ଣବମାନେ
ସଦା ଚିନ୍ତା କରୁଛନ୍ତି ବସି ଏକ ମନେ ।
ଅତ୍ୟନ୍ତ ସୁନ୍ଦର ମନୋହର ଦିବ୍ୟମୂର୍ତ୍ତି
ତରୁଣ ଜଳଦ ସମ ଶୋଭାପାଏ ଜ୍ୟୋତି ।
ପୂର୍ଣ୍ଣ ସୁଧାକର ଜିଣି ଶ୍ରୀମୁଖ ମଣ୍ଡଳ
ଶରତ କମଳ ପରି ନୟନ ଯୁଗଳ ।
ସୁରଙ୍ଗ ଅଧର ଯୁଗ କମନୀୟ ଦିଶେ
ସାକ୍ଷାତେ ପାଚିଲା ବିମ୍ବଫଳ ଅବା କି ସେ ?
ମୁକୁତାର ମାଳା ଯେହ୍ନେ ଶୁଭ୍ର ତେଜବେଶ
ସୁନ୍ଦର ଦିଶେ ତେମନ୍ତ ଦୁଇ ଦନ୍ତଶ୍ରେଣୀ ।
ବେଣୁଭୂଜେ କଟିତଟେ ଧୃତ ପୀତ ବାସ
ରତ୍ନ ସୁବର୍ଣ୍ଣ ଭୂଷଣ ଶଙ୍ଖରେ ପ୍ରକାଶ ।
କନକ କୁଣ୍ଡଳ ଦ୍ୱେନ କର୍ଣ୍ଣଦେଶେ ସାଜେ
କାରଣ ଜଳରେ ଖଣ୍ଡ ମଣ୍ଡଳ ବିରାଜେ ।
ମୟୂର ପୁଚ୍ଛରେ ଜୁଡ଼ା ଦିଶଇ ଶୋଭନ
କଣ୍ଠ ଦେଶରେ ଝୁଲଇ ରତ୍ନ ହାର ମାନ ।
ପୁଣି ବକ୍ଷସ୍ଥଳେ କଉସ୍ତୁଭ ମଣି ଶୋଭା
ଯେମନ୍ତେ ସରସୀ ମଧ୍ୟେ ନୀଳୋତ୍ପଳ ପ୍ରଭା ।
ସୁନ୍ଦରୀ ଷୋଡ଼ଶୀ ଗୋପାଙ୍ଗନାଙ୍କ ସଙ୍ଗରେ
ଆସକ୍ତ ହୋଇଣ ଥାନ୍ତି ନାନାଦି କ୍ରୀଡ଼ାରେ ।
ବ୍ରହ୍ମା ବିଷ୍ଣୁ ଶିବ ଆଦି ଦେବଗଣଙ୍କର
ପରମ ପୂଜିତ ପ୍ରଭୁ ଶଙ୍ଖ ଚକ୍ରଧର ।
କିଶୋର ବୟସ ରାଧାକାନ୍ତ ଶାନ୍ତରୂପ
ନିର୍ଲିପ୍ତ ବିକାର ଶୂନ୍ୟ ନିର୍ଗୁଣ ସ୍ୱରୂପ ।
ଏମନ୍ତ ଯେ ପ୍ରଭୁ ତାଙ୍କୁ କରୁଅଛୁ ଧ୍ୟାନ
ଦୟାକରି କରନ୍ତୁ ମୋ ମନବାଞ୍ଛା ପୂର୍ଣ୍ଣ ।

ଆହେ ଶଉନକ ମୁନି ଏହି ପରକାରେ
ଧ୍ୟାନମାନ ଲେଖାଅଛି ମନ୍ତ୍ର ସକାଶରେ ।
ଆବର କବଚ ସ୍ତୋତ୍ର ଅଛି ମଧ୍ୟ ତହିଁ
ପଠନ କରିଲେ ନିତ୍ୟେ ମଙ୍ଗଳହୁଅଇ ।
ଏବେ ସେ ବାଳକ ଯାହା କଲା ତଦନ୍ତରେ
ତାହା କହୁଅଛି ଶୁଣ ଏକାନ୍ତ ଚିତ୍ତରେ ।
ଦିବ୍ୟ ସହସ୍ର ବରଷ ନିରାହାରେ ରହି
ତପ ଆଚରଣେ କୃଶ କଲା ନିଜ ଦେହି ।
ତାହାପରେ ସେହି ମନ୍ତ୍ର ସିଦ୍ଧ ହୋଇବାରୁ
ଅତି ତେଜୋବନ୍ତ ହେଲା ତାହା ପ୍ରଭାବରୁ ।
ଧ୍ୟାନ ମାର୍ଗେ ଦିବ୍ୟଲୋକ କଲା ଦରଶନ
ଅଛନ୍ତି ତହିଁରେ ଏକ ବାଳକ ରତନ ।
ବିଜେ କରିଛନ୍ତି ରତ୍ନ ସିଂହାସନ ଉପରେ
ରତନ ଭୂଷଣ ମାନ ଶୋଭେ ତା ଅଙ୍ଗରେ ।
ଶ୍ୟାମଳ ବଦନ ତନୁ କିଶୋର ବୟସ
ଗୋପବାଳ ବେଶଧାରୀ ସ୍ମିତ ଦରହାସ ।
ଗୋପାଳ ଗୋପରମଣୀ ଗଣରେ ବେଷ୍ଟିତ
ପୀତବାସେ କଟୀଦେଶ ଦିଶଇ ଶୋଭିତ ।
ଜାନୁ ପର୍ଯ୍ୟନ୍ତେ ବେନି ବାହୁ ଲମ୍ବମାନ
ବେନି ହସ୍ତରେ ମୁରଲୀ ଦିଶେ ଶୋଭାବନ ।
ବ୍ରହ୍ମା ବିଷ୍ଣୁ ଶିବ ପୁଣି ଦେବ ଦେବୀଙ୍କରେ
ସେବିତ ଅଟନ୍ତି ସବୁକାଳେ ସର୍ବଠାରେ ।
ସେ ପରମ ପୁରୁଷଙ୍କୁ ବୃହିଁଣ ନୟନେ
ନିରେଖି ରହିଲା ଗୋପସୁତ ଏକଧ୍ୟାନେ ।
ଦିବ୍ୟତେଜ ହେତୁ ସେହୁ ଦୃଷ୍ଟି ନ ପାରିଲା
ମନ ମଧ୍ୟରେ ବିଷାଦ ତାର ଜନମିଲା ।
ଅତି ଉଚ୍ଚରେ ରୋଦନ କରିଲା କୁମର
ସୁନ୍ଦର ରୂପରେ ଭୁଲିବାରୁ ମନ ତାର ।
ସେହିକାଳେ ଆକାଶରୁ ଶୁଭିଲା ଏ ବାଣୀ
କାହିଁପାଇଁ କାନ୍ଦୁଅଛୁ ରେ କୁମର ମଣି ।

ଯେବଣ ରୂପକୁ ତୁହି କରିଛୁ ଦର୍ଶନ
ଆଉ ଦେଖି ନ ପାରିବୁ ତାହା କଦାଚନ ।
ଦୃଢ଼ନାହିଁ ଚିତ୍ତ ଯେଉଁ ଯୋଗୀ ମାନଙ୍କର
ଦର୍ଶନ ନ ମିଳନ୍ତି ଏହି ରୂପକୁ ନେତ୍ରର ।
ତୋର ନିଜ କଳେବର ତେଜି ଯେତେବେଳେ
ପାଇବୁ ଦିବ୍ୟ ଶରୀର ଜାଣ ସେହିକାଳେ ।
ଆମ୍ଭର ଏ ରୂପ ପୁଣି ଦର୍ଶନ କରିବୁ
ଜନମ ମରଣ ତେଜି ସୁଖରେ ରହିବୁ ।
ଏହିରୂପେ ସତ୍ୟପ୍ରିୟ ମାଧୁର୍ଯ୍ୟ ବାକ୍ୟ
ଶୁଣିଣ ଆନନ୍ଦ ହୋଇ ଗୋପଇ ବାଳକ ।
ସେଠାରେ ଅନେକ କାଳ ପୁଣି ତପ କଲା
ତୀର୍ଥରେ ଯାଇଣ ନିଜ ପ୍ରାଣ ବିସର୍ଜିଲା ।
ସେତେବେଳେ ଶ୍ରୀକୃଷ୍ଣଙ୍କୁ କରୁଥିଲା ଧ୍ୟାନ
ସ୍ୱର୍ଗରେ ଦୁନ୍ଦୁଭି ବଜାଇଲେ ଦେବଗଣ ।
ଆନନ୍ଦେ ତାହା ଉପରେ ପୁଷ୍ପ ବରଷିଲେ
ଏ ରୂପେ ନାରଦ ପିତୃ ଶାପୁଁ ମୁକ୍ତହେଲେ ।
ବ୍ରହ୍ମ ଶରୀରରେ ଯାଇଁ ହୋଇଲେ ବିଲୀନ
ନିତ୍ୟ ବୋଲାଇଲେ ତେଜି ସେ ମର୍ତ୍ତ୍ୟ ଭୁବନ
କାଳେ ପୁଣି ଉତ୍ପନ୍ନିତ ହୋଇଲେକ ତହିଁ
ଏମନ୍ତ କୃଷ୍ଣ ଭକ୍ତିରେ ମହିମା ଅଟଇ ।
ନିତ୍ୟ ଦେହମାନେ ନିଜ ଇଚ୍ଛା ଅନୁସାରେ
ଦୃଶ୍ୟ ବା ଅଦୃଶ୍ୟ ହୋଇ ପାରନ୍ତି ସୁଖରେ ।
ଆହେ ଶଉନକ ମୁନି ଶୁଣ ମନଦେଇ
ବିଷ୍ଣୁ ଭକ୍ତ ମଧ୍ୟେ ସେହୁ ପ୍ରଧାନ ଅଟଇ ।
ଜରା ମୃତ୍ୟୁ ବ୍ୟାଧି ଆଦି ନ ଲଗଇ ତାରେ
ଦେବତାମାନେ ସମ୍ମାନ କରନ୍ତି ତାହାରେ ।
ଅଧମ କ୍ଷେତ୍ରମୋହନ ବୋଲେ ଯୋଡି କର
ସେ ହରି ଭକ୍ତଙ୍କ ରେଣୁ ପଡ଼ୁ ମମ ଶିର ।

———

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନାରଦଙ୍କର ପୂର୍ବ ଦେହପ୍ରାପ୍ତି ବିବରଣେ
ନାମ ପଞ୍ଚବିଂଶୋଽଧ୍ୟାୟଃ ।

# ଷଡ଼ବିଂଶୋ ଅଧ୍ୟାୟ

## ଧାତାଙ୍କଠାରୁ ଭିନ୍ନ ଭିନ୍ନ ମୁନିମାନଙ୍କର ଉତ୍ପତ୍ତି

ଶୁଣ ଆହେ ସୁଜ୍ଞଜନ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ଶଉନକଙ୍କ ମୁଖରୁ ଶୁଣାଇଁ ସହିତ
ବୋଇଲେ ଶୁଣନ୍ତୁ ବାରେ ଅପୂର୍ବ ଚରିତ୍ର ।
ସୃଷ୍ଟି କେତେ କାଳ ଅନ୍ତେ ଯଥ ତାଙ୍କ ଚିତ୍ତ
ସୃଷ୍ଟି କରିବା ନିମନ୍ତେ ହେଲା ପ୍ରବର୍ତ୍ତିତ ।
ତେଣୁ ତାଙ୍କ କଣ୍ଠ ଦେଶୁ ଜନ୍ମିଲେ ନନ୍ଦନ
ମରୀଚି, ମିତ୍ର, ନାରଦ ଆଦି ତିନିଜଣ ।
ବାଳ ସୂର୍ଯ୍ୟ ସମ ଆଭା ତାଙ୍କର ଦିଶଇ
ନାରଦ ସଭିଙ୍କ ପରେ ଶୋଭା ବଳଶଇ ।
ଧାତାଙ୍କର ନାମ ହେଣୁ ଅଟଇ ନାରଦ
ତେଣୁ ସେ ପୁତ୍ରର ନାମ ଦେଲେ ସେ ନାରଦ
ପୁଣି ଧାତାଙ୍କ ମନରୁ ହେଲେ ଯେଉଁ ସୁତ
ପ୍ରଚେତା ବୋଲିଣ ନାମ ଦେଲେ ଲୋକତାତ ।
ଦକ୍ଷ ପାଦୁଶରୁ ଜାତ ହେବା ପୁତ୍ରଙ୍କର
ଦକ୍ଷ ବୋଲିକରି ନାମ ହୋଇଲା ପ୍ରସର ।
ସକଳ କାର୍ଯ୍ୟରେ ହେଣୁ ଦକ୍ଷ ସେ ଅଟଇ
ଦକ୍ଷ ନାମ ତିନିପୁରେ ବ୍ୟାପିଗଲା ତହିଁ ।
କର୍ଦ୍ଦମ ଶବ୍ଦର ଅର୍ଥ ଛାୟା ବୋଲିକରି
ଉଲ୍ଲେଖ କରିଅଛନ୍ତି ବେଦେ କୃଷ୍ଣଧାରୀ ।
ସେ ପୁତ୍ର ଧାତାଙ୍କ ଛାୟା ମଧ୍ୟରୁ ଜନ୍ମନ୍ତେ
କର୍ଦ୍ଦମ ନାମ ହେଲେକ ଧାତା ତୋଷ ଚିତ୍ତେ ।
ତେଜର ଅନ୍ୟ ନାମ ଯେ ମରୀଚି ଅଟଇ
ସେ ହେତୁ ତେଜସ୍ୱୀ ପୁତ୍ର ହେବେ ଲୋକସାଇଁ
ତାପରେ ଆନ ଯେ ସୁତ ହୋଇଲା ସମ୍ଭୂତ
ଋଭୁ ନାମ ତାର ହେଲା ତ୍ରିପୁରେ ବିଖ୍ୟାତ ।
ପ୍ରଧାନ ଅଙ୍ଗ ଯେ ମୁଖ ଅଟଇ ଯହିଁରୁ
ଉତ୍ପନ୍ନ ହୋଇଲେ ଯେଉଁ ପୁତ୍ର ଅଙ୍ଗରୁ ।
ମହାତେଜୋବନ୍ତ ସେହୁ ଦେଖା ଯାଉଥିଲେ
ଇଗ ବୋଲି ତେଜକୁ ତ ବୋଲନ୍ତି ସକଳେ
ସେ ହେତୁ ଅଙ୍ଗିରା ନାମ ଦେଲେ ଯେ ସୁତର
ଏହାପରେ ଆନଗାଥା ଶୁଣ ସୁଜ୍ଞନର ।
ପୁଣି ଅତି ତେଜଶୀଳ ଅଟଇଟି ଯେହୁଁ
ଭୃଗୁ ବୋଲିକରି ହେ ପ୍ରବର୍ତ୍ତିଲ ତହୁଁ ।
ତେଣୁ ତେଜୋପ୍ରାନ ପୁତ୍ର ହୋଇବାରୁ ଜାତ
ଭୃଗୁ ନାମ ଦେଲେ ଆନନ୍ଦରେ ଲୋକତାତ ।
ଆବର ଯେଉଁ ନନ୍ଦନ ହୋଇଲା ଉତ୍ପନ୍ନ
ଅରୁଣ ନାମ ତାହାର ଦେଲେ ଲୋକମାନ୍ୟ ।
ପ୍ରଜନ୍ମ ଜାତ ହେବାରୁ ଏହର କୁମର
ହଂସୀ ବୋଲି ତାହାନାମ ଦେଲେ ବେଦବର ।
ଆପଣାର ଯୋଗବଳେ ପରମହଂସକୁ
ଦରଶନ କରି ତୋଷ ହୋଇଲେ ମନକୁ ।
ତାହାପରେ ଯେଉଁ ସୁତ ସମ୍ଭୂତ ହୋଇଲା ।
ଅତି ଶାନ୍ତ ଶିଷ୍ଟ ପଣ ତାର ଦେଖାଗଲା ।
ତେଣୁ ଧର୍ମର କରଣ ସାବିତ୍ରୀ ରମଣ
ବଶିଷ୍ଠ ତାହାର ନାମ କରିଲେ ବଖାଣ ।
ସେ ପୁତ୍ର ସଦା ସର୍ବଦା ତପେ ରତ ହୋଇ
ପଣ୍ଡଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲାଇଲେ ସେହି ।
ପୁଲ ଶବ୍ଦର ଅର୍ଥ ଅଟେ ତପ ଜାଣି
ତପସ୍ୱୀଙ୍କ ମଧ୍ୟେ ସାର ହେଲା ସେ ନନ୍ଦନ ।
ତାହାର ନାମ ପୁଲସ୍ତ୍ୟ ଦେଲେ ପିତାମହ
ତତପରେ ଆନଗାଥା ଶୁଣ ଋଷିଶ୍ରେଷ୍ଠ ।
ବ୍ରହ୍ମାଙ୍କଠାରେ ଯେ ସୁତ କରିଲା ଉକଣ୍ଠ
ଅତ୍ରି ନାମ ତାର ବାଛିଦେଲେ ଲୋକପତି ।
ଯେ ପୁତ୍ର ମସ୍ତକଦେଶେ ଅନଳ ସମାନ
ପଞ୍ଚ ଗୋଟି ଜଟା ଦିଶୁଥିଲା ଶୋଭାବନ ।
ତପସ୍ୟା ତେଜରୁ ସେହି ଜନମି ଥିବାରୁ
ପଞ୍ଚଶିଖାନାମ ତାକୁ ଦେଲେ ଲୋକଗୁରୁ ।
ମରୁ ଦ୍ୱୀପ ମଧ୍ୟେ ସେହୁ ପୂର୍ବ ଜନମରେ
ତପ କରିଥିଲେ ଲୟ ଲଗାଇ ବିଷ୍ଣୁରେ ।
ତେଣୁ ଆନ୍ତରଆତମା ନାମ ତାହାଙ୍କର
ଦେଲେ ଚନ୍ତାକରି ହୃଦପଦ୍ମେ ବେଦବର ।
ଆବର ଋଷୀ ଶେଖର ଅଟଇ ଯେ ସୁତ
ତର୍କ ବିତର୍କରେ ଅଟେ ଯେ ମହା ପଣ୍ଡିତ ।
ତାହାଙ୍କୁ ଦେଖିଣ ଧାତା କୃପତ ହୋଇଲେ
ବୋଢୁ ବୋଲି ତାର ନାମ ବାଛି ବାଛି ଦେଲେ ।
ଏଥୁଅନ୍ତେ ହେଲା ଯେଉଁ ଅନ୍ୟତମ ସୁତ
ତପସ୍ୟା ବଳରେ ଦିଶୁଥାଇ ଦୀପ୍ତିମନ୍ତ ।

ରୁଦ ଶବଦରୁ ଯାନ୍ତି ଅର୍ଥ ତ ମୁଞ୍ଚଇ
ସେ ହେଲୁନ୍ତ ରୁଦ ନାମ ଦେଲେ ଧାତା ଇଷ୍ଟି
ତାପରେ ନୋବର ବ୍ରହ୍ମାଙ୍କ ନେବଦନ୍ତୁ ଜାତ
ନମେ ହୋଇଥିଲେ ଯେଉଁ ଏଗାରଟି ସୁତ ।
ଘେବନୁ ଜନ୍ମ ହେବାରୁ ରୁଦ୍ର ନାମ ପାଇ
ନୋଧବେହଲେ କୋପକାଳେ ହେବାରୁଟି ଯେହ୍ନ
ସନ୍ଦେହ ଚତୁରେ ଏହିକାଳେ ସଉନକ
ବିନୟରେ ପଚାରିଲେ ସଉତିଙ୍କୁ ବାକ୍ୟ ।
ଶୁନ ବଚନ ସନ୍ତୋଷ ଆହେ ମୁନିବର
ମାନ ଗୋଟିଏ କଥାରେ ସନ୍ଦେହ ମୋହର ।
ପଚାରୁଛୁ ଏକ କଥା ଶୁଣ ହୋଇ ମନ
ଶୁଣିଛୁ ମୁଁ ରୁଦ୍ରଙ୍କର ନାମ ପଞ୍ଚାନନ ।
ସକଳ ଦେବଙ୍କ ପରେ ଅଟନ୍ତି ସେ ସାର
ଯୋଗ ମାୟା ରହିଛନ୍ତି ପାଶରେ ତାଙ୍କର ।
ପୁଣି ସୌତିଙ୍କୁ ଅନାଇ ସୌନକ ବୋଇଲେ
ଯେଉଁ ରୁଦ୍ରଙ୍କର କଥା ଏଠାରେ କହିଲେ ।
ଏ ରୁଦ୍ରକି ଏକାଦଶ ରୁଦ୍ରଙ୍କ ସଙ୍ଗର
ତାହା ବିସ୍ତାରଣ କାରେ କହ ତପୀବର ।
କି ଅବା ଅନ୍ୟ କେଉଁ ରୁଦ୍ର ସେ ଅଟନ୍ତି
ଶୁଣିବା ପାଇଁକି ଆମ୍ଭ ବଳଅଛୁ ମତି ।
ସଉତି କହିଲେ ଯେବେ ପଚାରିଲ ମୋତେ
ବିସ୍ତାରି କହୁଛୁ ତାହା ଶୁଣ ସୁ ଚିତ୍ତରେ ।
ସତ୍ୱ ଗୁଣରେ ଯେ ବିଷ୍ଣୁ ପାଳନ କରନ୍ତି
ରଜୋଗୁଣେ ଧାତା ପୁଣି ସୃଷ୍ଟି ତିଆରନ୍ତି ।
ତମୋଗୁଣବନ୍ତ ଯେତେ ରୁଦ୍ରମାନେ ଜାଣ
ମହାଭୟଙ୍କର ତାଙ୍କ ରୂପଟି ପ୍ରମାଣ ।
ଶଙ୍କରଙ୍କ ଅଂଶୁଁ ଯେଉଁ ରୁଦ୍ର ହେଲେ ଜାତ
କାଳାଗ୍ନି ରୁଦ୍ର ବୋଲନ୍ତି ତାଙ୍କୁ ଏ ଜଗତ ।
ଶୁଦ୍ଧ ସତ୍ୱଗୁଣ ମୟ ଯୋଗମାୟା ପତି
ଏହି ଏକାଦଶ ମଧ୍ୟୁ ଭିନ୍ନ ସେ ଅଟନ୍ତି ।
ସଂହାରକ ବୋଲି ତାଙ୍କୁ ନ ଜାଣିବା ନର
କୁହନ୍ତି ବୃଥାରେ ଶୁଣ ଆହେ ତପୀବର ।
ଶ୍ରୀକୃଷ୍ଣଙ୍କ କଳା ଯେନ ବିଷ୍ଣୁ ସଦାଶିବ
ଜାତ ହୋଇଛନ୍ତି ଲଭି ସତ୍ୟ ଗୁଣ ଲବ ।

ରୁଦ୍ରଙ୍କ ଜନମ ଗାଥା ମୁଣ୍ଡି ସମୟରେ
କହୁଛୁ ପ୍ରକାଶ କର ସବେ ସୁଚିତ୍ତରେ ।
ଏବେ କଥା ଆଉ ଅଛି ମନ୍ଦ୍ରଖବା ହେଲ
ଶିବୁ ଅଛି କହା ମନୁଁ ପାଶୋଷଣ ହେଲ ।
ଈଶ୍ୱର ମାୟାରେ ମୁନି ମାନଙ୍କର ମଧ୍ୟ
ମତିଭ୍ରମ ହେବା କଥା ନୁହଇଁ ଅସାଧ୍ୟ ।
ସନକ ସନନ୍ଦ ସନାତନ ଯେ ଆହର
ଚତୁର୍ଥ ଅଟନ୍ତି ଯେଉଁ ସନତ କୁମାର ।
ବ୍ରହ୍ମାଙ୍କ ଶରୀର ମଧ୍ୟୁ ଏ ସବେ ଜନ୍ମ ଲେ
ସୃଷ୍ଟିକର ବୋଲି ତାଙ୍କୁ ବ୍ରହ୍ମା ଆଜ୍ଞାଦେଲେ ।
ନ ଶୁଣି ତାହାଙ୍କ କଥା ତପ କରିବାକୁ
ବାହାର ଯିବାରୁ ସବେ ବନସ୍ତ ମଧ୍ୟକୁ ।
କୋଧଭରେ ପିତାମହ ହେଲେ ଉଗ୍ରମୂର୍ତ୍ତି
ସେହିକାଳେ ରୁଦ୍ରଗଣଙ୍କର ଉତପତ୍ତି ।
ହୋଇଅଛି ଆହେ ମୁନିଗଣ ମନ ଦେଇ
ଶୁଣ ଏଥୁଅନ୍ତେ ଯାହା ହେଲ କହୁଥାଇଁ ।
ସନକ ସାନନ୍ଦ ଦୁହେଁ ଆନନ୍ଦ ଦାତକ
ଆନନ୍ଦରେ ପରିପୂର୍ଣ୍ଣ ଅଟନ୍ତି ବାଳକ ।
ଶ୍ରୀକୃଷ୍ଣ ସନାତନ ନିତ୍ୟ ପୂର୍ଣ୍ଣରୂପ
ତାହାଙ୍କର ଭକ୍ତମଧ୍ୟେ ତାଙ୍କର ସ୍ୱରୂପ ।
ସେ ସକାଶୁ କୃଷ୍ଣ ଭକ୍ତ ହେବାକୁ ଚତୁର୍ଥ
ବାଳକଟି ସନତନ ନାମ କଲେ ସ୍ୱାର୍ଥ ।
ସନତ ଶବଦର ଅର୍ଥ ନିତ୍ୟ ବୋଲିଯାଏ
କୁମାରତ ବାଳକଙ୍କୁ ବୋଲନ୍ତି ସବୁଁଏ ।
ଏ ଦୁଇ ପଦକୁ ଯୁକ୍ତ କରି ପ୍ରଜାପତି
ସନତ୍କୁମାର ନାମ ଦେଲେ ବହୁ ପ୍ରୀତି ।
ବ୍ରହ୍ମା ଆଉ ବାଳକଙ୍କ ନାମରେ ବ୍ୟୁତ୍ପତ୍ତି
ଶୁଣିଲତ ଯଥାକ୍ରମେ ଆହେ ମହାମତି ।
ନାରଦ ଚରିତ ଏବେ କହିବ ବିସ୍ତାରି
ଶୁଣ ସାବଧାନ ହୋଇ ମନ ସ୍ଥିର କରି ।
ଏହାପରେ ଆନ ଗାଥା କରିବ ଗାୟନ
ଗୀତ ଛନ୍ଦେ ଲକ୍ଷ୍ମୀଲେଖେ କ୍ଷେତ୍ରବାସୀ ଦୀନ ।

———

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଧାତାଙ୍କଠାରୁ ମୁନିମାନଙ୍କ ଉତ୍ପତ୍ତି ବିବରଣେ
ନାମ ଷଡ୍ବିଂଶୋଽଧ୍ୟାୟ ।

# ସପ୍ତବିଂଶ ଅଧ୍ୟାୟ

## ନାରଦଙ୍କର ବଦାନ୍ୟରେ ଧାତାଙ୍କର ଖେଦ

ଏହାପରେ ଆନକଥା ଶୁଣ ଦେଇ ମନ
ଏ ବ୍ରହ୍ମ ବୈବର୍ତ୍ତ ଗ୍ରନ୍ଥ ଅଟଇଁ ମହାନ ।
ଶ୍ରଦ୍ଧା ଆଉ ଭକତିରେ ଯେ ଏହା ପଢ଼ିବ
ଅନ୍ତକାଳେ ବ୍ରହ୍ମ ପଦେ ସେହୁ ଲୀନ ହେବ ।
ସଉତି ବୋଇଲେ ବାରେ ଶୁଣ ହେ ସନକ
ସୃଷ୍ଟି କରଣେ ସୁତଙ୍କୁ ସାବଧି ନାୟକ ।
ବୋଇଲେ ହେ ପୁତ୍ରମାନେ ଶୁଣ ମୋର ଗିର
ସରଜନା କର ତୁମ୍ଭେ ଏ ସୃଷ୍ଟି ସଞ୍ଚାର ।
ନାରଦତ ସେ ସମୟେ କରୁଥିଲେ ନାହିଁ
ଡାକିଣ ତାହାଙ୍କୁ ପୁଣି ପାଶରେ ବସାଇ ।
ସତ୍ୟ ତଥ୍ୟ ହିତକର ଅଟେ ଯେଉଁ ବାଣୀ
କହିଲେ ମଧୁର ଭାବେ ସମସ୍ତଙ୍କୁ ଜାଣି ।
ବୋଇଲେ ରେ ସୁତ ମୋର ଶ୍ରବଣର ନିଧି
ସଂସାର ବିଷୟ ତୋତେ କହିବା ଅବଧି ।
ଜ୍ଞାନ ଦୀପ ଶିଖାରେ ତୁ ଅଜ୍ଞାନ ତିମିର
ଦୂର କରି ଅଟୁ ପୁଣି ଅଟୁ ଶାନ୍ତ ଧୀର ।
ବ୍ରହ୍ମାଣ୍ଡରେ ସବୁଠାରୁ ପୂଜ୍ୟ ହୋଇକରି
ନ ମିଳିବ ଆଉ କେହି ପିତାରଙ୍କ ପରି ।
ବିଦ୍ୟାଦାତା ମନ୍ତ୍ରଦାତା ନୁହଁନ୍ତି ସମାନ ।
ପିତାର ସଦୃଶ ସେହି ଭକତି ଭାଜନ ।
ଆରେ ସୁତ ମୁଁ ତୋହର ପିତା କନ୍ୟାଦାତା
ଆବର ଅଟଇ ମଧ୍ୟ ପାଳନ କରତା ।
ମୋହର ଉପତ ଲାଗି ମୋ ଅନୁଜ୍ଞା ମାନ
ଗୃହ ଜଞ୍ଜାଳରେ ମନଦିଅ ପତ୍ନୀ ସେନ ।
ଶ୍ରୀଗୁରୁ ଆଦେଶ ଯେହୁ କରଇ ପାଳନ
ସେହିଟି ଉତ୍ତମ ଶିଷ୍ୟ ମାନଙ୍କେ ପ୍ରଧାନ ।
ଅବଜ୍ଞା କରଇ ଯେହୁ ଅଜ୍ଞାନ ତଉରେ
ତାହାର ମଙ୍ଗଳ କେବେଁ ନୁହେଁ କେଉଁଠାରେ
ଅକୁଣ୍ଠିତ ଚିତ୍ତେ ଯେହୁ ଗୁରୁଙ୍କ ବଚନ
ଆଦର ସହିତ କରୁଥିବ ଯେ ପାଳନ ।
ସେହି ଯେ ପଣ୍ଡିତ ଜ୍ଞାନୀ ପୁଣ୍ୟବନ୍ତ ନର
ତା ସଙ୍ଗେ ସମାନ କେହୁ ନୁହେଁ ଭବପୁର ।

ସବୁବେଳେ ହେଉଥାଏ ତାହାର ମଙ୍ଗଳ
ଏଥିରେ ସନ୍ଦେହ କିଛି ମନରେ ନ ଭାଳ ।
ବ୍ରହ୍ମଚର୍ଯ୍ୟ ଆଦି ସବୁ ଆଶ୍ରମ ମଧ୍ୟରେ
ଗୃହସ୍ଥଠୁଁ ପୁଣ୍ୟବନ୍ତ କେ ହୋଇ ନ ପାରେ
ସ୍ତ୍ରୀ ପୁତ୍ର ପୋଷ ଧନ ପୁରିତ ମନ୍ଦିର
ଅଶେଷ ତପସ୍ୟା ଫଳ ଜାଣରେ କୁମର ।
ଯେଉଁପରି କୂପ ପାଶେ ଥିବା ଜଳ କୁଣ୍ଡ
ପାଶେ ଯାଇ ଗାଈ ଗୋରୁମାନେ ହୋନ୍ତି ତୁଣ୍ଡ
ତେମନ୍ତ ଗୃହସ୍ଥ ଘରେ ପିତୃମାନେ ନିତ
ଅତିଥି ରୂପରେ ଆସି ପ୍ରବେଶ ହୁଅନ୍ତି ।
ଆବର ପୂର୍ଣ୍ଣିମା ଆଦି ପର୍ବମାନ ଯେତେ
ସେ ସମୟେ ପୂଜା ଦେବାକୁ ତୋଷତେ ।
ସମସ୍ତ ଦେବତାମାନେ ସେଠାରେ ମିଳନ୍ତି
ପୂଜା ପାଇ ଗୃହସ୍ଥଙ୍କୁ ଫଳଦେଇ ଯାନ୍ତି ।
ଗୃହୀମାନେ ନିତ୍ୟକର୍ମ ବିଧି ଅନୁସାରେ
କରନ୍ତି ଭକତି ରଖି ଈଶ୍ୱରଙ୍କ ଠାରେ ।
ମର୍ତ୍ତ୍ୟ ଲୋକରେ ସେ ସୁଖଭୋଗ କରି ସାରି
ଦେହଅନ୍ତେ ପୁଣ୍ୟବଳେ ଯାନ୍ତି ସ୍ୱର୍ଗପୁରୀ ।
ନିଜ ଧର୍ମ ପାଳି ଯେଉଁ ଗୃହସ୍ଥ ଚଳଇ
ଜୀର୍ଣ୍ଣ ଥାଉଁ ୨ ସେହୁ ମୁକତି ଲଭଇ ।
ଧନ ଜନ ଗୋପଲକ୍ଷ୍ମୀ ପୁଣ୍ୟ ଯଶ କୀର୍ତ୍ତି
ତାହାପାଶେ ସ୍ୱୟଁ ଆସି ଆଶ୍ରୟ କରନ୍ତି ।
ଯଶ ଅରଜିଲା ଲୋକ ମୃତ୍ୟୁହେଲେ ତାର
ଜୀଇଁକରି ରହିଥାଇ କୀର୍ତ୍ତିର ଶରୀର ।
କୀର୍ତ୍ତିହୀନ ଜନ ଜୀବନରେ ଥିଲେ ହେଲେ
ମଲାପରି ଅଟଇ ସେ ଜାଣିଥାଅ ହେଲେ ।
ଏହିରୂପେ ଧାତାଙ୍କର ବଚନକୁ ଶୁଣି
ଘଡ଼ିଏ ଯାଏ ନାରଦ ମନେ ୨ ଗୁଣି ।
ଭୟ ଭକ୍ତି ସେନ ମନେ ବିରସ ହୋଇଲେ
ବିନୟ ଭାବରେ ପୁଣି ବଚନ କହିଲେ ।
ବୋଇଲେ ହେ ତାତ ପୂର୍ବେ ଆଉ ଜନକରେ
ତର୍କ କରିଥିଲି ଆପଣଙ୍କ ସହିତରେ ।

ସେହି ଶାପ ଯୋଗେ ହେଲ ଗନ୍ଧର୍ବ ବୃଷଳ
ତୁମ୍ଭେ ମଧ୍ୟ ମୋର ଶାପ ପାଇଣ ସେ କାଳ ।
ଅସ୍ପୃଶ୍ୟ ହୋଇ ରହିଲ ସକଳ ଜନରେ
ଦୁହେଁ ଦୁହିଁଙ୍କ ଶାପରେ ଏହି ପରକାରେ ।
ପିତା ପୁତ୍ର ହୋଇ ମଧ୍ୟ ପରସ୍ପର କ୍ଷତ
କରାଇଲେ ଦୈବ ଯୋଗେ କ୍ରୋଧକରି ମତ ।
ମୁହିଁ ଏତେକାଳେ ଆସି ହୋଇଲି ମୁକତ
ତୁମ୍ଭେ ମୁକ୍ତ ହୋଇନାହଁ ଆଜପର୍ଯ୍ୟନ୍ତ ।
ଏଣୁ ବୋଲୁଅଛି ଯେବେ ବିରୋଧ କରିବ
ଦୋଷଭଜନା କେବେହେଁ ତହୁଁ ଗୁଣ ନ ଲଭିବ ।
ଶ୍ରୀହରିଙ୍କ ପଦ୍ମପାଦେ ନିଷ୍ଠଲେ ଭକତି
କରିବା ପାଇଁ କି ଯେ ବଢ଼ଇ ଅନୁମତି ।
ସେହି ଏକା ପିତା ବନ୍ଧୁ ପୁତ୍ର ସ୍ୱଜନ ଗୁରୁ
ଅଧିକ ମଙ୍ଗଳକାରୀ ନାହିଁକେ ତାଠାରୁ
ଅଜ୍ଞାନରେ ପୁତ୍ରେ ଯେବେ ଆସିଲ ମାର୍ଗରେ
ଯାଆନ୍ତି ଅଥବା ଦୋଷ କରନ୍ତି ଭୁଲରେ ।
ବୟାକରି ଯେଉଁ ପିତା ନିବର୍ତ୍ତାଇ ନେବ
ଉତ୍ତମ ପଥରେ ଯିବାପାଇଁ ଶିଖାଇବ ।
କରୁଣା ସାଗର ବୋଲି ବୁଝି ତାହାଠାରେ
ହୋଇବ ନିଷ୍ଠସ୍ଥ ପୁତ୍ର ମାନଙ୍କର ଖରେ ।
ଶ୍ରୀକୃଷ୍ଣଙ୍କଠାରେ ଭକ୍ତି କରିବା ସୁତଙ୍କୁ
ନେବ ଯେହ୍ନେ ନିବର୍ତ୍ତାଇ ଆନ ବିଷୟକୁ ।
ସେ ପିତା ତନୟଙ୍କର ମଙ୍ଗଳ କାମନା
କରୁଅଛି ବୋଲି ମନେ ହେବ କି ଭାବନା ।
ତାର ପରିଗ୍ରହ କଲେ ଦୁଃଖ ବିନା ଆଉ
ନ ମିଳଇ କେଉଁ କଥା ଆହେ ମହାବାହୁ ।
ତପସ୍ୟା ସ୍ୱର୍ଗ କାମନା ମୁକ୍ତି ସାଧନର
ପ୍ରତିବନ୍ଧକ ବୋଲିଣ ମନରେ ବିଚାର ।
ତିନ ପରକାରେ ଗୃହୀ ଜନମାନଙ୍କର
ରମଣୀଏ ଆଶ୍ରେକରି ଥାଆନ୍ତି ପାଶର ।
କହୁଅଛି ତାହାଙ୍କର ନାମ ମାନ ଶୁଣ
ଭୋଗଯୋଗ୍ୟ ପତିବ୍ରତା କୁଳଟା ଯେ ପୁଣ ।
ଥାଏ ସବୁଙ୍କ ଚିତ୍ତରେ ଭୋଗ ଅଭିଳାଷ
ନିତି ବାଞ୍ଛା କରୁଥାନ୍ତି ସ୍ୱର୍ଗେ ରହି ବାସ ।
ପତିବ୍ରତା ନାରୀ ଆନଜନ ଉପୁକରି
ଶୁଣି ଆପଣାର ଯଶ ଗୁଣ ଇଚ୍ଛାକରି ।

ପତି ମାନଙ୍କେ ରହି କାମ ଭୋଗ ଅଭିପ୍ରାୟେ
ତାର ମନକୁ ରଞ୍ଜାଇ ସେବା କରୁଥାଏ ।
କେବଳ କାମଭୋଗ ଯୋଗ୍ୟ ଅଟେ ସେ ନାୟିକା
ମେ ସ୍ୱାର୍ଥ ହୋଇଣ ପତି ସଙ୍ଗ ଇଚ୍ଛେ ଏକା ।
ସେବା କରୁଥାଏ ଭୋଗ ପାଉଥିବା ଯାଏ
କଷ୍ଟରେ ଜଣା ହୋଇଲେ କହେ କଟୂବାକ୍ୟ
ଅସ୍ତ୍ର ଅଳଙ୍କାର ଯେତେ ଧନ ପାଉଥାଏ
ପତି ପାଶୁଁ କ୍ଷଣେମାତ୍ର ଅନ୍ତର ନ ହୁଏ ।
ମାତ୍ର ଯେଉଁଦିନ ତାହା ନ ପାଏ ସେ ନାରୀ
ଅନ୍ୟ ପତିପାଶେ ଗଲାପାଏ ଇଚ୍ଛାକରି ।
କୁଳଟା ଅଟଇ କୁଳ ଅଙ୍ଗାର ପରାୟେ
କୁଳର ମାନ ମହତ୍ତ୍ୱ କରଇ ସେ କ୍ଷୟେ ।
ଲୋକ ଦେଖାଣିଆ ପତି ସେବା କରୁଥାଏ
କିନ୍ତୁ ତିଳେ ମାତ୍ର ତାର ଅନ୍ତରେ ନ ଥାଏ
କାମରେ ଆତୁର ହୋଇ ପର ପୁରୁଷକୁ
ସବୁବେଳେ ଇଚ୍ଛା କରୁଥାଏ ସେ ମନକୁ ।
ଆପଣା ପତି ଆଗରେ କପଟ ଆଚାର
କରୁଥାଏ ଗୋଟାପଣେ ଅଟେ ମୁଁ ତୁମ୍ଭର ।
ସଦା ମନ ମଧ୍ୟେ ତାର ସୁଯୋଗେ ଖୋଜଇ
ସୁବିଧା ପାଇଲେ ଗୁପତରେ ସେ ରମଇ ।
ଆବର ଯାର ଗୁରୁଷ ପ୍ରେମରେ ପଡ଼ିଣ
ଆପଣା ପତିଙ୍କୁ କେତେ ମାରି ଛନ୍ତି ଜାଣ ।
ତେମନ୍ତ ନାରୀଙ୍କୁ ଯେହ୍ନେ ବିଶ୍ୱାସ କରଇ
ଆହେ ତାତ ନିଶ୍ଚୟ ସେ ବିନାଶ ହୁଅଇ ।
ତିନ ପରକାରେ ନାରୀ ଜାତି ଯେ ଅଟନ୍ତି
ଉତ୍ତମ ମଧ୍ୟମ ପୁଣି ଅଧମ ବୋଲନ୍ତି ।
ତାହାଙ୍କ ହୃଦୟ ଯୋଗୀମାନେ ଯେ ଜାଣନ୍ତି
ତେଣୁ ତାଙ୍କ ନିକଟରୁ ଦୂରରେ ରହନ୍ତି ।
ଅଜ୍ଞାନୀମାନେ ନ ଚିହ୍ନି ପାରି ସେ ନାରୀଙ୍କୁ
ପତଙ୍ଗ ପରି ଧାଆନ୍ତି ପୋଡ଼ି ମରିବାକୁ ।
ଶରଦ ପଦ୍ମ ପରାୟେ ରମଣୀଙ୍କ ମୁଖ
ଦେଖିବା ମାତ୍ରକେ ଜାତ ହେଉଥାଏ ସୁଖ ।
ସେମାନେ ସ୍ତ୍ରୀ ଅନଳରେ ପତଙ୍ଗ ସମାନ
ରମଣୀ ପ୍ରେମରେ ପଡ଼ି ହରାଅନ୍ତି ଜ୍ଞାନ ।
କିନ୍ତୁ ଋଷି ମୁନିମାନେ ତେମନ୍ତ ନୁହନ୍ତି
ନାୟିକାଙ୍କ ମୁଖ ଦେଖି କେବେହେଁ ନ ଭୁଲନ୍ତି ।

ଯେଉଁ ସମୟରେ କୋପ କରନ୍ତି ପ୍ରକାଶ
ସେ ତତକାଳ କ୍ଷଣକରେ କରିଦ୍ୟନ୍ତି ଭସ୍ମ ।
ରମଣୀଙ୍କର ପ୍ରେମରେ ସେହୁ ନ ଭୁଲନ୍ତି
ତେଣୁ କାମକୁ ଆଚାର୍ଯ୍ୟ କହନ୍ତି ଜଣିଛନ୍ତି ।
ଆନ ମାନଙ୍କ ପାଖରେ କହିଣ ଛଳନା
କରନ୍ତି ରମଣୀମାନେ ତାଙ୍କ ବୁଦ୍ଧି ହଣା ।
ପୁରୁଷଙ୍କ ଠାରୁ ଆଠଗୁଣ ଅଧିକରେ
କାମ ଅଭିଳାଷ ଥାଏ ନାରୀଙ୍କ ଅଙ୍ଗରେ ।
ଆହାର କରନ୍ତି ମଧ୍ୟ ସେମାନେ ଦ୍ୱିଗୁଣ
କପଟ ବୁଦ୍ଧି ନିଷ୍ଠୁର ଅଟେ ବହୁଗୁଣ ।
ଆବର ନବଗୁଣ କ୍ରୋଧ ତାଙ୍କର ଅଟଇ
ମନ୍ଦ ବ୍ୟବହାର ଷଡଗୁଣ ଥାଏ ରହି ।
କଉଟି ପୁରୁଷଙ୍କ ସାଥେ ଯେ ସଙ୍ଗ ହୁଅଇ
ବିବେକ ଜ୍ଞାନ ତାହାର ଦେହୁଁ ନାଶ ଯାଇ ।
ପୁରୁଷର ସର୍ବ ନାଶ କାରଣୀ କାମିନୀ
ତେଣୁ ତାଙ୍କ ସଙ୍ଗ ତେଜ୍ୟା କରନ୍ତି ସୁଜ୍ଞାନୀ ।
ଏପରି ଅନେକ ଦୋଷ ଯେଉଁ ନାରୀଠାରେ
କେଉଁ ସୁଖ ମିଳିବ ବା ତାହାଙ୍କ ସଙ୍ଗରେ ।
ମଳମୂତ୍ର କଫ ବାତ ପିତ୍ତ ଶୁକ୍ର ରକ୍ତ
ଯେଉଁ ଶରୀର ମଧ୍ୟରେ ହୋଇଛି ପୂରିତ ।
ସେଥିରେ କ୍ରୀଡ଼ା କରିଲେ ମିଳିବ କି ଶାନ୍ତି
ବିଚାର କରିଣ କୁହ ହେ ଜଗତ ପତି ।
କାମିନୀ କାଞ୍ଚନ ମୋହ ଯାହାକୁ ଗ୍ରାସଇ
ତେଜ ଓଜ ବୁଦ୍ଧି ଆଦି ତାର ନାଶ ଯାଇ ।
ଦିବସରେ ବାକ୍ୟାଳାପ କରେ ଯେ ନାରୀରେ
ଧନ ଜନ ଆଦି ନାଶ ହୁଏ ଅକ୍ଳେଶରେ ।
ଆବର ଅଧିକ ଯେହୁ ଆଶକ୍ତ ହୁଅଇ
କ୍ଷୟ ବ୍ୟାଧିରେ ପଡ଼ିଣ ତାର ପ୍ରାଣ ଯାଇ ।
ନାରୀ ବଶ ମାନବର ନ ରହେ ପୌରୁଷ
କଳହ କରିଲେ ମାନ ହୋଇଯାଏ ନାଶ ।
ଏମାନଙ୍କ ବିଶ୍ୱାସ କଲେ ସର୍ବ ନାଶ ହୁଏ
ଏ ସକାଶୁ ସ୍ତ୍ରୀ ସଙ୍ଗ ସୁଖ ଯେ ନ ଥାଏ ।
ଧନ୍ୟ ଆବର ତେଜସ୍ୱୀ ହୋଇବ ସେ ଜନ
ସ୍ତ୍ରୀ ବଶକୁ ଅଟଇ ସେହି ଯେ ଭଜନ ।
ଧନହୀନ ଆଉ ରୋଗୀ ଯେବେ ହୁଏ ପତି
ଲୋକ ଅପବାଦ ନିନ୍ଦା ଭୟରେ ଯୁବତୀ ।
ସେ ବୃଦ୍ଧ ସ୍ୱାମୀ ପାଶରୁ ଯାଇ ନ ପାରଇ
ଅନହେଳା କଲେ ଅଳ୍ପ ଖାଇବାକୁ ଦେଇ ।
ସର୍ବଦା ମନ ମଧ୍ୟରେ ବାଞ୍ଛେ ସେହୁ ନାରୀ
ମରିଗଲେ ବୃଦ୍ଧ ସୁଖ ହୁଅନ୍ତା ମୋହର ।
ଏମନ୍ତ ମନରେ ବାଞ୍ଛା କରେ ସେ ରମଣୀ
ସମୟରେ ବିଷ ଦିଏ ପ୍ରାଣ ନଏ ଜାଣି ।
ଏହିପରି ନାନା ସବେ ଦୁଃଖ ଭୋଗମାନ
ଗୃହୀ ଲୋକର ହୁଅଇ ଆହେ ପିତା ଜାଣ ।
ଆପଣତ ସର୍ବଜ୍ଞାନୀ କିବା ଅଗୋଚର
ଅଧିକ କହିବା ସିନା ବୃଥା ଅଟେ ଗିର ।
ଧରୁଛି ପୟର ମୋତେ ଅନୁଗ୍ରହ କରି
ବିଦାୟ ଦିଅନ୍ତୁ ତାତ ଯିବି ତପକରି ।
ଆପଣ ଅଟନ୍ତି ଯେଣୁ କଳ୍ପତରୁ ସମ
ଶ୍ରୀକୃଷ୍ଣ ଭକତ ମାତେ ଦିଅ ମହାତମ ।
ଏମନ୍ତ କହି ଚରଣେ ହୋଇ ଦଣ୍ଡବତ
ଆଜ୍ଞାଥରେ ଯିବାପାଇଁ ମାଗିଲେ ତୁରିତ ।
ପୁଣପୁଣ ଭକ୍ତିଭରେ ପ୍ରଣିପାତ କରି
ଉଠିଲେ ଉଦ୍‌ବେଗେ ଦଣ୍ଡ କମଣ୍ଡଳୁ ଧରି ।
ଦେଖି ପ୍ରଜାପତି ତାହା ବିମନ ହୋଇଲେ
ସାମାନ୍ୟ ଜନଙ୍କ ପରି ରୋଦନ କରିଲେ ।
ତାହାପରେ କୁମରକୁ କରି ଆଲିଙ୍ଗନ
ସ୍ନେହରେ ଧରିଲେ କୋଳେ ଦେଇଣ ଚୁମ୍ବନ
ଜାନୁପରେ ବସାଇଣ ଅତି ଆନନ୍ଦରେ
ଘାରି ହୋଇଲେ ନନ୍ଦନ ବିରହ ଚିନ୍ତାରେ ।
ଭୁବନ ସର୍ଜନା କର୍ତ୍ତା ଯୋଗୀଙ୍କର ଗୁରୁ
ହେଲେହେଁ ପୁତ୍ର ଶୋକରେ ସେହୁ ଅଣଶାରୁ
ବୈଷ୍ଣବୀ ମାୟାରେ ସେ ମୋହିତ ହୋଇଥିଲେ
ସନ୍ତାନ ମୁଖକୁ ଚାହିଁ ବ୍ୟାକୁଳେ କାନ୍ଦିଲେ ।
ସେ ପିତା ପୁତ୍ରଙ୍କ ପାଦତଳେ କରି ଧ୍ୟାନ
ଗୀତଛନ୍ଦେ ବିରଚିଲେ ଯେ କ୍ଷେତ୍ର ମୋହନ ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନାରଦଙ୍କର ବିବାହେ ଧାତାଙ୍କର ଖେଦ, ବିବରଣେ ନାମ ସପ୍ତବିଂଶୋଽଧ୍ୟାୟ ।

# ଅଷ୍ଟାବିଂଶ ଅଧ୍ୟାୟ

## ଧାତାଙ୍କ ସହିତ ନାରଦଙ୍କର ବାକ୍ୟାଳାପ ଓ ନାରଦଙ୍କର ଶିବଲୋକକୁ ଗମନ

ଏହାପରେ ଯାହାହେଲା ଶୁଣ ଦେଇ ମନ
ସଉତ ବୋଇଲେ ସୃଷ୍ଟି ଋଷିଙ୍କୁ ବଚନ ।
ବିଧାତା ନାରଦେ ସୃଷ୍ଟି ବୋଇଲେକ ଗିର
ତପ ଅଭିଳାଷୀ ହୋଇ ଯାଉଛୁ କୁମର ।
ସଂସାର ସର୍ଜନା କରି ମୋର କି ହୋଇବ
ଶ୍ରୀକୃଷ୍ଣଙ୍କ ଅଗ୍ରତରେ କହିବେବ ସବ ।
କାହିଁପାଇଁ ମୋହ ଜଞ୍ଜାଳରେ ଘାଣ୍ଟି ହେବ
ଗୋଲକ ନାଥଙ୍କୁ କହି ନିସ୍ତାର ପାଇବ ।
ସନକ ସନନ୍ଦ ସନାତନ ପଞ୍ଚଶିଖ
ସନତ କୁମାର ଆଦି ଯତିଙ୍କର ମୁଖ୍ୟ ।
ଅରୁଣୀ ହଂସୀ ଆବର ବୋଢୁ ଆଦିକରି
ପୁତ୍ର ଗଣ ମାନେ ଗଲେ ତପସ୍ୟା ଆଚରି ।
କି ଲଭ ହୋଇବ ମୋର ସଂସାର କାର୍ଯ୍ୟରେ
ପରିଶ୍ରମ କମ୍ପା ମୁହିଁ କରିବ ବୃଥାରେ ।
ମରୀଚ ଅଙ୍ଗିର ଭୃଗୁ କ୍ରତୁ ମନୁ ଅତ୍ରି
କର୍ଦ୍ଦମ ପ୍ରଚେତା ରୁଚ ମୋର ବଶବର୍ତ୍ତୀ ।
ସମସ୍ତଙ୍କ ଠାରୁ ବଳି ଅଟଇ ବଶିଷ୍ଠ
ସକଳ ପୁତ୍ରଙ୍କ ମଧ୍ୟେ ସେହି ଏକା ଶ୍ରେଷ୍ଠ ।
ମୋର ବୋଲରେ ଏମାନେ ଜଗତକୁ ଯାଇ
ଆରମ୍ଭିଲେ ସୃଷ୍ଟି କାର୍ଯ୍ୟ ଆଜ୍ଞା ଶିରେ ବହି ।
ଅନ୍ୟ ପୁତ୍ର ମାନେ କଥା ନ ମାନିଣ ଗଲେ
ନିଜ ଇଚ୍ଛା ଅନୁସାରେ ତପରେ ମାତିଲେ ।
ମୁଁ କମ୍ପା ଏ ସଂସାରରେ ପଡ଼ି ଅବିରତ
ହବାଗତ ଧାଇଁ ଧାଇଁ ହେବ ହରକତ ।
ଆରେ ପୁତ୍ର ଶୁଣ ଏବେ ମୋହର ବଚନ
ବେଦ ଶାସ୍ତ୍ର ମଧ୍ୟରେ ଯା ହୋଇଛି ଲିଖନ ।
ଲୋକରେ ଆଦୃତ ହୋଇ ପରଂପରା କ୍ରମେ
ଚତୁର୍ବର୍ଗ ଫଳ ପୁଣି ପ୍ରାପ୍ତ ହୁଏ ଲବେ ।
ଦେଖ ଏ ଜଗତ ମଧ୍ୟେ ସର୍ବ ଜ୍ଞାନୀମାନେ
ଧର୍ମ ଅର୍ଥ କାମ ମୋକ୍ଷ ଲୋଡ଼ୁଛନ୍ତି ମନେ ।
ଏହି ଗୃହଗୋଟି କଥା ବେଦ ପୁରାଣରେ
ଉତ୍ତମ ବୋଲି କଥିତ ହୋଇଛି ବିଧିରେ ।
ଉଦ୍ଧବ୍ୟକ୍ତିଙ୍କ ମେଳରେ ସଭା ସମିତରେ
ଏହାର ପ୍ରଶଂସା ହୁଏ ଜାଣ ସବୁଠାରେ ।
ଧର୍ମତ ଅଟଇ ବେଦ ଶାସ୍ତ୍ରର ସମ୍ମତ
ଅଧର୍ମ ହୋଇନ୍ତି ଭିନ୍ନ ଜାଣ ଅଟେ ସୁତ ।
ସେହି ଗୃହ ଆଶ୍ରମର ସ୍ୱରୂପକୁ ମୁହିଁ
କହୁଅଛି ତୋରେ ମାତ୍ର ଶୁଣ ମନଦେଇ ।
ବ୍ରାହ୍ମଣ ସନ୍ତାନ ଦଶ ବର୍ଷ ବୟସରେ
ଦଶକର୍ମେ ଯଜ୍ଞସୂତ୍ର ପକାଏ ସ୍କନ୍ଧରେ ।
ଶୁଦ୍ଧଭାବେ ବେଦଶାସ୍ତ୍ର କରଇ ପଠନ
ଗୁରୁଙ୍କ ଦକ୍ଷିଣା ଦିଏ ତୋଷେ ନେଇ ଧନ ।
ସେ ଅନ୍ତେ ଉତ୍ତମ କୁଳୁଁ କନ୍ୟାଟିଏ ଆଣି
ଗ୍ରହଣ କରଇ ବିଧିମତେ ତାର ପାଣି ।
ସେ ସ୍ତ୍ରୀ ଶ୍ରୀ କୁଳଜ ହୋଇ ଥିବାରୁଟି ଜାଣ ।
ହୁଏ ସତୀ ପତିବ୍ରତା ଗୁଣରେ ନିପୁଣ ।
ଉଚବଂଶେ କେବେ ହେଲେ ଗୁଣହୀନ ହୋଇ
ପୁତ୍ର କନ୍ୟା ମାନେ ଜାତ ନ ହୁଅନ୍ତି କାହିଁ ।
ଯେଉଁ ପରି ପଦ୍ମରାଗ ମଣିର ଖଣିରେ
କାଚମଣି ଜାତ କେବେଁ ନ ହୁଏ ଚର୍ହିରେ ।
ଅଧାଧୁ କୁଳରେ ଜନ୍ମ ଥାଏ ଯେଉଁ ନାରୀ
ସେହି ଏକା ହୁଏ ପିତା ମାତା ଦୋଷ ଭାରୀ ।
ଅଧମସ୍ତ୍ର ସଗ ଦୁଷ୍ଟା ସ୍ୱେଚ୍ଛାଚାରୀ ହୁଏ
ପତି ପ୍ରତି ଭକ୍ତିଭାବ ନରଖେ ଟିକିଏ ।
କମଳାଙ୍କ କଳାରେ ଯେ ନାରୀ ହୋନ୍ତି ଜାତ
ତାଙ୍କଠାରେ ପୂରିଥାଏ ସୁଗୁଣ ବହୁତ ।
ସ୍ୱର୍ଗ ବେଶ୍ୟାଙ୍କର ଅଂଶ ଥାଏ ଯାହାଠାରେ
ଅସାଧୁ କୁଳେ ସେମାନେ ଜନ୍ମନ୍ତି ମର୍ତ୍ତ୍ୟରେ ।
ସବୁ ଦୋଷ ତାଙ୍କଠାରେ ହୁଅଇ ପୂରିତ
ନ ଜାଣନ୍ତି କୁଳଶୀଳ ମହତ କେମନ୍ତ ।
ପତିବ୍ରତା ସତୀ ସାଧ୍ୱୀ ଗୁଣବତୀଙ୍କର
ପତି ଅଟଇ କେବଳ ପରମ ଈଶ୍ୱର ।
ହେଲେହେଁ ନିର୍ଗୁଣ ତାକୁ ସେବା ସେ କରଇ ।
ତାର ପରିଶଂଧା ଶତ ମୁଖେ ସେହି ଗାଇ ।

କୁଳଟା ରମଣୀମାନେ ପତି ସେବା ଛାଡ଼ି
ବହୁ ପୁରୁଷ ସଙ୍ଗରେ ପାପେ ଥାନ୍ତି ବୁଡ଼ି ।
ଏ ସକାଶୁ ପଣ୍ଡିଲୋକେ ଉତ୍ତମ ବଂଶରେ
ବିବାହ କରିବ କନ୍ୟା ବାଛି ସୁଚିତ୍ତରେ ।
ତାଙ୍କଠାରୁ ଯେଉଁ ପୁତ୍ର କନ୍ୟା ହେବେ ଜାତ
ବୃଦ୍ଧ କାଳରେ ସହାୟ ହୋଇବେ ବହୁତ ।
ତପସ୍ୟା କରିବା ପାଇଁ ତାହାଙ୍କ ସଙ୍ଗରେ
ନେଲେ ବହୁତ ସୁଫଳ ମିଳଇ ଅଚରେ ।
ଯେତେଦିନ ପରେ ପୁଣି ଭିକ୍ଷୁକ ଭାବରେ
ଚତୁର୍ଥ ଆଶ୍ରମ ସେବା କରିବ ଶେଷରେ ।
ଚାରିଗୋଟି ଆଶ୍ରମରେ ଏହିପରି ରହି
କାଳ କଟାଇଲେ ଲୋକେ ଧନ୍ୟ ଯେ ବୋଲାଇ
କେବଳ ଦୁଷ୍ଟ ଭାର୍ଯ୍ୟା ଘରେ ରଖିବାର
ଅଟଇ ଯେସନେ ସାପମୁଖେ ଦେବା କର ।
ତୁମ୍ଭେ ତ କୁଶଳ ପୁଣି ଅଟ ଗୁଣବନ୍ତ
ପଢ଼ିଅଛ ମୋହଠାରୁ ସବୁ ବେଦତନ୍ତ୍ର ।
ଗୁରୁ ଦକ୍ଷିଣା ସ୍ୱରୂପ ମାଗୁଅଛୁ ମୁହିଁ
ଭାର୍ଯ୍ୟା ଗ୍ରହଣ ତୁମ୍ଭେ କର ତୋଷ ବହି ।
ପୂର୍ବ ଜନମରେ ଯେଉଁ ସତୀ ମାଳାବତୀ
ହୋଇଥିଲା ତୁମ୍ଭର ସେ ପ୍ରାଣ ପ୍ରିୟବତୀ ।
ଶୁଭବେଳେ ତାର ପାଣି ଯେ ଗ୍ରହଣ କରି
ସାଂସାରିକ ସୁଖ ଭୋଗେ ନିଶିଦିନ ହରି ।
ମନୁବଂଶରେ ଜାତ ଯେ ଅଟନ୍ତି ସଞ୍ଜୟ
ସାଧୁତା ଗୁଣରେ ସେ ବୋଲନ୍ତି ଅଦ୍ୱିତୀୟ ।
ତାହାଙ୍କ ଗୁଣରେ ଜାତ ହୋଇ ସେ କାମିନୀ
ତପସ୍ୟା କରୁଛି ତୁମ୍ଭ ସଙ୍ଗ ଇଚ୍ଛା ଘେନି ।
ରତ୍ନମାଳା ବୋଲି ନାମ ହୋଇଅଛି ତାର
କମଳା ସଦୃଶେ ରୂପେ ଦିଶେ ମନୋହର ।
ପୁଣି ସେ ପବିତ୍ରଭୂମି ଭାରତବର୍ଷରେ
ତୁମ୍ଭଙ୍କୁ ପତି ସ୍ୱରୂପେ ଲଭିବା ମନରେ ।
ତପ କରୁଥିବାରୁ ଟି ବୋଲୁଅଛି ମୁହିଁ
ତୁମ୍ଭ ବିନା ତାର ଫଳ ଯିବ ବ୍ୟର୍ଥ ହୋଇ ।
ଶାସ୍ତ୍ରରେ ତ ଲେଖାଅଛି ବିଜ୍ଞବନ୍ତ ନର
ଭାର୍ଯ୍ୟା ଘେନିଣ ଆଗ କରେ ଘର ଦ୍ୱାର ।
ନିବର୍ତ୍ତିଲେ ଭୋଗ ଇଚ୍ଛା ତପ କରିବାକୁ
ସକଳ ସମ୍ପଦ ଛାଡ଼ି ଯିବ ଅରଣ୍ୟକୁ ।

ତଦନ୍ତରେ ମୋକ୍ଷ ପାଇ ସନ୍ୟାସୀ ହୋଇବ
କ୍ରମେ କ୍ରମେ ଭକ୍ତି ଧର୍ମ ଆଶ୍ରୟ କରିବ ।
ଅଟଇ ବ୍ୟବସ୍ଥା ଯିନା ଏହି ପରକାରେ
ତୁମ୍ଭେ ଯେ ନ ଶୁଣ ମୋହ ବଚନ କର୍ଣ୍ଣରେ ।
ଶାସ୍ତ୍ରଜ୍ଞ ବ୍ୟକ୍ତିଏ ପୁଣି ଯାହା କହିଛନ୍ତି
ସେକଥା କହିବା ଶୁଣ ତୋଷକରି ମତି ।
ବଇଷ୍ଣବ ମାନଙ୍କର ବିଷ୍ଣୁ ପୂଜା ବିଧି
ଅନ୍ୟକର୍ମ ଅପେକ୍ଷାରେ ଅଟଇ ପ୍ରସିଦ୍ଧି ।
ତୁମ୍ଭେ ଶ୍ରେଷ୍ଠ ବଇଷ୍ଣବ ହୋଇଅଛ ଯେଣୁ
ବିଷ୍ଣୁ ପୂଜାକର ଗୃହ ମଧ୍ୟେ ରହି ତେଣୁ ।
ଆହାର ଅନ୍ତରେ ପୁଣି ବାହ୍ୟଦେଶେ ହରି
ଥାଆନ୍ତି କୋଟିଏ ପୁଣ୍ୟ ନୁହେ ସମସରି ।
ହରିଙ୍କ ଚରଣେ ଭକ୍ତି ନ କରିବା ଲୋକ
ଅଧର୍ମ ଅରଜ ଅନ୍ତେ ଲଭେ କୁମ୍ଭୀପାକ ।
ହରିଙ୍କ ଭଜନ ଗୋଟି ତପସ୍ୟା ଅଟଇ
ଭାବିବାକୁ ଏ ସମ୍ବନ୍ଧେ କଥା କିଛି ନାହିଁ ।
ଯେଉଁଠାରେ ଥିଲେ ହେଲେ ଶ୍ରୀକୃଷ୍ଣ ଭଜନ
କାଳେ ପୁଣ୍ୟ ହୁଏ ଜାଣ ଆହେ ମହାମତି ।
ଏ ସକାଶୁ ତୁମ୍ଭେ ଏବେ ମୋ ବଚନ ମାନ
ଗୃହେ ରହି ଶ୍ରୀକୃଷ୍ଣଙ୍କୁ ଭଜ ପ୍ରତିଦିନ ।
ଗୃହୀ ଯେଉଁ ସୁଖଭୋଗ କରେ ଘରେ ଥାଇ
ଗୃହହୀନ ଲୋକେ ତାହା ପାଇବ ବା କାହିଁ ।
ରୂପବତୀ ଯୁବତୀର ରତିରସ ଭୋଗ
ସାକ୍ଷାତରେ ଅଟଇ ସେ ମହାଫଳ ସ୍ୱର୍ଗ ।
ସ୍ତ୍ରୀଙ୍କର ଅଙ୍ଗସଙ୍ଗ ସୁଖ ଏକାସାର
ତାହାଙ୍କୁ ଇଚ୍ଛା କରନ୍ତି ପୁଣ୍ୟବନ୍ତନର ।
ସବୁଦ୍ରବ୍ୟ ଠାରୁ ଭାର୍ଯ୍ୟା ହେବାରୁ ଅଧିକ
ପ୍ରିୟା ବୋଲି ତାର ନାମ ଦେଇଥାନ୍ତି ଲୋକ
ଏ ବାହାରେ ପୁତ୍ରଙ୍କର ଅଙ୍ଗସ୍ପର୍ଶ ସୁଖ
ଦରଶନ କରିବାର ଅଟେ ବଡ଼ ସୁଖ ।
ପୁତ୍ରପାଇଁ ଆବଶ୍ୟକ ହୁଅଇ କାମିନୀ
ତା ତହୁଁ ଅଧିକ ପୁତ୍ର ଅଟେ ସେହି ଘେନି ।
ପୁତ୍ରଠାରୁ ବଳି ପ୍ରିୟବନ୍ଧୁ କେହି ନାହିଁ
ଆତ୍ମାର ସମାନ ଜାଣ ହୋଇଥାଏ ସେହି ।
ବଳରେ ବା କଉଶଳେ ସମସ୍ତଙ୍କୁ ଜୟ
କରିଯାଏ କିନ୍ତୁ ପୁତ୍ର ଅଟଇ ଅଜେୟ ।

ପ୍ରିୟତମ ପୁତ୍ରଠାରେ ସକଳ ସମ୍ପତ୍ତି
ଅର୍ପଣ କରନ୍ତି ଲୋକେ ତୋଷ ବନ୍ଧୁ ଅତି ।
ଏହିରୂପେ କହି ତୁନି ହେଲେ ବେଦବର
ତା ଶୁଣି ନାରଦ ମୁନି ଜ୍ଞାନୀଙ୍କ ଶେଖର ।
ଧର୍ମ ଅର୍ଥ ନିଶ୍ଚୟ ବଚନ ଉଚ୍ଚାରି
ବୋଇଲେ ମୋଠାରୁ ଶୁଣ ଆହେ କୁଶଧାରୀ ।
ଧର୍ମ ଶାସ୍ତ୍ର ଅର୍ଥ ସବୁ ଜାଣିକରି ଯେବେ
ପୁତ୍ରକୁ ଅସତ ମାର୍ଗେ ଚଳାଇବ ତେବେ ।
ଦସ୍ୟୁକୁ ବୋଲଣ ସେହି ପିତାକୁ କପଟ
ବୋଲିବା ଏକଥା ମୋତେ କହନ୍ତି ଈଶ୍ୱର ।
ଜଳଫେଣ ପରି ସିନା ଅଟଇ ସଂସାର
ମୁହୂର୍ତ୍ତି ମଧ୍ୟରେ ହୋଇପାରେ ଛାରଖାର ।
ପାଣିର ଉପରେ ଗାରଟିଏ କାଟିଦେଲେ
ଯେମନ୍ତ ସେ ନରହଇ କ୍ଷଣକ ମଧ୍ୟରେ ।
ସେହିପରି ଏ ଜଗତ କ୍ଷଣେ କ୍ଷଣେ ଆନ
ହେଉଅଛି ପୁଣି ଦେଖୁଅଛୁ ତ ନୟନ ।
ତଥାପି ବିଷୟ ଭୋଗ ସୁଖ ବୋଲି ସଦା
କହୁଛ ଆପଣ ମୋତେ ନ ରୁଚଇ ତାହା ।
ନିଶ୍ଚଳ ଭାବରେ ଯେହୁ ଶ୍ରୀହରି ଭଜନ
କରଇ ତାହାର ପାପ ହୁଅଇ ମୋଚନ ।
ଏ ସଂସାର ସାଗରକୁ ହରିନାମ ସାର
ଭଜନ କରିଲେ ଜନ ତହିଁ ହୁଏ ପାର ।
ଶ୍ରୀହରିଙ୍କ ନାମ ଯେହୁ ଅନ୍ତରେ ଭଜଇ
ସର୍ବଦା ଅନ୍ତର ତାର ପବିତ୍ର ହୁଅଇ ।
ଏ ଭବ ସଂସାରେ କେହି ନୁହଁଇ କାହାର
ଏକ ମାତ୍ର ହରିନାମ ଯେ ସଖା ସୋଦର ।
ଅନ୍ତକାଳେ ପିଣ୍ଡୁ ଜୀବ ଯିବା ସମୟରେ
ଶ୍ରୀବିଷ୍ଣୁଙ୍କ ବିମାନରେ ଗମଇ ଅମରେ ।
ଦେବତାମାନେ ଯେପରି ଭୋଗ ଭୁଞ୍ଜୁଛନ୍ତି
ତେମନ୍ତ ଭକତେ ମଧ୍ୟ ଭୋଗ ଭୁଞ୍ଜେ ନିତି ।
ପାପୀଜନ ମାନଙ୍କର ନିମନ୍ତେଟି ଜାଣ
ରୌରବ ନରକ ହୋଇଅଛଇଁ ନିର୍ମାଣ ।
ପୁଣି ଭିନ୍ନ ଭିନ୍ନ ନର୍କ ହୋଇଛି ବିସ୍ତାର
କୁମ୍ଭୀପାକ ବା ଶୋଣିତ ନରକ ଆବର ।
ଯିଏ ଯେତେ ପ୍ରକାର ପାପ କରିଥାଏ
ସେହି ଅନୁସାରେ ଦଣ୍ଡ ତାକୁ ଦିଆଯାଏ ।
କିନ୍ତୁ ପୁଣ୍ୟବାନ ଜନ ପାଶକୁ ମାତର
ନ ଆସନ୍ତି ଯମଦୂତେ ଶୁଣ ତପୀବର ।
ଧର୍ମ ଅର୍ଥ ସତ୍ୟ ଆଉ ସତ୍ୟ ଅର୍ଥ ବେଦ
ଯୋଗୀଜନ ମାନଙ୍କର ଅଟେ ଏ ସମ୍ପଦ ।
ସଦଗୁରୁ ସେବା କଲେ ଏ ସବୁ ମିଳଇ
ତେଣୁ ଗୁରୁଟି ଈଶ୍ୱର ଶୁଣ ମନଦେଇ ।
ଧର୍ମ ବିପରୀତ ଶିକ୍ଷା ଦିଏ ଯେଉଁ ଜନ
ପିତା ହେଲେ ମଧ୍ୟ ଶତ୍ରୁ ଅଟଇ ସେ ଜାଣ ।
ହେ ପିତର ଏହିପରି ବେଦର ବିଚାର
ମାତ୍ର ମୂର୍ଖ ଅଟଇ ଯେ ତନୟ କୁମର ।
ଏଥିଲାଗି ତବ ଆଜ୍ଞା ପାଳନ କରିବ
ନର ନାରାୟଣଙ୍କର ଆଶ୍ରମକୁ ଯିବ ।
ନାରାୟଣଙ୍କର ଗାଥା ସେହିଠାରେ ଶୁଣି
ଦ ର ପଞ୍ଚଗ୍ରହ ପଠେ କରିବ ମୁଁ ପୁଣି ।
ଏହି ପ୍ରକାରେ ନାରଦ କହିଲା କାଳରେ
ଆକାଶୁ ସୁମନ ବୃଷ୍ଟି ହେଲା ତାଙ୍କ ଶିରେ ।
ପୁଣି ନାରଦ ଧାତାଙ୍କ ପାଦତଳେ ପଡ଼ି
ବୋଇଲେକ ଅତି ବିନୟରେ କରଯୋଡ଼ି ।
ହେ ଜନକ ସେନାକର ଦମନ୍ତ ପୁତ୍ରର
ବାରେ ମାତ୍ର ଶ୍ରୀକୃଷ୍ଣଙ୍କ ମନ୍ତ୍ର ଦାନ କର ।
ଯହିଁର ଜୀବର ଗତି ମୁକତି ହୁଅଇ
ସେହି ମନ୍ତ୍ର ଗୋଟି ମୋତେ ଦିଅନ୍ତୁ ଗୋସାଇଁ ।
ସେ ଅଭୟ ପାଦପଦ୍ମ କରି ଦରଶନ
ତାହାଙ୍କ ପ୍ରେମ ଅମୀୟ ଇଚ୍ଛା କରି ପାନ ।
ପରେ ଆପଣଙ୍କ କଥା ରକ୍ଷା କରି ମୁହିଁ
ଘର ସଂସାରେ ପ୍ରବୃତ୍ତ ନିଶ୍ଚେ ହୋଇବଇଁ ।
ଶୁଣି ଧାତା ବୋଇଲେକ କୋମଳ ବଚନେ
ଯାହା କହିଲୁ ରେ ଧନ ବୁଝୁଅଛୁ ମନେ ।
ସୁକୃତୀର ହରିନାମ ଏ ସଂସାରେ ସାର
ମୋତେ ଯା କହିଲୁ ମନ୍ତ୍ର ଦେବାକୁ କୁମର ।
ତାହାର କାରଣ କହେ ଶୁଣ ଦେଇ ମନ
ପିତା ଆଉ ଭର୍ତ୍ତା ଦୁଇ ଅଟନ୍ତି ସମାନ ।
ଯାଙ୍କଠାରୁ ମନ୍ତ୍ର ନେବା ନୁହଁଇ ଉଚିତ
ଏହା ମଧ୍ୟ ଲେଖା ହୋଇଅଛି ନାନା ଶାସ୍ତ୍ର ।
ଆବର ମନ୍ତ୍ର ଦେବାକୁ ଯେ ଅନୁପଯୁକ୍ତ
ତାହାଙ୍କର ନାମ ମନ ଦେଇ ଶୁଣ ସୁତ ।

ଯ ହରିଧ୍ୟାନ ଚିନ୍ତନେ ପ୍ରବେଶରେ ଥିବ
ତାଙ୍କଠାରୁ ମନ୍ତ୍ର ଜାଣ କଦାପି ନ ନେବ ।
ନଜାଣି ପଶୁଣି ଯେହୁଁ ଦେବ ଅଜ୍ଞାନରେ
ଅଳ୍ପଦିନେ ଅମଙ୍ଗଳ ହୋଇବ ତାହାରେ ।
ଦୁଷ୍ଟ ହୀନ ଆଚରଣ ଯେହୁ କରୁଥିବ
ଜୀବ ବଧ କରି ତାର ମାଂସ ଭକ୍ଷୁଥିବ ।
ସେପରି ଲୋକଙ୍କୁ କେବେହେଁ ଗୁରୁ ନ କରିବ
କରିଲେ ମନ୍ତ୍ର ଗ୍ରହଣ ନରକେ ପଡ଼ିବ ।
ଏହି ପରକାରେ ବହୁ କାରଣ ଅଛଇଁ
ସ୍ତ୍ରୀ କପରି ପିତା ହୋଇ ମନ୍ତ୍ର ଯେ ଦେବଇଁ ।
ମନ୍ତ୍ର ପୂର୍ଣ୍ଣ ମନ୍ତ୍ର ତପସ୍ୟା ଗୁରୁ ଶଯ୍ୟା ପତ୍ନୀ
ଶାସ୍ତ୍ରଜ୍ଞାନ ସୁଖ ଦୁଃଖ ତନୟ ସମ୍ପତ୍ତି ।
ଏ ସବୁ ଜନମ କାଳେ ଲଲାଟରେ ଲେଖି
ଥାଆନ୍ତି ଈଶ୍ୱର କେହି ନ ପାରନ୍ତି ଦେଖି ।
ନିଜ ପଉରୁଷ ବଳେ କରିଣସି ଲୋକ
ଲାଭ କରି ନ ପାରଇ ତୁମ୍ଭେ ମନେରଖ ।
ପୂର୍ବ ଜନମରେ ଯେହୁ ଯାହା ଅର୍ଜିଥାଇ
ଏ ଜନମେ ମର୍ତ୍ତ୍ୟଲୋକେ ତାହାକୁ ଭୁଞ୍ଜଇ ।

ଆପର ଜନମରେ ଏ ଜନ୍ମର ଭୋଗପାଏ
ଏଥିରେ ନାରଦ କେବେ ସନ୍ଦେହ ନ ଥାଏ ।
ତୁମ୍ଭ ମନ୍ତ୍ରଦାତା ଅଟନ୍ତି ମହାଦେବ
ପୂର୍ବଜନ୍ମ ତାଙ୍କଠାରୁ ପାଇଥିଲ ସର୍ବ ।
ଏବେ ସେ ଶିବଙ୍କ ପାଶେ କରିଣ ଗମନ
ନିଜ ମନ କଥା କହି ଶାନ୍ତକର ମନ ।
ଜ୍ଞାନୀଜନ ମାନଙ୍କର ଯେହୁ ଶୁଭଦାତା
ନିଶ୍ଚୟ ବୁଝିବେ ଜାଣ ସେହୁ ତବ କଥା ।
ତାଙ୍କ ଦୟାରୁ ଯଦ୍ୟପି ବିଷ୍ଣୁଙ୍କର ମନ୍ତ୍ର
ଲଭିବ ତୁମ୍ଭର ଅଙ୍ଗ ହୋଇବ ପବିତ୍ର ।
ସେ ପ୍ରଭୁଙ୍କ ପାଦ ପଦ୍ମ କରିଣ ବନ୍ଦନ
ଆସିବ ମୋହ ସନ୍ଧେ ଫେରିଣ ବଦନ ।
ଏହା କହି ପିତାମହ ହୋଇଲେ ମଉନ
ଶୁଣି ସନ୍ତୋଷ ହୋଇଲା ନାରଦଙ୍କ ମନ ।
ପିତାଙ୍କର ପାଦ ପଦ୍ମ ବନ୍ଦି ଭକତରେ
ପାଦରଜ ଶିରେ ବୋଳି ଚଳିଲେ ସତ୍ୱରେ ।
ଅଧମ କ୍ଷେତ୍ରମୋହନ କହେ ଯୋଡ଼କର
ଏ ଭବ ସଂସାରୁ ବାରେ ମୋତେ କରପାର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଧାତା ଓ ନାରଦଙ୍କର କଥୋପ କଥନେ ନାମ ଅଷ୍ଟାଦଂଶୋ ଅଧ୍ୟାୟ ।

# ଊନବିଂଶ ଅଧ୍ୟାୟ

## ମହାଶୂନ୍ୟ ପୁରରେ ଶିବଙ୍କ ସହିତ ନାରଦଙ୍କର କଥୋପ କଥନ

ଶୁଣ ହେ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ଗ୍ରନ୍ଥ ଶୁଣିଲେ ପାପ ହୋଇବ ଦହନ ।
ଶଉନକଙ୍କୁ ଅନାଇ କହିଲେ ସଉତ
ମନଦେଇ ଶୁଣ ଏକ ଅପୂର୍ବ ଭାରତ ।
ପିତା ପୁତ୍ର ବେନଙ୍କର ଯାହା ସମ୍ବର
କହିଲତ ଶୁଣିଛନ୍ତି ସର୍ବ ତପିବର ।
ପିତାଙ୍କ ଠାରୁ ବିଦାୟ ହୋଇଣ ନାରଦ
ଶିବଙ୍କ ପୁରେ ଚଳିଲେ ହୋଇଣ ଆନନ୍ଦ ।
ମହାଶୂନ୍ୟେ ମନଯାନେ ବସି ତତପର
ଶିବଙ୍କ ପୁରରେ ଯାଇ ମିଳିଲେ ସତ୍ୱର ।
ସେ ପୁର ମହିମା କେସ କହିବଇଁ ମୁହିଁ
ସ୍ୱୟଂ ଧାତା ଚାରି ମୁଖେ କହି ନ ପାରଇ ।

ସେ କାଳରେ ମହାଦେବ ଶୂନ୍ୟ ମଣ୍ଡଳରେ
ବିରାଜ କରିଅଛନ୍ତି ଶୂନ୍ୟ ଆସନରେ ।
ଅନେକ ପ୍ରକାର ପୁର ସେଠାବରେ ଅଛି
ହୀରା ନୀଳା ମାଣିକ୍ୟରେ ଜଡ଼ିତ ହୋଇଛି ।
ତପସ୍ୟାରେ ଯାହାଙ୍କର ପାପ ଯାଏ ଗୁଡ଼ି
ବସିଅଛନ୍ତି ଆନନ୍ଦେ ସେ ପୁରକୁ ମାଡ଼ି ।
ମହା ମହା ପୁଣ୍ୟବନ୍ତ ତପୀ ମାନଙ୍କର
ବହୁ କଷ୍ଟରେ ହୁଅଇ ସେ ପୁର ଗୋଚର ।
କିରଣ ନ ପଡ଼େ ଚନ୍ଦ୍ର ସୂର୍ଯ୍ୟଙ୍କର ତହିଁ
ତା ଚଉପାଶରେ ଅଗ୍ନି ଘେରି ରହିଛଇଁ ।
ପ୍ରଚଣ୍ଡ କିରଣ ଚହ୍ନି ହୋଇଣ ଯାହାର
ଆକାଶକୁ ବ୍ୟାପିଅଛି ଶିଖା ସହିତର ।

ଉଜ୍ଜ୍ୱଳ ନକ୍ଷତ୍ର ମାଳା ପରାୟ ଶୋଭଇ
ଗଗନ ମଣ୍ଡଳେ ଦିବ୍ୟ ଜ୍ୟୋତି ପ୍ରକାଶଇ ।
ସେହିପୁରକୁ ବେଢ଼ିଛି ପ୍ରକାର ସଦୃଶ୍ୟ
ଶୁଣ ଆହେ ମୁନିଗଣ ମନେ ହୋଇ ତୋଷ ।
ତେଣୁ ସେଠାକୁ ନିଶାଚର ବା ଖେଚର
ଯାଇ ନ ପାରନ୍ତି ତାହା ଅତ୍ୟନ୍ତ କଠୋର ।
ଲକ୍ଷେ ଯୋଜନ ବିସ୍ତୃତ ସେ ପୁର ଅଟଇ
ତିନିଗୋଟି ମନୋହର ଦ୍ୱାର ଅଛି ତହିଁ ।
ବଡ଼ ବଡ଼ ଦରପଣ କାନ୍ଥ ମାନଙ୍କରେ
ବସିଥିବାରୁ ଶୋଭଇ ସ୍ୱରପାଲୁଶରେ ।
ଇନ୍ଦ୍ର ନୀଳମଣି ସ୍ୱର୍ଣ୍ଣମୟ ମଣ୍ଡପରେ
ଅତ୍ୟନ୍ତ ଶୋଭା ପ୍ରକାଶେ ସେ ପୁର ମଧ୍ୟରେ ।
ପୁଣି ଚନ୍ଦ୍ରାତପ ଊର୍ଦ୍ଧ୍ୱେ ଟଣା ହୋଇଅଛି
ଶରତ ଚନ୍ଦ୍ର ମଣ୍ଡଳ ଶୋଭାକୁ ନିନ୍ଦୁଛି ।
ଶିର ଦେଶେ ରଙ୍ଗମାନ ପତାକା ଶୋଭଇ
ବାୟୁବେଗେ ଫରଫର ହୋଇଣ ଉଡ଼ଇ ।
ବିଶ୍ୱକର୍ମା ସେ ପୁରକୁ ଥରେ ସ୍ୱପନରେ
ଦେଖିଥିଲେ ବୋଲି ପ୍ରତେ ନ ହୁଏ ମନରେ ।
ଶଙ୍କରଙ୍କ ଦାସମାନେ ଅତ୍ୟନ୍ତ ସୁଖରେ
ବାସ କରି ରହିଛନ୍ତି ସେ ପୁର ମଧ୍ୟରେ ।
ଚଉପଟରେ ଲକ୍ଷକୋଟି ଶିବଗଣ ତହିଁ
ରହିଛନ୍ତି ଯେ ଯାହାର କର୍ମେ ମନଦେଇ ।
ପୁଣି ପାରିଷଦ ଗଣ ଗଣନା ନ ଯାଏ
ଶିବଙ୍କ ସେବାରେ ରହିଅଛନ୍ତି ସଭିଏଁ ।
ଗୃହଲକ୍ଷ ନରମତ ରହିଛନ୍ତି ତହିଁ
ବୀରସୁର ପଣେ ତାଙ୍କ ସମ କେହି ନାହିଁ ।
ପାରିଜାତ ଆଦି କରି ଅମର କୁସୁମ
ଅତି ମନୋହର ଶୋଭା ଦିଶେ ଅନୁପମ ।
ଆଉର ଯେତେକ ଧେନୁ ବତ୍ସା ରହିଛନ୍ତି
କାମଧେନୁ ଅଂଶୁ ହୋଇଛନ୍ତି ଉତପତ୍ତି ।
ଏମନ୍ତେ ଶିବଙ୍କ ପୁର ଦେଖିଣ ନାରଦ
ବିସ୍ମିତ ହୋଇଣ ମନ ମଧ୍ୟେ କଲେ ଖେଦ ।
ଦେଖିବା ମାତ୍ରକେ ସେହି ଅପରୂପ ପୁର
ଭାବିଲେ କିବା ମୁଁ ସ୍ୱପ୍ନ ଦେଖୁଛି ଏଠାର ।
ଏହି ଜନମେକେ ମୁହିଁ ନ ଦେଖିନ୍ତି ଯାହା
କପରି ମୋ ନୟନକୁ ଦେଖାଗଲା ତାହା ।

ଏଠାବରେ ରୋଗ ଶୋକ ଜରା ମୃତ୍ୟୁ ନାହିଁ
ଅହରହେ ମନ୍ଦ ମଳୟ ମୃଦୁମୃଦୁ ବହି ।
ଏହିପରି ମନମଧ୍ୟେ କରିଣ ବିଚାର
ଶିବଙ୍କ ମଣ୍ଡପ ପାଶେ ମିଳିଲେ ସତ୍ୱର ।
ଖଣ୍ଡେ ଦୂରେ ଉଭା ହୋଇ ନେତ୍ରେକି ଚାହିଁଲେ
ଶିବଙ୍କୁ ଦର୍ଶନ କରି ଆନନ୍ଦ ହୋଇଲେ ।
ମଙ୍ଗଳମୟ କରତା ଶାନ୍ତ ସୌମ୍ୟ ମୂର୍ତ୍ତି
ସର୍ବ ଜନଙ୍କର ଗତି ମୁକ୍ତି ଦାତା ପତି ।
ପୂର୍ଣ୍ଣିମା ପଦ୍ମ ପରାୟ ମୋହେ ତ୍ରିନୟନ
ପାଞ୍ଚମୁଖ ଦିଶେ ପୂର୍ଣ୍ଣ ଚନ୍ଦ୍ରମା ସମାନ
ଶୁଭ୍ର ଗଙ୍ଗାଧାର ଜଟା ଦେଖୁଁ ବନ୍ଧୁଅଛି
ସୁନିର୍ମଳ ଚନ୍ଦ୍ରଖଣ୍ଡେ ମସ୍ତକେ ଶୋଭୁଛି ।
ତାମ୍ର ବର୍ଣ୍ଣ ଜଟା ଦିଶେ ଅତି ମନୋହର ।
ଶୁଭ୍ରବର୍ଣ୍ଣ ଭସ୍ମ ବିଲେପନ ଦିଗମ୍ବର ।
କଣ୍ଠତଟେ ସର୍ପମାଳ ଅତ୍ୟନ୍ତ ଶୋଭଇ
ସୁନୀଳ କମଳ ଗଣ୍ଡସ୍ଥଳ ବିରାଜଇ ।
ଶ୍ରୀ ବିଷ୍ଣୁ ନାମକୁ ଜପ କରୁଛନ୍ତି ବସି
ଦୂରକୁ ଦିଶନ୍ତି ଉଦେ ହେଲା ପରି ଶଶୀ ।
ସିଦ୍ଧ ଯୋଗୀମାନଙ୍କର ବନ୍ଦିତ ଉପୁର ;
ଧର୍ମ କର୍ମ ଫଳ ଦାତା ମୁନିଋଷିଙ୍କର ।
ମୃତ୍ୟୁଞ୍ଜୟ ଭକ୍ତବନ୍ଧୁ ଭବ ନିସ୍ତାରଣ
ସିଦ୍ଧେଶ୍ୱର ପ୍ରଭୁ ସିଦ୍ଧି ପ୍ରଧାନ କାରଣ ।
ମଦନର ଦର୍ପଜିତ ସୁଗନ୍ଧ ବଦନ
ବିଶ୍ୱପତି ବିଶ୍ୱନାଥ ନିତ୍ୟ ସନାତନ ।
ଯାହାଙ୍କ ଦର୍ଶନ ମାତ୍ରେ ସଂସାର ନାଶନ୍ତି
ମୁକତି ଲଭନ୍ତି ଜନେ ତରନ୍ତି ସଂସାରୁ ।
ଯାହାଙ୍କ ନାମ ସ୍ମରଣେ ବିପତ୍ତି ଖଣ୍ଡଇ
ଏମନ୍ତ ଦେବଙ୍କୁ ଧାତାଙ୍କର ପୁତ୍ର ଚାହିଁ ।
ତାହାଙ୍କ ପାଶକୁ ଗଲେ ଆନନ୍ଦିତ ହୋଇ
କ୍ଷଣେ ମାତ୍ର ଲୟ ଭ୍ରାନ୍ତ ନ ଜାଣିଣ ସେହି ।
ମସ୍ତକ ଲଗାଇ ପାଦେ ପ୍ରଣିପାତ କଲେ
କରଯୋଡ଼ି ବିନୟରେ ବଚନ ଭାଷିଲେ ।
ତଦନନ୍ତେ ବୀଣା ଧରି ସୁସ୍ୱରେ ବଜାଇ
କୃଷ୍ଣଙ୍କର ନାମ ଘୋଷି ନୃତ୍ୟ କଲେ ତହିଁ ।
ଏରୂପେ ତାହାଙ୍କ ଗୀତ ଦେଖି ତ୍ରିଲୋଚନ
ଭାବିଲେ ଅଟନ୍ତି ଏହି ଧାତାଙ୍କ ନନ୍ଦନ ।

କାହିଁପାଇଁ ଏ ଠାବକୁ ଆସିଛନ୍ତି ଧାଇଁ
ଏବେ ଶିବ ଆସନରୁ ଉଠିଲେକ ସାଇଁ ।
ସ୍ନେହକଲେ ନାରଦଙ୍କୁ ଆଲିଙ୍ଗନ କଲେ
ଆଶୀର୍ବାଦ କରି ଆସନରେ ବସାଇଲେ ।
କୁଶଳାଦି ସମାଚାର ପୁଚ୍ଛିଲେ ପ୍ରଥମ
ସେ ଅନ୍ତେ ବୋଇଲେ ଆହେ ମୁନିଙ୍କ ଉତ୍ତମ
କି କାମକୁ ଏଠାବକୁ ଆସିଅଛ ଧାଇଁ
କୁହ ଶୁଣିବାକୁ ମୋର ମନ ବଳୁଛଇଁ ।
ଏମନ୍ତ ସମ୍ଭାଷି ଶିବ ବସନ୍ତେ ଆସନେ
ପାରିଷଦମାନେ ବସିଲେକ ଯେଝାସ୍ଥାନେ ।
ନାରଦ ଦେଖିଣ ତାହା ସ୍ଥାନ ତ୍ୟାଗ କରି
ଉଭା ହୋଇ ବନସ୍ଥରେ କର ଯୋଡ଼ିଲରି ।
ଗନ୍ଧର୍ବ ରଚନ ଯେଉଁ ସ୍ତୋତ୍ର ପଢ଼ିଥିଲେ
ସେ ସ୍ତୋତ୍ର ଉଚ୍ଚାରି ପୁଣି ସ୍ତୁତି ଆରମ୍ଭିଲେ
ବେଦ ବିଧି ଅନୁସାରେ ସେ ସ୍ତୋତ୍ର ରଚନା
ହୋଇଥିଲା ପଠନ କଲେ ମହାମନା ।
ଶିବଙ୍କ ଆଦେଶ ପାଇ ସନ୍ତୋଷ ଚିତ୍ତରେ
ବସିଲେ ଯାଇଣ ସିଂହାସନେ ଯେ ବାମରେ ।
ନିଜ ଅଭିଳାଷ ମାନ ବଖାଣ କରିଲେ
ଯହିଁପାଇଁ ଆସିଛନ୍ତି ତାହା ବଖାଣିଲେ ।
ବୋଇଲେ ହେ ପ୍ରଭୁ ଯହିଁ ପାଇଁ ଆସିଅଛୁ
ତାହାତ ତୁମ୍ଭଙ୍କୁ ଅଗୋଚର ନାହିଁ କିଛୁ ।

ପିତା କହୁଥିଲେ ଗୃହ ଚିନ୍ତା କରେ ରହି
ପତ୍ନୀ ପୁତ୍ର ସହ ସୁଖେ ବାସ କର ଯାଇ ।
ଚତୁର୍ଥ କାଳରେ ପଛେ ତାହା ତ୍ୟାଗ କରି
ବର୍ଣ୍ଣାଶ୍ରମ ଧର୍ମେ ମନ ନିବେଶିବୁ ତୋରି ।
ତାହାଙ୍କ ବଚନ ଶୁଣି କମ୍ପିଲା ମୋ ଗାତ୍ର
ପାଦ ପଦ୍ମତଳେ ହୋଇ ବୋଇଲି ଉଦନ୍ତ ।
ଆଦର କହିଲେ ପିତା ଶୁଣ ମୋର ଗିର
କୃଷ୍ଣ ମନ୍ତ୍ର ଗୋଟି ମୋତେ ତୋଷେ ଦାନକର
ଶ୍ରୀବିଷ୍ଣୁଙ୍କ ସନିଧରେ ରହି କିଛି ଦିନ
ପରେ ଆସି ପାଳିବି ମୁଁ ଶ୍ରୀମୁଖ ବଚନ ।
ଉଚିତ ବେଳରେ ପତ୍ନୀ ଗ୍ରହଣ କରିବି
ମାନସରେ ଅହେ ପିତା ଅଛି ଏହା ଭାବି ।
ମୋହର ବଚନ ଶୁଣି ଜନକ ବୋଇଲେ
ଅତି ସ୍ନେହ କରି ମୋତେ ସେ ବତାଇ ଦେଲେ
ବୋଇଲେ ଶିବ ଅଟନ୍ତି ତୁମ୍ଭ ପୂର୍ବଗୁରୁ
ମନ୍ତ୍ର ଉପଦେଶ ଯାଇ ନିଅ ତାଙ୍କଠାରୁ ।
ପିତା ଆଜ୍ଞାପାଇ ତବ ସମୀପକୁ ଆସିଛି
କୃଷ୍ଣ ମନ୍ତ୍ର ଦାନ କର ନିରଞ୍ଜନ ବର୍ତ୍ତି ।
ନାରଦଙ୍କ ବାକ୍ୟେ ଶିବ କୃପିତ ହୋଇଲେ
ନିଶ୍ଚୟେ ତୁମ୍ଭଙ୍କୁ ମନ୍ତ୍ର ଦେବଇଁ ବୋଇଲେ ।
ଏହା କହି ସଦାନନ୍ଦ ହୋଇଲେ ମଉନ
ରୀତିଛନ୍ଦେ ଭବ ଲେଖେଁ କ୍ଷେତ୍ରବାସୀ ହୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ମହାଶୂନ୍ୟପୁରେ ଶିବନାରଦଙ୍କର
କଥୋପକଥନେ ନାମ ଉନତ୍ରିଂଶୋ ଅଧ୍ୟାୟଃ

---

## ତ୍ରିଂଶ ଅଧ୍ୟାୟ

### ନିତ୍ୟାଚାର ପ୍ରକରଣ ସମ୍ପର୍କରେ ନାରଦଙ୍କୁ ଧାତାଙ୍କର ଉପଦେଶ ପ୍ରଦାନ

ମନ କର୍ଣ୍ଣଦେଇ ସର୍ବେ ଶୁଣ ସ୍ୱଚ୍ଛରେ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ସାର ସର୍ବପରେ ।
ଶ୍ରଦ୍ଧାରେ କିବା ଭକ୍ତିରେ ପଢ଼ିଲେ ଶୁଣିଲେ
ସମନ ବନ୍ଧନୁ ମୁକ୍ତି ଲଭିବଟି ଭଲେ ।
ସୂତଙ୍କ ବଚନ ମନେ ଆନନ୍ଦିତ ହୋଇ
ବୋଇଲେ ହେ ଶଉନକ ଶୁଣ ମନଦେଇ ।
ଶ୍ରୀକୃଷ୍ଣ ମନ୍ତ୍ର ଶଙ୍କର ଦେଲେ ନାରଦଙ୍କୁ
ଆବର କବଚ ସ୍ତୋତ୍ର ପୂଜା ବିଧାନକୁ ।

ଧ୍ୟାନ ଆଦି ସହିତରେ ସଦାଶିବ ଦେଲେ
ତାହା ପାଇଣ ନାରଦ ଆନନ୍ଦ ହୋଇଲେ ।
ପୁଣି ଶିବଙ୍କ ପାଦରେ ପ୍ରଣତ ସତ୍ୱର
ଜଣାଇଲେ କରଯୋଡ଼ି ଧାତାଙ୍କ କୁମର ।
ବୋଇଲେ ହେ ଗୁରୁଦେବ ଦେବତାଙ୍କ ଈଶ
ତବ ଲାଗି ପୂର୍ଣ୍ଣ ହେଲା ମୋର ଅଭିଳାଷ ।
ଏବେ ଆଉ ଏକ କଥା ଶୁଣିବାକୁ ମନ
ଦୟାକରି କୁହ ବାପେ ଜଗତ ଜୀବନ ।

ନିରୂପେ ବ୍ରାହ୍ମଣ ଧର୍ମ ପ୍ରସାଦେ ଅଟଇ
ଯେଉଁ ଭାବରେ ପାଳନ କରନ୍ତି ସେ ସେହି ।
ପୁଣି ନିପର ଆହ୍ନିକ କର୍ମ ଆଚରନ୍ତି
ଦୟାକରିବାରେ ମାତ୍ର କୁହ ସନ୍ତ ସନ୍ତ ।
ଆପଣଙ୍କ ମୁଖରୁ ତାହା କହିଲେ ଶ୍ରବଣ
ମୋହର କାମନା ପୂର୍ଣ୍ଣ ହୋଇବଟି ଜାଣ ।
ନାରଦଙ୍କ ବାକ୍ୟ ଶୁଣି ଉମାଙ୍କର ପତି
କହିଲେ ଶ୍ରବଣ କର ବ୍ରାହ୍ମଣଙ୍କ ରୀତି ।
ସେମାନଙ୍କ ନିତ୍ୟକର୍ମ ପୁଣି ଶୁଦ୍ଧାଚାର
ଗୋଟିଗୋଟି କରି ତାହା ଶୁଣ ମୁନିବର ।
ଅରୁଣ ଉଦୟକାଳେ ଶଯ୍ୟା ତ୍ୟାଗକରି
ଉଠିବ ବ୍ରାହ୍ମଣ ନିଜ କର୍ତ୍ତବ୍ୟ ସୁମରି ।
ଆଦ୍ୟେ ମସ୍ତକରେ ବ୍ରହ୍ମରନ୍ଧ୍ର ସମୀପରେ
ସୁନିର୍ମଳ ଦଳେ ଯେଉଁ ପଙ୍କଜ ସେଠାରେ ।
ତା ମଧ୍ୟରେ ଶ୍ରୀଗୁରୁଙ୍କୁ ସ୍ମରଣ କରିବ
ଶଯ୍ୟା ପିନ୍ଧା ବସନକୁ ତ୍ୟାଗ କରିଦେବ ।
ପ୍ରସନ୍ନ ବଦନ ଶିଷ୍ୟ ବତ୍ସଳ ସସ୍ମିତ
ପ୍ରୀତିକର ସୁନୟନ ପୁଣି ଅତିଶାନ୍ତ ।
ଏହି ପରକାରେ ଗୁରୁଦେବଙ୍କୁ ଚିନ୍ତିବ
ସାକ୍ଷାତରେ ତାଙ୍କୁ ବ୍ରହ୍ମମୟ ବିଚାରିବ ।
ଗୁରୁଙ୍କ ଭାବନା ପରେ ତାଙ୍କ ଆଜ୍ଞା ନେଇ
ବ୍ୟବଧାନ କରି କ୍ଷଣେ ମାତ୍ର ଦେବ ଭୁଇଁ ।
ସେ ଅନ୍ତେ ହୃଦୟ ମଧ୍ୟେ କଳଙ୍କ ରହିତ
ତେଜସ୍କର ଶ୍ୱେତ ଶତପତ୍ର ବିରାଜିତ ।
ବିସ୍ତୀର୍ଣ୍ଣ ସୁଗନ୍ଧ ପଦ୍ମପୁଷ୍ପର ଉପରେ
ଚିନ୍ତିବ ଆପଣା ଇଷ୍ଟଦେବଙ୍କୁ ମନରେ ।
ଯେଉଁ ଦେବଙ୍କର ଯେଉଁ ଧ୍ୟାନ ରୂପ ବର୍ଣ୍ଣି
ତାହାକୁ ଅନ୍ତରମଧ୍ୟେ କରିବ ଭାବନ ।
ଇଷ୍ଟଦେବତା ଅନୁଜ୍ଞା ନେଇ ସେ ଅନ୍ତରେ
ନିତ୍ୟ ଯୋଗ ଦେବ ନିଜ କର୍ତ୍ତବ୍ୟ କାର୍ଯ୍ୟରେ
ପ୍ରଥମରୁ ଗୁରୁଙ୍କର ପୂଜାବିଧି ସାରି
ଅନୁଜ୍ଞା ମାଗିଣ ତାଙ୍କୁ ନମସ୍କାର କରି ।
ଇଷ୍ଟଦେବତାଙ୍କ ଧ୍ୟାନ ପୂଜା ଆଦି ଯେତେ
ସଂପାଦନକରେ ସବୁ ସାରିବ ଭକ୍ତିତେ ।
ଦେବଙ୍କଠାରୁ ଅଧିକ ଅଟନ୍ତି ତ ଗୁରୁ
ସେ ନେଇ ତାହାଙ୍କୁ ପୂଜା କରିବ ଆଗରୁ ।
ଗୁରୁଙ୍କ ପ୍ରସାଦେ ମନ୍ତ୍ର ପୂଜା ଶିକ୍ଷା ପାଇ
ତନ୍ତ୍ରରେ ଦେବଙ୍କୁ ଲୋକ ପ୍ରସନ୍ନ କରଇ ।
କିନ୍ତୁ ଦେବତାଙ୍କ ଯୋଗେ ନ ମିଳନ୍ତି ଗୁରୁ
ଜାଣ ହେ ନାରଦ ମୁନି ଆମ୍ଭ କଥନରୁ ।
ଗୁରୁ ଜାଣ ବ୍ରହ୍ମା ବିଷ୍ଣୁ ଦେବ ମହେଶ୍ୱର
ପ୍ରକୃତି ପୁରୁଷ ଚନ୍ଦ୍ର ପବନ ଭାସ୍କର ।
ଇନ୍ଦ୍ର ବରୁଣ କୁବେର ସ୍ୱରୂପ ଅଟନ୍ତି
ଆଦର ଜନକ ମାତା ଭାଇ ବନ୍ଧୁ ପତି ।
ଗୁରୁଙ୍କ ସମାନ ପୂଜାଯୋଗ୍ୟ କେ ନୋହିବେ
ପରମବ୍ରହ୍ମ ସ୍ୱରୂପ ଗୁରୁ ଏକା ଭବେ ।
କ୍ରୋଧ କଲେ ଇଷ୍ଟଦେବତାର ପ୍ରତିକାର
କରାଇ ପାରନ୍ତି ଗୁରୁ ବିବିଧ ପ୍ରକାର ।
ଗୁରୁ କ୍ରୋଧ କଲେ କେଲେ ସର୍ବ ଦେବେ ମଧ
ତାର ସମାଧାନ କରି ନ ପାରନ୍ତି ସାଧ ।
ଶ୍ରୀଗୁରୁ ଯାହାଙ୍କ ପରେ ହୁଅନ୍ତି ପ୍ରସନ୍ନ
ସକଳ ସମ୍ପଦ ତାର ହୁଏ ପରିପୂର୍ଣ୍ଣ ।
ରୁଷ୍ଟ ହୋନ୍ତି ଗୁରୁ ଯେଉଁ ଲୋକର ଉପରେ
ସର୍ବନାଶ ହୁଏ ତାର ଜାଣ ନିଶ୍ଚୟରେ ।
ଗୁରୁଙ୍କୁ ନ ପୂଜି ଯେହୁ ଅନ୍ୟ ଦେବତାଙ୍କୁ
ପୂଜା କରନ୍ତି ନିର୍ବୋଧ ବୋଲନ୍ତି ତାହାଙ୍କୁ ।
ବ୍ରାହ୍ମଣ ନାଶରେ ଯେଉଁ ପାତକ ହୁଅଇ
ସେ ପାପକୁ ସେହିମାନେ ନିଅନ୍ତି ମୁଣ୍ଡାଇ ।
ଏହିପରି ସାମବେଦେ କହିଛନ୍ତି ହରି
ପୂଜିବ ଗୁରୁଙ୍କୁ ତେଣୁ କିଛି ନ ବିଚାରି ।
ଗୁରୁଙ୍କ ଭାବନା ପୂଜା ହେଲାପରେ ଶେଷ
ମଳମୂତ୍ର ତେଜିବାକୁ ଯିବ ବହିର୍ଦେଶ ।
ଶାସ୍ତ୍ରଉକ୍ତ ସ୍ଥାନ ତହିଁ ନିରୂପଣ କରି
ଦେଖିବ ତାହାକୁ ଭଲ ରୂପରେ ବିଚାରି ।
ଜଳରେ ବା ଜଳପାଶେ ରନ୍ଧ୍ର ଥିବାଠାରେ
ଲୋକ ସମୀପରେ ଅବା ବୃକ୍ଷର ମୂଳରେ ।
ଦେବାଳୟ ପାଶରେ ବା ପ୍ରଶସ୍ତ ମାର୍ଗରେ
ମଳମୂତ୍ର ତ୍ୟାଗ ନ କରିବ କେବେ ଥରେ ।
ହଳରେ ଯେବଣ ଭୂମି କୃଷ୍ଟ ହୋଇଥିବ
ଅଥବା ଯେଉଁ ଭୂମିରେ ଶସ୍ୟ ଦେଖାଯିବ ।
ଗୋଗୋଷ୍ଠ ନଦୀ କନ୍ଦର କୁସୁମ ଉଦ୍ୟାନ
ପଙ୍କମୟ ଦେଶ ଗ୍ରାମ ନିକଟ ଯେ ସ୍ଥାନ ।

କି ଅବା ତାହାର ଘରସମୀପ ଯେ ଦେଶ
ବାସ୍ତୁ ଭଙ୍ଗା ତନ୍ଦା ହୁଡ଼ା ଶ୍ମଶାନ ପ୍ରଦେଶ ।
ତୃଣବନ ଅଗ୍ନି ଜଳୁଥିବାର ଯେ ସ୍ଥାନ
ଖେଳପଡା ଭଙ୍ଗ ଉଳ ନିବିଡ଼ ଅରଣ୍ୟ ।
ସୁଶୀତଳ ବୃକ୍ଷ ଛାୟା ପଡ଼ିବାର ସ୍ଥଳ
ଯେଉଁଠାରେ ଥିବ ଦୂବ ଘାସ ମାଳ ମାଳ ।
ଉଇବିଲ କରିଥିବେ ଯେକୌଣ ସ୍ଥାନରେ
ପରିଷ୍କୃତ ଯେଉଁ ସ୍ଥାନ କାର୍ଯ୍ୟ ଅପେକ୍ଷାରେ
ବୃକ୍ଷ ରୋପଣ କରିବାପାଇଁ ଯେଉଁ ସ୍ଥାନ
ଖୋଳା ହୋଇଥିବ ଦୂବଘାସ ଖଣ୍ଡ ମାନ ।
ଏ ସମସ୍ତ ଛାଡ଼ିକରି ଅନ୍ୟଠାରୁ ଯିବ
ଯେଉଁଠାରେ ଦିବାକର ତାପ ନ ବାଜିବ ।
ହାତେ ପରିମାଣେ ଏକ ଗାତ ଖୋଳିଦେଇ
ବର୍ଜ୍ଜନ କରି ଆସିବ ମଳମୂତ୍ର ତହିଁ ।
ମଳତ୍ୟାଗ କଲା ସମୟରେ ଦିବସରେ
ମନେ ରଖିଥାଅ ମୁଖ କରିବ ଉତ୍ତରେ ।
ରାତ୍ରିରେ ପଶ୍ଚିମ ମୁଖ ହୋଇଣ ବସିବ
ସନ୍ଧ୍ୟାକାଳେ ମୁଖ ଦକ୍ଷିଣକୁ ଦେଇଥିବ
ମଳମୂତ୍ର ଉତ୍ସର୍ଗରେ ନ କହିବ କଥା
ଯେରୂପେ ଦେହକୁ ଗନ୍ଧ ନ ଲାଗେ ସର୍ବଥା ।
ଉତ୍ସର୍ଗ ଅନ୍ତରେ ସେହି ଗର୍ତ୍ତେ ମାଟି ଭରି
ମାଟିଟିକ ଜଳଥିବା ସ୍ଥାନେ ଯାଇ କରି ।
ପ୍ରଥମେ ମୃତ୍ତିକା ଘେନ ଜଳ ସଙ୍ଗତରେ
ଶଉଚ କରିବ ଅତି ନିର୍ମଳ ଭାବରେ ।
ମୃତ୍ତିକା ନିୟମ ଯେଉଁ ସ୍ଥାନେ ଯେଉଁପରି
କହୁଅଛୁ ତାହା ଏବେ ଶୁଣ ତପସ୍ୱୀ ।
ମୂତ୍ର ଶୌଚେ ଏକଥର ଲିଙ୍ଗେ ଲଗାଇବ
ବାମହସ୍ତେ ତିନିଥର ଘର୍ଷଣ କରିବ ।
ଦୁଇ ହସ୍ତ ମିଶାଇଣ ଦୁଇଥର ପୁଣି
ଘର୍ଷଣ କରିବ ମାଟି ସଙ୍ଗେ ଘେନ ଆଣି
ମୈଥୁନ ଅନ୍ତରେ ମୂତ୍ର ଶୌଚରୁ ଦ୍ୱିଗୁଣ
କରିବ ସଯତ୍ନ ହୋଇ ଆହେ ଋଷିଗଣ ।
ମଳ ଶଉଚରେ ଥରେ ଲିଙ୍ଗରେ ଲଗାଇ
ଗୁହ୍ୟେ ତିନିଥର ଦେବ ଜଳକୁ ମିଶାଇ ।
ବାମକରେ ଦଶଥର କରିଣ ମର୍ଦ୍ଦନ
ଦୁଇହସ୍ତେ ସପ୍ତବାର ଲଗାଇବ ଜାଣ ।
ଛଅଥର ଦୁଇପାଦେ ଦେବ ସେ ଅନ୍ତରେ
ଏମନ୍ତେ ଗୃହସ୍ଥ ଦ୍ୱିଜ ଶୁଦ୍ଧି ଲଭନ୍ତରେ ।
ଏହାଠାରୁ ଦୁଇଗୁଣେ ବିଧବା କାମିନୀ
ଶୁଦ୍ଧ ହୁଅଇ ନିଶ୍ଚୟ ଆହେ ମହାମୁନି ।
ଯତି ବୈଷ୍ଣବ ବ୍ରହ୍ମଋଷି ବ୍ରହ୍ମଚାରୀ
ଗୃହସ୍ଥଙ୍କ ଚାରିଗୁଣ ଶୌଚ କାର୍ଯ୍ୟ କରି ।
ପବିତ୍ର ହୁଅନ୍ତି ଏହା ବେଦର ପ୍ରମାଣ
ବ୍ରତ ହୋଇ ନ ଥିବ ଯେ ବ୍ରାହ୍ମଣ ସନ୍ତାନ ।
ସଧବା ରମଣୀ ଶୂଦ୍ର ଏହି ତିନିଙ୍କର
ଦୁର୍ଗନ୍ଧ ଛାଡ଼ିଲେ ଶୁଦ୍ଧ ହୁଅଇ ଶରୀର ।
ତୃଣ ଦ୍ୱୀଜ ଯେଉଁପରି ଶୌଚ ହୁଏ ବୋଲି
ପ୍ରଥମରେ ତୁମ୍ଭ ଆଗେ କହି ମୁଁ ଆସିଲି ।
କ୍ଷତ୍ରିୟ ବୈଶ୍ୟଙ୍କ ଶୁଦ୍ଧି ଅଟେ ସେହିରୂପ
ମନଦେଇ ଶୁଣ ଆହେ ମୁନିଙ୍କ କଳାପ ।
ବୈଷ୍ଣବ ମୁନିଙ୍କର ତହିଁରେ ଦ୍ୱିଗୁଣ
ଅଟଇ ବୋଲିଣ ମୁହିଁ କହୁଅଛି ପୁଣ ।
ଏହି ନିୟମରେ ଭିନ୍ନ ହୋଇ ଯେ ରହିବ
ପ୍ରାୟଶ୍ଚିତ ନ କଲେ ତା ଦୋଷ ନ ଛାଡ଼ିବ ।
ଯେଉଁସ୍ଥାନମାନଙ୍କରୁ ମୃତ୍ତିକାକୁ ଆଣି
ଶୌଚ ନ କରିବ ତାହା କହୁଅଛୁ ପୁଣି ।
ଉଇଙ୍କର ବିଲ ଆଉ ମୂଷାଖୋଳା ମାଟି
ଏ ବାହାରେ ଥିବ ଯାହା ଜଳ ମଧ୍ୟରେଟି ।
ଅନ୍ୟ ଲୋକ ଶୌଚ କରି ଛାଡ଼ିଥିବ ଯାହା
ଜାଣିକାରୁ ଲୋକ ନ ଆଣିବ କେବେ ତାହା ।
ଘର ଲିପା ହେଲାପରେ ଯେ ମାଟି ବଳିବ
କ୍ଷୁଦ୍ର କୀଟ ମୁଖେ ଯାହା ଖୋଳା ହୋଇଥିବ ।
ହଳରେ ଚାଷ କରିବା କାଳେ ଯେ ମୃତ୍ତିକା
ଉପରକୁ ଉଠିଯାଇ ହୋଇଥିବ ଟେକା ।
ତାହାକୁ କେବେହିଁ ଶୌଚ ପାଇଁ ନ ଆଣିବ
ପୁଣି କୁଶ ଦୂବମୂଳ ମାଟିକି ତେଜିବ ।
ଅଶ୍ୱତ୍ଥ ମୂଳର ମାଟି ନ ଆଣିବ କେବେ
ଗୋରୁ ଗୋଷ୍ଠ ଗୋରୁଖୁରା ପଡ଼ିଥିବ ଯେବେ
ସେହି ଭୂମିର ମାଟିକି ଗ୍ରହଣ ନ କରି
ଅନ୍ୟଠାରୁ ସେହିକ୍ଷଣି ପଳାଇବ ଫେରି ।
ବଜାର ହାଟରୁ ଅବା ବାଟରୁ ମାଟିକି
ଆଣିବ ନାହିଁ ଶଉଚ କରିବା ପାଇଁକି ।

ଶସ୍ୟକ୍ଷେତ୍ର ଉପବନ ଭିତରୁ ଯେପରି
ମୃତ୍ତିକା ନ ନେବ କେବେ ଶୌଚ ଇଚ୍ଛା କରି
ସ୍ନାନ କରୁ ନ କରୁ ବା ମୃତ୍ତିକା ଗ୍ରହଣ
କଲେ ଶୁଦ୍ଧି ନାହିଁ କହି ପାରଇ ବ୍ରାହ୍ମଣ ।
ଶୌଚହୀନ ହେଲେ ଦ୍ୱିଜ ଚଣ୍ଡାଳ ସଦୃଶ
ଅନର୍ହ ଅଟଇ ଧର୍ମ କର୍ମକୁ ଅବଶ୍ୟ ।
ଏମନ୍ତ ଶଉଚ କରି ମୁଖକୁ ଧୋଇବ
ପ୍ରଥମେ ଷୋହଳ ଗୋଟି ଗଣ୍ଡୂଷ ତେଜିବ ।
ସେ ଅନ୍ତରେ ଦନ୍ତ ଘରଷଣ କରିବାକୁ
ଶୁଣ କହଇ ଯେରୂପେ ଆଣିବ କାଷ୍ଠକୁ ।
ଆହ୍ନିକ କ୍ରମରେ ସାମବେଦ ମଧ୍ୟେ ହରି
ଲେଖିଛନ୍ତି ଯାହା ଏବେ ବୁଝ ହେତୁ କରି ।
ଅପାମାର୍ଗ ସିନ୍ଧୁବାର ଆମ୍ର କରବୀର
ଖଦିର ଶିରୀଷ ଜାତି ଯେ ନାଗକେଶର ।
ଦେବଦାରୁ ଅରଜୁନ ତମାଳ ଅଶୋକ
ଉଦୁମ୍ବରେ କ୍ଷୀର ବାହାରିବା ଗଛ ଯାକ ।
ମନ୍ଦାର ଜାମ୍ବୁ ବକୁଳ ପଲାଶ ଏ ବଇର
ନିମ୍ବ ଶିମୁଳୀ ଆବର ଜମ୍ବୀର କଦମ୍ବ ।
ଏହି କାଷ୍ଠ ମାନଙ୍କରେ ଯେ ଦନ୍ତ ମାଜିବ
ଆବର ଯେଉଁ ପାଦପେ କଣ୍ଟା ଜନ୍ମିଥିବ ।
ମୁଖେ ଲଗାଇବ ଦନ୍ତ ଘର୍ଷଣ କାର୍ଯ୍ୟରେ
ବାଛି ବାଛି ତାର ଡାଳ ଆଣି ଯତନରେ ।
ପିପ୍ପଳୀ ପିଆଳ ତନ୍ତୁଳୀ ଖଜୁରୀ
ନାରକେଳ ତାଡ଼ି ଯେ ବୃକ୍ଷ ଦେଖି କରି ।
କେବେହେଁ ଦାନ୍ତ ଘଷିବାକୁ ନ ଆଣିବ ଜାଣ
ଆଣିଲେ ନିଶ୍ଚୟ ଦୋଷ ହେବ ଏ ପ୍ରମାଣ ।
ଦନ୍ତ ଶୁଦ୍ଧି ନ କରିବା ଲୋକ ଶୌଚହୀନ
ଅଟଇ ବୋଲନ୍ତି ତୁମ୍ଭେ ମାନସରେ ଘେନ ।
ସ୍ନାନ ସନ୍ଧ୍ୟା ତରପଣ ଆଦି ଯେତେ କର୍ମ
ତହିଁକି ନୁହଁଇ ଯୋଗ୍ୟ ଦନ୍ତ ଶୁଦ୍ଧିହୀନ !
ମୁଖ ଶୁଦ୍ଧ ହେଲାପରେ ସ୍ନାନ ଶୌଚ କରି
ପିନ୍ଧିବ ଧୌତ ହୋଇବା ଲୁଗାକୁ ବିଚାରି ।
ପ୍ରାତଃକାଳ ସନ୍ଧ୍ୟା ଆଚରିବ ପାଦଧୋଇ
ମଧ୍ୟାହ୍ନ କାଳେ ତେମନ୍ତ କରିବଟି ତହିଁ ।
ଯଦ୍ୟପି ତ୍ରିସନ୍ଧ୍ୟା ନ ଆଚରିବଟି ଜାଣ
ସାରା ଦିବସର ଫଳ ହେବ ଅକାରଣ ।
ଯେବଣ ବ୍ରାହ୍ମଣ ସଦା ତ୍ରିସନ୍ଧ୍ୟା କରଇ
ସକଳ ତୀର୍ଥର ସ୍ନାନଫଳ ସେ ଲଭଇ ।
ତ୍ରିସନ୍ଧ୍ୟା ବା ଆଚମନ ଯେହୁ ନ କରିଣ
ଭୋଜନ କରଇ ପଶୁ ପକ୍ଷୀଙ୍କୁ ମାରିଣ ।
ବ୍ରାହ୍ମଣ କୁଳରେ ଜନ୍ମ ହେଲେ ମଧ୍ୟ ସେହି ।
ଶୂଦ୍ରଙ୍କ ଠାରୁ ସେ ହୀନ ବୋଲାଏଟି ସେହି ।
ଆବର ଯେଉଁ ବ୍ରାହ୍ମଣ ତ୍ରିସନ୍ଧ୍ୟା ନ କରେ ।
ବ୍ରହ୍ମହତ୍ୟା ଦୋଷ ଜାଣ ଲାଗଇ ତାହାରେ ।
ସନ୍ଧ୍ୟାକର୍ମ ହୀନ ଏକାଦଶୀ ଉପବାସ
ନ କରିବ ଯେ ବ୍ରାହ୍ମଣ ନୁହେଁ ସେ ମନୁଷ୍ୟ ।
ଶୂଦ୍ର ରମଣୀ ହରଷେ ଯେଉଁ ପାଣି ଦିଏ
ସେହି ବ୍ରାହ୍ମଣକୁ ଏହି ପାପ ସେ ଯୋଗାଏ ।
ଏହି ପ୍ରକାରେ ଅଟଇ ବ୍ରାହ୍ମଣଙ୍କ କାର୍ଯ୍ୟ
କହିଲୁ ତୁମ୍ଭଙ୍କୁ ବତ୍ସ ବୃଦ୍ଧି ବାରୁ ଆଜ ।
ପ୍ରତ୍ୟହ ବ୍ରାହ୍ମଣ ପ୍ରାତଃସ୍ନାନ ସନ୍ଧ୍ୟାସାରି
ପ୍ରଣାମ କରିବ ଗୁରୁ ଇଷ୍ଟଙ୍କୁ ସୁମରି ।
ଆଦିତ୍ୟ ବ୍ରହ୍ମା ଆବର ରୁଦ୍ର ନାରାୟଣ ।
ମହାଲକ୍ଷ୍ମୀ ସରସ୍ୱତୀ ଯୋଗ ମାୟା ଜାଣ
ଏହାଙ୍କ ପାଦରେ ଦଣ୍ଡ ପ୍ରଣାମ କରିବ
ଘୃତ ଦରପଣ ମଧୁ ସୁବର୍ଣ୍ଣ ଛୁଇଁବ ।
ଆଉ ଏକ କଥା ବତ୍ସ ଶୁଣ ମନଦେଇ
ସ୍ନାନର ବିଧି ବିଧାନ କହିବା ବୁଝାଇ ।
ଯେବଣ ସ୍ଥାନକୁ ସ୍ନାନ କରିବାକୁ ଯିବ
ଆଗେ ପାଞ୍ଚଗୋଟି ମାଟିପିଣ୍ଡ ଫିଙ୍ଗିଦେବ ।
ପୁଣି ତୀର୍ଥ ସ୍ନାନ ଆଉ ଯେତେ ନଦନଦୀ
ସେଠାରେ କରିବ ଆହେ ଶୁଣ ଧାତା ବିଧି ।
ସ୍ନାନ ସାରି ସଙ୍କଳପ କଲା ସମୟରେ
ବିଷ୍ଣୁଙ୍କ ସ୍ତବ ପଠନ କରିବ ଭକ୍ତିରେ ।
ବୈଷ୍ଣବ ମୁଖରୁ ଶୁଣିବାକୁ ବିଷ୍ଣୁ ସୂକ୍ତ
ଗୃହସ୍ଥ ବ୍ୟକ୍ତିର ଅଟେ ଅଶେଷ ଉଚିତ ।
ବେଦ ମନ୍ତ୍ରରେ ବ୍ରାହ୍ମଣ ସଙ୍କଳପ କରି
ସ୍ନାନ କଲେ ଶୁଚିମନ୍ତ ହୁଏ ତପସ୍ୱୀ ।
ସେହି ମନ୍ତ୍ରମାନ ସବୁ କହୁଛି ବୁଝାଇ
ଶୁଣ ହେ ଧାତା ନନ୍ଦନ ମନକର୍ଣ୍ଣ ଦେଇ ।
ଅଶ୍ୱରଥ ବିଷ୍ଣୁକାନ୍ତା ଦେବୀ ବସୁନ୍ଧରା
ଯେ ମୃତ୍ତିକା ସ୍ୱରୂପକୁ ରହିଛି ଆବୋରି ।

ମୁଁ ଯେଉଁ ପାଳନକାରିଣୀ ଜଗତ୍ଜନ୍ମ ମାତ
ବସୁନ୍ଧରେ ତାହାସବୁ କର ମା ନିସ୍ତାର ।
ବରାହବତାରେ କୃଷ୍ଣ ଦନ୍ତେ ତବ ଗାତ୍ର
ଘର୍ଷ କରିବାରୁ ତୁମ୍ଭେ ହୋଇଲ ପବିତ୍ର ।
ମୋହର ଶିରରେ ମାତା କରି ଆରୋହଣ
ପବିତ୍ର କର ମୋ କାୟା ପଶୁଛି ଶରଣ ।
ସ୍ନାନକୁ ଅନୁଜ୍ଞା ଦେଇ ପୁଣ୍ୟ ଦାନକର
ତବ ଦୟାବଳେ ପାପ ହୋଇଯାଏ ଦୂର ।
ଏହାବୋଲି ଜଳେ ବୁଡ଼ି ନାଭି ପର୍ଯ୍ୟନ୍ତେ
ମଣ୍ଡଳେକ ତୀର୍ଥ ପରିମାଣ ସ୍ମରିହାତେ ।
ତୀର୍ଥ ତୀର୍ଥ ଆବାହନ କରି ଦରଶନ
ମନ୍ତ୍ର ପଠନ କରିବ ଆହେ ତପୋଧନ ।
ଯେତେ ତୀର୍ଥ ଅଛି ତାହା କହୁଅଛି ମୁହିଁ
ଆନନ୍ଦ ମନରେ ତୁମ୍ଭେ ଶୁଣ ମନଦେଇ ।
ଯମୁନା କାବେରୀ ମନ୍ଦାକିନୀ ସରସ୍ୱତୀ
ଗୋଦାବରୀ ନର୍ମଦା ସେ ସିନ୍ଧୁ ବ୍ରହ୍ମପୁତ୍ରୀ ।
ପତିବେଗ ହୁଅ ଆସି ମଣ୍ଡଳ ମଧ୍ୟରେ
ଧୌତ କରିଦିଅ ପାପଙ୍କ ମୋ ଅଙ୍ଗରେ ।
ମହାପଥିକା ନନ୍ଦିନୀ ନଳିନୀ ମାଳିନୀ
ସୀତା ବିଷ୍ଣୁପାଦ ଯାତା ନି ପଥ ଗାମିନୀ ।
ପଦ୍ମାବତୀ ଶୋଭାବତୀ କଉଶିକୀ ଘୋଷା
ପୃଥିବୀ ସୁଭଗା ବିଶ୍ୱକାୟା ସ୍ୱର୍ଣ୍ଣରେଖା ।
ମିତା ଶିବା ବିନ୍ଧ୍ୟାଧରୁ ପ୍ରସନ୍ନା ଗୋମତୀ
ଲୋକ ପ୍ରସାଦନୀ ଦୁର୍ଗା ତୁଳସୀ ସାବିତ୍ରୀ ।
କୃଷ୍ଣ ପ୍ରାଣାଧିକା ରାଧା ଲକ୍ଷ୍ମୀ ସରସ୍ୱତୀ
ଶାନ୍ତା ଶାନ୍ତପ୍ରଦା ଦୁର୍ଗା ତୁଳସୀ ସାବିତ୍ରୀ ।
ମେଧା ମୁଦ୍ରା ଦତ୍ତ ଯଜ୍ଞା ସାହା ସ୍ୱଧା ରତି
ଅରୁନ୍ଧତୀ ଶତରୂପା ଅହଲ୍ୟା ଅଦିତି । ।
ଏମାନଙ୍କୁ ସୁମରଣା କରି ପୁନଃ ପୁନଃ
ହୃଷ୍ଟଭାବେ ପୁଣି ତହିଁ କରିବ ସ୍ନାହାନ ।
ତା ଅନ୍ତେ ତିଳକ ବିନ୍ଦୁ ଦେବକ କପାଳେ
ବାହୁମୂଳେ କଣ୍ଠଦେଶେ ପୁଣି ବକ୍ଷସ୍ଥଳେ ।
ଲଲାଟ ତିଳକ ବିନ୍ଦୁ ନ ଥିବ ଯାହାର
ସ୍ନାନ ଦାନ ଜପ ହୋମ ନିଷ୍ଫଳ ତାହାର ।
ଏ ବାହାରେ ଦେବ ପିତୃ କାର୍ଯ୍ୟହେବ ବୃଥା
ଧର୍ମ ଶାସ୍ତ୍ର ସନ୍ମତ ଅଟଇ ଏ କଥା ।

ତଦନ୍ତ ଜଳ ଭିତରେ ସନ୍ଧ୍ୟା ତରପଣ
କରନ୍ତୁ ଆହ୍ନିକ କର୍ମ ଜ୍ଞାନୀ ବିପ୍ରଗଣ
ପ୍ରଣାମ କରିଣ ଦେବେ ଦରଶନ କରି
ଗୃହକୁ ଯିବ ଆନନ୍ଦେ ସୁମରଣା କରି ।
ଶୁଷ୍କ ବାସ ପିନ୍ଧି ପାଦ କରି ପ୍ରକ୍ଷାଳନ
ଆପଣା ଅନ୍ତଃପୁରକୁ କରିବ ଗମନ ।
ଯେଉଁ ଲୋକ ପାଦ ନ ଧୋଇଣ ଯାଏଘରେ
ଜପ ହୋମ ଦେବ ପୂଜା ଆଦ ଯାହାକରେ
ସେ ସବୁ ନିଷ୍ଫଳ ହୁଏ ଅବଶ୍ୟ ତାହାର
ବେଦ ଶାସ୍ତ୍ରେ ଏହା ଲେଖିଛନ୍ତି ବେଦକର ।
ଏହା ଦେଖି ଲକ୍ଷ୍ମୀ ତାର ଗୃହେ ନ ରହନ୍ତି
ସେହିକ୍ଷଣି ଶାପ ଦେଇ ଅନ୍ତର ହୁଅନ୍ତି ।
ଉପରକୁ ପାଦଟେକ ଧୂଏ ଯେ ବ୍ରାହ୍ମଣ
ଚଣ୍ଡାଳ ଠାରୁଟି ସେହି ଅଟଇ ନିନ୍ଦନ ।
ଗଙ୍ଗା ଦରଶନ କରେ ଯେତେକାଳ ଯାଏ
ପାପ ତାର ଅଙ୍ଗେ ଘର କରି ରହୁଥାଏ ।
ଆସନ ଉପରେ ବସି କରି ଆଚମନ
ତା ଅନ୍ତେ ଦେବତା ପୂଜା କରିବଟି ଜାଣ ।
ମଣିମୟ ରତ୍ନ ଅବା ଶାଳଗ୍ରାମ ରଖି
ପୂଜା କରିବ ବୋଲିଣ ଶାସ୍ତ୍ରେଅଛି ଲେଖି ।
ନୋହିଲେ ବା ଜଳେ ସ୍ଥଳେ ଧାତୁ ପ୍ରତିମାରେ
ଅଥବା ଗାଈଙ୍କ ପୃଷ୍ଠଦେଶେ ବିପ୍ରଠାରେ ।
ଶ୍ରୀହରିଙ୍କୁ ଆବାହନ କରିଣ ପୂଜିବ
ତେମନ୍ତ ହେଲେ ଅଶେଷ ଫଳପ୍ରାପ୍ତ ହେବ ।
ସବୁଠାରୁ ଶାଳଗ୍ରାମ ଶିଳାରେ ପୂଜନ
କରିବାର ଦ୍ୱିଜ ପକ୍ଷେ ଅଧିକଟି ଜାଣ ।
ଶାଳଗ୍ରାମ ଶିଳା ରଖି ଶିବଙ୍କ ନାମରେ
ପ୍ରତିଦିନ ଯେଉଁ ବିପ୍ର ଅଭିଷେକ କରେ ।
ସକଳ ତୀର୍ଥର ସ୍ନାନ ସର୍ବ ଯଜ୍ଞ ଫଳ
ଲଭଇ କଦାପି ତାହା ନ ହୁଏ ବିଫଳ ।
ଯେବା ଶାଳଗ୍ରାମ ଶିଳା ଧୋଇ ସେ ଜଳକୁ
କରୁଣ ଥିବ ଯଦ୍ୟପି ନ କରି ହେଳାକୁ ।
ଜୀବତରେ ମୁକ୍ତ ହୋଇ ରହିଥିବ ସେହି
ଦେହଅନ୍ତେ ବଇକୁଣ୍ଠ ପୁରେ ହେବ ଯାଇ ।
ଶାଳଗ୍ରାମ ରହିଥାଏ ଯେବଣ ସ୍ଥାନରେ
ପାରିଷଦ ସେନ ବିଷ୍ଣୁ ରହନ୍ତି ସେଠାରେ ।

ଜ୍ଞାନରେ ବା ଅଜ୍ଞାନରେ ମୃତ୍ୟୁ ଯାଉନାନ୍ତି
ହୁଅଇ ସେ ଲୋକ ବ୍ରହ୍ମ ସମାନ ଆପଣେ ।
ଯାଏ ଶ୍ରୀ ହରିଙ୍କ ସମୀପକୁ ଆନନ୍ଦରେ
ରହେ ଚିରକାଳ ସେବାକରି ତାଙ୍କପୁରେ ।
ତେଣୁ ଏଥି ଯୋଗେ ଶାଳଗ୍ରାମ ବିଷ୍ଣୁଙ୍କର
ପୂଜା ନ କରନ୍ତି ଅନ୍ୟଠାରେ ଜ୍ଞାନୀନର ।
ଏବେ ପୂଜା କରିବାର କ୍ରମ କହୁଅଛୁ
ଶୁଣ ମନକର୍ଣ୍ଣ ଦେଇ ଧାତାଙ୍କର ବତ୍ସି ।
କେବଳ ବୈଷ୍ଣବ ଷୋଡ଼ଶଟି ଉପଚାରେ
ବିଷ୍ଣୁଙ୍କୁ ପୂଜା କରଇ ମନେ ଭକ୍ତିଭରେ ।
ଦ୍ୱାଦଶ ଦ୍ରବ୍ୟରେ କେହିଁମାନେ ବା ପୂଜନ୍ତି
କେ ଅବା ପାଞ୍ଚ ଦ୍ରବ୍ୟରେ ସମାପ୍ତ କରନ୍ତି
ଶକ୍ତି ଅନୁସାରେ ଏହିପରି ପୂଜାକରେ
ଅଶେଷ ସୁକୃତ ଫଳ ପାଆନ୍ତି ନିସ୍ତରି ।
ସେ ଉପଚାରର ସଂଖ୍ୟା ଅଟେ ଯେଉଁପରି
ତାହା ମୋହଠାରୁ ଶୁଣ ମନଦେଇ କରି ।
ଆସନ ବସନ ପାଦ୍ୟ ଅର୍ଘ୍ୟ ଆଚମନ
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ ଅନ୍ନ ।
ସୁଗନ୍ଧ କୁସୁମମାଳ ଦିବ୍ୟ ଆଭରଣ
ଆଚମନ ଜଳ ଶଯ୍ୟା ତାମ୍ବୁଳ ଯେ ପୁଣ ।
ଏହିସବୁ ଦ୍ରବ୍ୟମାନ ଷୋଳ ଉପଚାର
ମୂଳମନ୍ତ୍ର ଉଚ୍ଚାରଣ ଦେବ ବାରମ୍ବାର ।
ଚନ୍ଦନ ନୈବେଦ୍ୟ ତଳ୍ପ ତାମ୍ବୁଳ ବ୍ୟଞ୍ଜତ
ଦ୍ୱାଦଶ ପୂଜନ ଦ୍ରବ୍ୟ ହୁଅଇ ନିଯୁତ ।
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ ମିଶି
ପଞ୍ଚ ଉପଚାର ହୁଏ କହିଲ ବିଶେଷି ।
ଗୁରୁଠାରୁ ଯେଉଁ ମୂଳମନ୍ତ୍ର ଘେନଥିବ
ତାହାକୁ ପୂଜାକାଳରେ ସ୍ମରଣ କରିବ ।
ଯେଉଁ ଦେବତାଙ୍କୁ କରୁଥିବଟି ପୂଜନ
ତାଙ୍କର ମନ୍ତ୍ରରେ ଦେବ ଉପଚାରମାନ ।
ପ୍ରଥମେ ଆସନ ଶୁଦ୍ଧି ହେଲେ ସମାପତ
ଭୂତଶୁଦ୍ଧି ପ୍ରାଣାୟାମ କରିବ ଉଚିତ ।
ସେ ଅନ୍ତେ ଅଙ୍ଗପ୍ରତ୍ୟଙ୍ଗ ନ୍ୟାସ ମନ୍ତ୍ରନ୍ୟାସ
ଶେଷକରି ଦେବତାଙ୍କୁ ଧ୍ୟାଇ ମାନସ
ତ୍ରିକୋଣ ମଣ୍ଡଳ ଲେଖି ଶଙ୍ଖାଧାରକା ଥୋଇ
ତହିଁରେ ରଖିବ ଶଙ୍ଖଜଳକୁ ପୂରାଇ ।

ଗନ୍ଧପୁଷ୍ପ ପକାଇଣ ସେ ଶଙ୍ଖ ମଧ୍ୟରେ
ସଂସ୍କାର କରିବ ପୁଣି ମନ୍ତ୍ର ଅନୁସାରେ ।
ଗଙ୍ଗା ଗୋଦାବରୀ ଆଦି ତୀର୍ଥ ଆବାହନ
କରିବ ବାପରେ ହସ୍ତ ଦେଇଣ ବଦନ ।
ତାଡ଼ନ ରକ୍ଷଣ ଆଦି ମୁଦ୍ରା ଦେଖାଇବ
ସେହିଜଳେ ପୂଜାଦ୍ରବ୍ୟ ପ୍ରୋକ୍ଷଣ କରିବ ।
ସେ ଅନ୍ତରେ ବାମହସ୍ତେ ପୁଷ୍ପଟିଏ ଧରି
ଦେବତାଙ୍କୁ ହୃଦପୁରେ ସ୍ମରଣ କରି ।
ଦକ୍ଷିଣ ହସ୍ତରେ ପାଦ୍ୟପାତ୍ର ଘେନ ଧୀରେ ।
ଧ୍ୟାନ ମୂଳମନ୍ତ୍ରମାନ ଉଚ୍ଚାରି ମୁଖରେ ।
କରିବଟି ତାହା ଦେବତାଙ୍କୁ ସମର୍ପଣ
ପୁଣି ଜଳଧାର ଅରପିବ ପୁନଃପୁଣ ।
ଏପରି ସକଳ ଉପଚାର ହେଲା ପରେ
ମୁଦ୍ରାମାନ ଦେଖାଇବ ବିବିଧ ପ୍ରକାରେ ।
ଅଙ୍ଗ ପ୍ରତ୍ୟଙ୍ଗ ପାର୍ଶ୍ୱ ଦେବତା ଆୟୁଧ
ସମସ୍ତଙ୍କୁ ଉପଚାରେ କରାଇବ ବୋଧ ।
ଶକ୍ତି ଅନୁସାରେ ମୂଳମନ୍ତ୍ରକୁ ଜପିବ ।
ବିବିଧ କବଚ ସ୍ତୋତ୍ର ପଠନ କରିବ ।
ଏହିରୂପେ ପୂଜାବିଧି ସମାପନ କରି
ପ୍ରଣାମ କରିବ ହୃଦେ ଭକ୍ତିଭାବ ଧରି ।
ସେ ଅନ୍ତରେ ବୈଶ୍ୱଦେବ ଯଜ୍ଞ ସମାପନ
କରିବ ଯାଜ୍ଞିକ ଅଗ୍ନି କରି ସଂସ୍ଥାପନ ।
ଅଥବା ସାମାନ୍ୟ ଅଗ୍ନି ରଖି ସମ୍ମୁଖରେ
ଶାସ୍ତ୍ର ଅନୁସାରେ ଦେବ ଆହୁତି ତହିଁରେ ।
ତାହାପରେ ଦାହ୍ୟବଳି ବିସର୍ଜିବ ନେଇ
ଏମନ୍ତ ବିଧିକୁ ପଞ୍ଚଯଜ୍ଞ ବୋଲି କହି ।
ଏହି ପଞ୍ଚଯଜ୍ଞ ନିତ୍ୟ ସମସ୍ତ ବ୍ରାହ୍ମଣ
ନ କଲେ ମହାପାତକ ପାଆନ୍ତି ସେ ଜାଣ ।
ଏହାପରେ ଏକୋଦ୍ଦିଷ୍ଟ ପାର୍ବଣ ଯେ ଶ୍ରାଦ୍ଧ
କରିବ ପିତୃଦିବସେ ହୋଇକରି ବାଧ ।
ପ୍ରତିଦିନ ଅତିଥିଙ୍କୁ ପୂଜା କରୁଥିବ
ବ୍ରାହ୍ମଣ ବୈଷ୍ଣବେ ଯଥାଶକ୍ତି ଦାନ ଦେବ ।
କର୍କଶ ବଚନ କାହାକୁ ଯେ ନ କହିବ
କୋମଳ ବାକ୍ୟ କହିଣ ସଜ୍ଜନେ ତୋଷିବ ।

ବେଦଶାସ୍ତ୍ରେ ବ୍ରାହ୍ମଣଙ୍କ ନିତ୍ୟକର୍ମ ବିଧି
ଏପରି ହୋଇଅଛି ଲେଖା ଆହେ ତପୋନିଧି ।
ପଚାରିଲ ବୋଲି ତୁମ୍ଭେ ସମସ୍ତ ବିଧାନ
କହିଲି ଆଉ କି ଶୁଣିବାକୁ ଥିଲେ ମନ ।
ଇଚ୍ଛା କର ଆହେ ମୁନି ଋଷିଙ୍କର ଈଶ
ଏତେବୋଲି ତୁନି ହେଲେ ପ୍ରଭୁ ବ୍ୟୋମକେଶ
ବିନୟରେ କରଯୋଡ଼ି କ୍ଷେତର କହଇ
ଏ ଭବ ସାଗରୁ ମୋତେ ପାରକର ସାଇଁ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନିତ୍ୟାଚାର ପ୍ରକରଣ ସମ୍ପର୍କରେ ନାରଦଙ୍କୁ ଧାତାଙ୍କର ଉପଦେଶ ପ୍ରଦାନ ନାମ ତ୍ରିଂଶୋଽଧ୍ୟାୟଃ ।

—୦—

# ଏକତ୍ରିଂଶ ଅଧ୍ୟାୟ

## କର୍ତ୍ତବ୍ୟ ଅକର୍ତ୍ତବ୍ୟ ସମ୍ବନ୍ଧରେ ନାରଦଙ୍କ ସଙ୍ଗରେ ଶିବଙ୍କର କଥୋପକଥନ ।

ଶୁଣ ଶୁଣ ସଜ୍ଜନକ ବାରେମନ ଦେଇ
ଅତ୍ୟନ୍ତ ପବିତ୍ର ଗାଥା ଏଥେଁ ପୂରିଅଛଇଁ ।
ଶ୍ରବଣ କରିଲେ ମନ ହୋଇବ ପବିତ୍ର
ଶିବଙ୍କୁ ବନ୍ଦି ପୁଚ୍ଛିଲେ ପୁଣି ଧାତା ସୁତ ।
ବୋଇଲେ ହେ ଦେବ ଦେବ ଶଶାଙ୍କ ଶେଖର
ସର୍ବ ଦେବଙ୍କ ମଧ୍ୟରେ ଅଟ ତୁମ୍ଭେ ସାର ।
ଆଉ କିଛି ଶୁଣିବାକୁ ଶ୍ରୀମୁଖ ବଚନ
ମନ ବଳାଅଛି ଦୟାକର ପଞ୍ଚାନନ ।
ଯାହା ଶ୍ରବଣ କରିବ ଜଡ଼ ମୂର୍ଖ ମୂର୍ତ୍ତି
ତହିଁରେ ଯେପରି ସନ୍ଦେହ ମୋଚନ ହେବଇଁ
ଯାହାଯାହା କହିଗଲେ କରିଣ ଶ୍ରବଣ
ଅତି ମନାଦି ପବିତ୍ର ହୋଇଲି ମୋ ଜାଣ ।
ଆଉ ଏକ କଥା ମୋତେ କୁହ ଗୁରୁଦେବ
କାହାର କେଉଁ ପ୍ରକାର ଅଟଇ ସ୍ୱଭାବ ।
ଗୃହସ୍ଥ ବ୍ରହ୍ମଣୀ ଯତି ବୈଷ୍ଣବ ସନ୍ୟାସୀ
ବିଧବା ବ୍ରାହ୍ମଣୀ ନିତ୍ୟବ୍ରତ ମୁନିଋଷି ।
ଏମାନଙ୍କର ଆହାର ଭୋଜ୍ୟ ବା ଅଭୋଜ୍ୟ
ହେବାପାଇଁ କେଉଁ ୨ ଦ୍ରବ୍ୟ ଅଟେ ଯୋଗ୍ୟ ।
ପୁଣି କର୍ତ୍ତବ୍ୟ ବା ଅକର୍ତ୍ତବ୍ୟ କେଉଁ ଗିର
ବିସ୍ତାର ଭାବେ ଏ ଦାସେ କହନ୍ତୁ ସତ୍ୱର ।
ଅତି ବିନମ୍ର ବଚନ ନାରଦଙ୍କ ବାଣି
ହସି ହସି ବୋଇଲେକ ଦେବ ଶୂଳପାଣି ।
ଯାହା ପଚାରିଲ ମୋତେ ହେ ଧାତାକୁମର
ମନ କର୍ଣ୍ଣ ଦେଇ ତାହା ଯେ ଶ୍ରବଣ କର ।
ଆହାର ନକରି କେଉଁ କେଉଁ ତପୀମାନେ
ରତ ହୋନ୍ତି ତପସ୍ୟାରେ ଶୁଣ ସାବଧାନେ ।
କେ ଅବା ସମସ୍ତ ଦ୍ୟନ୍ତ ପବନ ଭକ୍ଷିଣ
ଫଳମୂଳ ଆଦି କେହୁ କରନ୍ତି ଭକ୍ଷଣ ।
ପୁଣି ଗୃହସ୍ଥ ଯେ ନିଜ ରମଣୀ ସଙ୍ଗତେ
ଭୋଜନ କରଇ ଅନ୍ନ ଯଥାକାଳେ ନିତ୍ୟେ ।
ଯାହାରେ ଯେଉଁ ପ୍ରକାର ହୋଇଥାଏ ଇଚ୍ଛା
ସେଥିରେ ତାହାର ତୃପ୍ତ ହୁଏ ମନୋବାଞ୍ଛା ।
କେବଳ ଗୃହୀ ବିପ୍ରର ହବିଷ୍ୟ ଭୋଜନ
ସବୁଠୁଁ ସାର ଅଟଇ ମନ ମଧ୍ୟେ ଘେନ ।
ନାରାୟଣଙ୍କୁ କି ଅବା ଇଷ୍ଟ ଦେବତାଙ୍କୁ
ସମର୍ପଣ ନ କରିଣ ଭକ୍ଷିଲେ ଅନ୍ନକୁ ।
ତାହା ଅଭକ୍ଷ ଅଟଇ ଆହେ ତପୀଗଣ
ବେଦ ଶାସ୍ତ୍ରରେ ରହିଛି ଏହାର ପ୍ରମାଣ ।
ଯେଉଁ ଖାଦ୍ୟମାନ ପୂଜା ହୋଇଣ ନ ଥିବ
ବିଷ୍ଠାର ସମାନ ସେହୁ ଅଟେ ମନେ ଭାବ ।
ସେ ଖାଦ୍ୟ ସଙ୍ଗତେ ପାନ କରିବ ଯେ ଜଳ
ମୂତ୍ର ଠାରୁ ଅତି ହୀନ ଆହେ ଧାତାବାଳ ।
ବିଷ୍ଣୁ ଉପାସନା ବିନ ଯଦ୍ୟପି ବ୍ରାହ୍ମଣ
ଭୋଜନ କରଇ ଅନ୍ନ ଆନନ୍ଦ ମନେଣ ।
ଗୋହତ୍ୟା ବ୍ରହ୍ମହତ୍ୟାରେ ହୁଏ ଯେତେ ଦୋଷ
ଆବର ଗର୍ଭିଣୀ ନାରୀ ପ୍ରାଣେ କଲେ ନାଶ ।
ସେ ସର୍ବ ପାପରେ ଭାଗୀ ହୁଏ ସେ ବ୍ରାହ୍ମଣ
ଜୀବନାନ୍ତେ ନରକରେ ଲଭଇ କଷଣ ।

ଏଥି ନିମନ୍ତେ ବ୍ରାହ୍ମଣ ଉପାସନା ଦିନ
ଅନ୍ନ ବ୍ୟଞ୍ଜନ କଦାପି ନ କରେ ଭୋଜନ ।
ସେହିପରି ଶାକ୍ତ ଶୈବ ନିଷେଧ ଦିନରେ
ଅନ୍ନ ଭୋଜନ କରଇ ଯଦି ନିଜ ଘରେ ।
କାଳ କବଳରେ ଚଉଦିଗ ଘାଣ୍ଟି ହୋଇ
ନାନାବିଧ ଦଣ୍ଡ ସେ ଜୀବଥାଇଣ ଭୋଗଇ ।
ମଲେ ରୌରବ ନର୍କେ ବାସ ହୁଏ ତାର
କୃମିଗଣ ଖାଉଥାନ୍ତି ବେଢ଼ି ତା ଦେହର ।
ଚର୍ମ ରକ୍ତ ମାଂସ ମେଦ ଇତ୍ୟାଦି ଭକ୍ଷନ୍ତି
ଚତୁର୍ଦ୍ଦଶ ଯୁଗ ସେ ଠାବରେ ପଡ଼ିଥାନ୍ତି ।
ପୁଣି ଶିବରାତ୍ରୀ ଦିନ ନିଷେଧ କାଳରେ
ଭୋଜନ କରଇ ଯେହୁ ଅତି ଗରବରେ ।
ଏଥିରୁ ଦ୍ୱିଗୁଣ ପାପ ତାହାର ହୁଅଇ
ନାନାବିଧ ଶାସ୍ତ୍ରରେ ଏହା ଲେଖା ହୋଇଅଛି ।
ଉପବାସ କରିବାକୁ ନଥିଲେ ଶକତ
ଫଳମୂଳେ ଭୋଜନରେ ଲଭିବ ଭୁପତ ।
ଏମନ୍ତ ନ କଲେ ଆତ୍ମଘାତ ବୋଲାଇବ
ଜୀବନାନ୍ତେ ନରକରେ ପତିତ ହୋଇବ ।
ବିଷ୍ଣୁଙ୍କର ନଇବେଦ୍ୟ ବା ହବିଷ୍ୟ ଅନ୍ନ
ଭକ୍ଷଣ କରଇ ଯେହୁ ଧର୍ମେ ଦେଇ ମନ ।
ଉପବାସ ଭଙ୍ଗ ଦୋଷ ନ ଲାଗଇ ତାକୁ
ଦେବତା ମାନେ କଲ୍ୟାଣ କରନ୍ତି ତାହାକୁ ।
ଏକାଦଶୀରେ କେବଳ ବିଷ୍ଣୁ ପାଦୋଦକ
ସେବନ କରିବ ଏହା ଅଟେ ନୀତିବାକ୍ୟ ।
ଆହାର ତେଜି ଯଦ୍ୟପି ରହିବ ନିଷ୍ଠାଳେ
ଯିବ ବୈକୁଣ୍ଠପୁରକୁ ସେହି ପୁଣ୍ୟଫଳେ ।
ଗୃହସ୍ଥ ଶାକ୍ତ ବା ଶୈବଧର୍ମୀମାନଙ୍କର
କର୍ତ୍ତବ୍ୟ ଅଟଇ ଏହି ନିୟମ ଆଚାର ।
ବଇଷ୍ଣବ ଯତି ବ୍ରହ୍ମଚାରୀ ଯେଉଁମାନେ
ଏହା ଜାଣିବା ଉଚିତ ଅଟେ ସାବଧାନେ ।
ଶ୍ରୀକୃଷ୍ଣଙ୍କ ନଇବେଦ୍ୟ ନିତ ଯେ ବୈଷ୍ଣବ
ହୃଦୟରେ ଭକ୍ତି ବହି ସେବା କରୁଥିବ ।
ଶତ ଉପବାସ ବ୍ରତ ଫଳରେ ସେ ଯାଇ
ବସିବ ବୈକୁଣ୍ଠପୁରେ ମହାସୁଖ ପାଇ ।
ତାହାର ସଂସର୍ଗ ଇଚ୍ଛା କରିବେ ଦେବତା
ପାଶକୁ ଆସିବେ ହେବାପାଇଁ କଥାବାର୍ତ୍ତା ।

ଉଷୁନା ଗୁଡ଼ଜଳ ଅନ୍ନ କେଉଁ କେଉଁ ଦେଶେ
ପ୍ରଶସ୍ତ ଅଟଇ ମାତ୍ର ଭୋଜନ ସକାଶେ ।
କିନ୍ତୁ ଦ୍ୱିଜ ବ୍ରହ୍ମଚାରୀ ବଇଷ୍ଣବଙ୍କର
ଉଚିତ ନୁହଇ ଦେବପୂଜା କରିବାର ।
ଭକ୍ଷଣ କରିବା ମଧ୍ୟ ନୁହଇ ଉଚିତ
ମୋର କହିବାରୁ ଜାଣ ଆହେ ତପୋବନ୍ତ ।
ବିଶେଷ ବିଧବା ନାରୀ ଯତିମାନେ ଯେବେ
ଭୋଜନ କରନ୍ତି ଦୋଷ ହୁଅଇଟି ତେବେ ।
ତାମ୍ବୁଳ ଭକ୍ଷଣ ଯେବେ ଯତି ବ୍ରହ୍ମଚାରୀ
ଆଉର ବୈଷ୍ଣବ ଶୈବ ପତିହୀନା ନାରୀ ।
କରନ୍ତି ତହିଁକୁ ଦୋଷ ହୁଅଇ ବହୁତ
ଗୋମାଂସ ଭକ୍ଷଣ ତୁଲ୍ୟ ଅଟେ ସେ ନିଶ୍ଚିତ ।
ସାମବେଦ ମଧ୍ୟରେ ଯେ ଆହ୍ନିକ ଆଖ୍ୟାନେ
ଶ୍ରୀହରି ଯା କହିଛନ୍ତି ଶୁଣ ମୁନିରମନେ ।
ସମସ୍ତ ବ୍ରାହ୍ମଣଙ୍କର ଅଭକ୍ଷ ତାମ୍ବୁଳ
ଭକ୍ଷଣ କରିଲେ ଦୋଷ ହୁଅଇ କେବଳ ।
ଉଚ୍ଛିଷ୍ଟଦ୍ରବ୍ୟରେ ଘୃତ ତାମ୍ରପାତ୍ରେ କ୍ଷୀର
କ୍ଷୀର ସଙ୍ଗେ ଲୁଣ ଯେବେ କରିବ ଆହାର ।
ଗୋମାଂସ ଭକ୍ଷଣ ତୁଲ୍ୟ ଅଟଇ ସେ ଜାଣ
ସନ୍ଦେହ ଏଥିରେ କିଛି ନାହିଁ ମନେ ଘେନ ।
ନାରିକେଳ ଜଳ ଯେବେ କଂସାରେ ରଖିବ
ଅଥବା ତାମ୍ର ପାତ୍ରରେ ଗୁଡ଼ ମହୁ ଥିବ ।
ତାହାକୁ କଦାପି ନ ଖାଇବ ବିଜ୍ଞଜନ
ଦୂଷିତ ଅଟଇ ତାହା ମଦ୍ୟର ସମାନ ।
ଠିଆ ହୋଇ ବାମହସ୍ତେ ଢାଳ ଟେକିକରି
ପାଣି ପିଏ ଯେଉଁ ଦ୍ୱିଜ ବିଚାର ନ କରି ।
ସୁରାପାୟୀ ଚଣ୍ଡାଳରୁ ଅଟଇ ସେ ଊଣା
ତାହାକୁ ସକଳ ଧର୍ମ କାର୍ଯ୍ୟ ଅଛି ମନା ।
ଯେଉଁ ଅନ୍ନ ଦେବତାଙ୍କୁ ପୂଜା ନୋହିଥାଏ
ଅଥବା ତହିଁରୁ ଆଗକରି କେହି ଖାଏ ।
ବ୍ରାହ୍ମଣ ତାହାକୁ କେବେହେଲେ ନ ଭୁଞ୍ଜିବ
ଭୁଞ୍ଜିଲେ ଗୋମାଂସ ଭକ୍ଷ ପାପକୁ ପାଇବ ।
ସେହିପରି ଜଳପାନ କଲାପରେ ଯାହା
ଦଳକା ହୋଇବ କେବେ ନ ପିଇବ ତାହା ।
ପିଇଲେ ସୁରାପାନର ଦୋଷକୁ ପାଇବ
ଚାନ୍ଦ୍ରାୟଣ ବ୍ରତ କଲେ ତହୁଁ ମୁକ୍ତ ହେବ ।

କାର୍ତ୍ତିକରେ ବାଇଗଣ ମାଘରେ ମୂଳକ
ଫାଲ୍‌ଗୁନ କାଳରେ ଯେ କଳମ୍ବୀ ଶାକ ।
ଶ୍ୱେତବର୍ଣ୍ଣ ତାଳ ପୁଣି ମସୁର ଯେ ମାଛ
ଦ୍ୱିଜଙ୍କ ପକ୍ଷରେ ଏହା ଅଟେ ଅତି ତୁଚ୍ଛ ।
ସକଳ ଦେଶରେ ସବୁ ପ୍ରକାର ବ୍ରାହ୍ମଣେ
ଏହାକୁ ପାଳନ କରୁଥାନ୍ତି ସେ ଯତନେ ।
ବ୍ରାହ୍ମଣ ନିଜ ଇଚ୍ଛାରେ ମାଛ ଯେବେ ଖାଏ
ସେଥିରୁ ତାହାର ଯେଉଁ ପାପ ଜାତ ହୁଏ ।
ତିନି ଦିନ ଉପବାସ କଲା ପରେ ପୁଣି
ପ୍ରାୟଶ୍ଚିତ୍ତ କଲେ ମୁକ୍ତ ହୁଏ ଆହେ ମୁନି ।
କୁଷ୍ମାଣ୍ଡ ଖାଇଲେ ପ୍ରତିପଦା ତିଥି ଦିନେ
ନିଶ୍ଚୟ ଅର୍ଥ ବିନାଶ ହୁଏ ଘେନ ମନେ ।
ଦ୍ୱିତୀୟାରେ ଅଙ୍କସ୍ତ୍ର ଖାଇବଟି ଯେବେ
ହରିଙ୍କୁ ସ୍ମରଣ କରି ମୁକ୍ତ ହେବ ତେବେ ।
ସେପରି ପଟୋଳ ଫଳ ଅଭକ୍ଷ୍ୟ ଅଟଇ
ଖାଇଲେ ସର୍ବଦା ଶତ୍ରୁ ବୃଦ୍ଧି ହେଉଥାଇ ।
ତୃତୀୟା ଚତୁର୍ଥୀ ଦୁଇ ତିଥିରେ ଯେ ଜନ
ମୂଳକ ଖାଇବ ନଷ୍ଟ ହେବ ତାର ଧନ ।
ପଞ୍ଚମୀରେ ବିଲ୍ୱ ଯେବା ଭକ୍ଷଣ କରିବ
କଳଙ୍କୀ ହୋଇଣ ଜଗତରେ ସେ ରହିବ ।
ଷଷ୍ଠୀରେ ଯେ ନିମ୍ବବୃକ୍ଷ ଫୁଲକୁ ଭକ୍ଷଇ
ପଶୁ ପକ୍ଷୀ ଯୋନିରେ ସେ ଜନମ ହୁଅଇ ।
ତାଳ ଭକ୍ଷଣ କରିଲେ ରୋଗ ଯେ ବହୁତ
ହୁଅଇ ଏକଥା ବେଦ ଶାସ୍ତ୍ରର ସମ୍ମତ ।
ସପ୍ତମୀ ଦିନରେ ତାଳ ଅତି ଦୋଷାବହ
ଖାଇଲେ ତାହାକୁ ନିଶ୍ଚେ ନାଶ ହୁଏ ଦେହ ।
ଅଷ୍ଟମୀରେ ନାରିକେଳ ନିଷିଦ୍ଧ ଅଟଇ
ଭକ୍ଷଣ କରିଲେ ବୁଦ୍ଧି ବୃତ୍ତି ନଷ୍ଟ ହୋଇ ।
ନବମୀ ତିଥିରେ ଲାଉ ଦଶମୀରେ ପୁଣି
କଳମ୍ବୀ ଶାଗ ଖାଇବ ଯେଉଁ ଲୋକ ଜାଣି ।
ତାହାର ଅଶେଷ ପାପ ହୁଅଇ ନିଶ୍ଚିତ
ଗୋମାଂସ ଭକ୍ଷଣ ତୁଲ୍ୟ ତାହା ଅଟଇ ତ ।
ଏକାଦଶୀରେ ଯେ ଶିମ୍ବ କେବେ ନ ଖାଇବ
ଦ୍ୱାଦଶୀ ତିଥିରେ ପୋଇଶାଗ ବର୍ଜିବ ।
ସେପରି ତ୍ରୟୋଦଶୀରେ ବାଇଗଣ ଫଳ
କେବେହେଲେ ନ ଖାଇବ ଆହେ ତପଶୀଳ ।

ଶାସ୍ତ୍ରକୁ ନ ମାନି ଯେହୁ ମୂର୍ଖପଣ କରି
ଖାଇବ ତାହାର ପୁଣ୍ୟ ଯିବ ନିଶ୍ଚେ ମରି ।
ଦହି ନ ଖାଇବ କେବେ ଚତୁର୍ଦ୍ଦଶୀ ଦିନ
ଖାଇଲେ ମହାପାପରେ ହୋଇବ ମଗନ ।
ପୂର୍ଣ୍ଣିମା ଅଥବା ଅମାବାସ୍ୟା ଦିବସରେ
ଶ୍ରଦ୍ଧା ନ କରିବ ମାଛ ମାଂସ ଖାଇବାରେ ।
ତାହାକଲେ ବ୍ରହ୍ମହତ୍ୟା ପାପ ନିଶ୍ଚେ ହେବ
ବେଦ ଶାସ୍ତ୍ରେ ଏହିପରି ଲେଖିଛନ୍ତି ଦେବ ।
ଦେବୀଙ୍କ ସମ୍ମୁଖରେ ପଶୁ ହୋଇଲେ ପ୍ରୋକ୍ଷିତ
ତା ମାଂସେ ଅଟଇ ଅନ୍ୟଦିନରେ ପ୍ରଶସ୍ତ ।
ପାର୍ବଣ ବା ଏକୋଦ୍ଦିଷ୍ଟ ଶ୍ରାଦ୍ଧ ଦିବସରେ
ବ୍ରତ ଉପବାସେ ପ୍ରାତଃ ସ୍ନାନ ସମୟରେ ।
ସୋରିଷ ତୈଳ ଗ୍ରହଣ କରିବା ଉଚିତ
ତର୍ଣ୍ଣିରେ ନୁହଇ ଦୋଷ ଆହେ ବିଧିଯୁତ ।
ଆବର ସଂକ୍ରାନ୍ତି ଅମାବାସ୍ୟା ପୌର୍ଣ୍ଣମାସୀ
ଅଷ୍ଟମୀ ନବମୀ ରବିବାର ଚତୁର୍ଦ୍ଦଶୀ ।
ଏହି ଦିନମାନଙ୍କରେ ମଧ୍ୟ ସେ ପ୍ରକାରେ
ସୋରିଷ ତୈଳ ଗ୍ରହଣ କରିବ ବିଧିରେ ।
ଶ୍ରାଦ୍ଧ ଅବା ବ୍ରତ ଉପବାସ ଦିନ ହେଲେ
ତିଳତୈଳ ନ ଘେନିବ କେତେବେଳେ ଭୁଲେ ।
ଖର ରଙ୍ଗବର୍ଣ୍ଣ ଶାଗ କଂସା ପାତ୍ରେ ଅନ୍ନ
ସେଦିନମାନଙ୍କେ ନ କରିବଟି ଭୋଜନ ।
ପ୍ରୋକ୍ଷଣ ହୋଇଥିଲେହେଁ କଚ୍ଛପ ମାଉଁସ
ଉଚିତ ନୁହଇ ଜାଣ କରିବାର ଗ୍ରାସ ।
ବ୍ରାହ୍ମଣ କ୍ଷତ୍ର ସ୍ୱ ଆଦି ଚାରି ବର୍ଣ୍ଣଙ୍କର
ନିଷିଦ୍ଧ ଦିବସେ ସ୍ତ୍ରୀ ସମ୍ଭୋଗ କରିବାର ।
ରାତ୍ରିରେ ଦଧି ଭକ୍ଷଣ କଲେ ମହାଦୋଷ
ସନ୍ଧ୍ୟାକାଳରେ ଶୋଇଲେ ହୁଏ ଆୟୁନାଶ
ରଜସ୍ୱଳା ନାରୀଠାରେ ଆସକ୍ତ ହୋଇଲେ
ନର୍କ ମଧ୍ୟକୁ ଗତି ହୁଏ ଅନ୍ତଃକାଳେ ।
କୁଳଟା ରମଣୀଠାରୁ ଅନ୍ନ କଲେ ଗ୍ରାସ
ସକଳ ଧର୍ମରେ ହାନି ଘଟଇ ଅବଶ୍ୟ ।
ଶୂଦ୍ରରେ ଯାଜକ କାର୍ଯ୍ୟ କରେ ଯେ ବ୍ରାହ୍ମଣ
ଅଥବା ଭୋଜନ କରେ ଶୂଦ୍ର ଶ୍ରାଦ୍ଧ ଅନ୍ନ ।
ଅଭକ୍ଷ ଭକ୍ଷଣ ଦୋଷ ହୁଅଇ ତାହାର
ଅଥବା ବୃଷଳୀପତି ଅନ୍ନ ଯେ ଆହାର ।

କରଇ ତାଠାରୁ ବଳ ପାପୀ କେହ୍ନନାହିଁ
ପତିତଜନଙ୍କ ଦତ୍ତ ଅନ୍ନ ଯେ ଭୁଞ୍ଜଇ ।
ସେ ମଧ୍ୟ ସେହି ଶ୍ରେଣୀରେ ହୁଅଇଟି ଲେଖା
ଅନୁକୂଳ ଭଙ୍ଗ ହୁଏ ତାର ହେଲେ ଦେଖା ।
ଯେଉଁ ବିପ୍ର ଆଜୀବୋଇ ଦାନ ନେଇ ଥାଇ
ଯେ ଅବା ଗ୍ରାମରେ ବୁଲି ଚିକିତ୍ସା କରଇ ।
ସେ ଦୁହିଙ୍କ ଠାରୁ ଅନ୍ନ ଖାଇବା ନିଷିଦ୍ଧ
ନିଶ୍ଚୟ କରି ଅଛନ୍ତି ସକଳ ବିବୁଧ ।
ହସ୍ତା ଚିତ୍ରା ନକ୍ଷତ୍ରରେ ତଇଲ ସେବନ ଲେ
ସମାନ ଅଟେ ଅଭକ୍ଷ ଖାଇବାର ତୁଲେ ।
ମୂଳା ମୃଗଶିର ଭାଦ୍ରପଦ ନକ୍ଷତ୍ରରେ
ମାଂସ ଖାଇଲେ ସମାନ ଗୋମାଂସ ସଙ୍ଗରେ ।
କୃତ୍ତିକା ନକ୍ଷତ୍ର ଅମାବାସ୍ୟାରେ ଯେପରି
ଖଜୁରି ଯେ ହୁଏ ପାପ ହୁଅଇ ତାହାଉ ।
କ୍ଷୌର ଅବା ସ୍ତ୍ରୀ ସଙ୍ଗ କଲାପରେ ସେହି
ସ୍ନାନ ନ କରି ଦେବତା ପିତୃଙ୍କୁ ପୂଜଇ ।
ଜଳ ହୁଏ ତାର ତହିଁ ରକତ ସମାନ
ଅନ୍ତକାଳେ ନରକରେ ହୁଅଇ ପତନ ।
କର୍ତ୍ତବ୍ୟ ବା ଅକର୍ତ୍ତବ୍ୟ ବିସ୍ତାର ଭାବେଣ
ଶୁଣିଲତ ତପୋବନ୍ତ ମୋହଠାରୁ ଜାଣ ।
ଆଉ ଯେବେ କିଛୁ ଶୁଣିବାକୁ ମନ ଅଛି
ମନରେ କିଛି ନ ଭାବ ହେ ଧାତାଙ୍କ ବଚ୍ଛି ।
ଏହା କହିଣ ଶଙ୍କର ମଉନ ହୋଇଲେ
ଅଧମ ଷେବ ମୋହନ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନାରଦ ଶିବଙ୍କର କଥୋପ କଥନେ
ନାମ ଏକତ୍ରିଂଶୋଽଧ୍ୟାୟଃ ।

# ଦ୍ୱାତ୍ରିଂଶ ଅଧ୍ୟାୟ

## ଶିବଙ୍କଠାରୁ ବ୍ରହ୍ମଜ୍ଞାନ ଶୁଣି ନାରଦଙ୍କର ପ୍ରସ୍ଥାନ

ଶୁଣ ୨ ସୁଜ୍ଞଜନେ ଅପୂର୍ବ ଚରିତ
ଶିବଙ୍କ ବାକ୍ୟେ ନାରଦ ହୋଇଲେ ତୃପତ ।
ବେନକର ଯୋଡ଼ି ପୁଣି ବୋଇଲେ ଗୋସାଇଁ
ଆପଣଙ୍କ ପ୍ରସାଦରୁ ସବୁ ଶୁଣିଲଇଁ ।
ବ୍ରହ୍ମ ସ୍ୱରୂପ ଅଟନ୍ତି ସାକ୍ଷାତ ଆପଣ
ଶୁଣିବାକୁ ତବଠାରୁ ବ୍ରହ୍ମ ନିରୂପଣ ।
ମନ ବଳିଅଛି ଆହେ ଜଗତର ନାଥ ।
ଦୟାକରି ମୋହ ଆଗେ କୁହନ୍ତୁ ସମସ୍ତ ।
ବ୍ରହ୍ମ କେମନ୍ତ ଭାବରେ ହୁଅନ୍ତି ପ୍ରକାଶ
ସାକାର ଅଟନ୍ତି କିବା ଅଟନ୍ତି ଅଦୃଶ୍ୟ ।
କି ଅବା କେଉଁ ସ୍ଥାନରେ ଅଟେ ତାଙ୍କ ସ୍ଥିତି
ଏହିକଥା ଶୁଣିବାକୁ ବଳିଅଛି ମତି ।
ବେଦରେ କହନ୍ତି ଯେ ବ୍ରହ୍ମର ରୂପ ଗୁଣ
ନିରୂପିତ ହୋଇଅଛି କୁହନ୍ତୁ ଆପଣ ।
ପ୍ରକୃତି ବୋଲି ଆଦର ଅଟନ୍ତି କେମନ୍ତ
ବ୍ରହ୍ମରୁ ସେ ଭିନ୍ନ କିବା ଥାନ୍ତି ତାଙ୍କ ସାଥ ।
ତାହାଙ୍କ ବିଷୟ ବେଦେ କହନ୍ତି ରହିଛି
ଶୁଣିବାପାଇଁ କି ମନ ବଳିଅଛି କିଛି ।
ବ୍ରହ୍ମ ଆଉ ପ୍ରକୃତିଏ ବେନି ଜଣଙ୍କର
ସୃଷ୍ଟି ସର୍ଜନା ବିଷୟ ହୋଇଛି ବିସ୍ତାର
ସମସ୍ତ ନିର୍ଣ୍ଣୟ କରି କୁହ ଶୂଳପାଣୀ
କୃତାର୍ଥ ହୋଇବ ଏହା ତବ ମୁଖରୁ ଶୁଣି
ନାରଦ ମୁନିଙ୍କ ବାକ୍ୟ କରିଣ ଶ୍ରବଣ
ଅଳପ ହସି ବୋଇଲେ ଭାବଗ୍ରାହୀ ରମଣ ।
ବ୍ରହ୍ମ ନିରୂପଣ ବିଧି ହୋଇଛି ଯେମନ୍ତ
ବେଦ ଶାସ୍ତ୍ରରେ ଯେମନ୍ତ ଅଟଇ ଲିଖିତ ।
କହିଲେ ନିଶ୍ଚଳ ଚିତ୍ତେ ଶୁଣ ମୋହ ଗିର
ଯାହା ଶୁଣିବାକୁ ମନ ବଳିଛି ତୁମର ।
ଅତ୍ୟନ୍ତ ରହସ୍ୟମୟ ପୁଣି ଜ୍ଞାନପ୍ରଦ
ଶ୍ରେଷ୍ଠ ବ୍ରାହ୍ମଣଙ୍କୁ ଅଗୋଚର ତାର ଭେଦ ।
ବ୍ରହ୍ମା ଆଉ ବିଷ୍ଣୁଙ୍କର ସଙ୍ଗତରେ ମୁହିଁ
ପ୍ରଧାନ ଦେବତା ରୂପେ ଖ୍ୟାତ ହୋଇଛଇଁ
ଧର୍ମ ଆଦର ଅନନ୍ତ ଦେବ ଆଦିକରି
ତିନଲୋକରେ ପ୍ରଧାନ ଅଟନ୍ତି ସେପରି ।
ଆଦିଅନ୍ତ ନିରୂପଣ ଆମ୍ଭ ମାନଙ୍କର
ହୋଇଅଛି ବେଦ ଆଉ ପୁରାଣ ମଧ୍ୟର ।

ସେ ପରମ ବ୍ରହ୍ମ ନିତ୍ୟ ସନାତନ ମୟ
ନାହିଁ ତଳେ ମାତ୍ର ତାହାଙ୍କର ବୃଦ୍ଧି କ୍ଷୟ ।
ସ୍ଥୂଳରୂପେ ପ୍ରତ୍ୟକ୍ଷ ଯା ହୁଅଇ ଲୋକରେ
ନିରୂପିତ ହୋଇଅଛି ତେମନ୍ତ ବେଦରେ ।
ତାହା ମଧ୍ୟ ଆମ୍ଭେମାନେ ଜାଣୁ ଭଲକରି
ସେ କଥା କହୁଛି ବତ୍ସ ଶୁଣ କର୍ଣ୍ଣ ଡେରି ।
ଧର୍ମ ବେଦବର ଦିନେ ବଇକୁଣ୍ଠପୁରେ
ଯାଇଥିଲେ ଜାଣ ମୋତେ ନେଇ ସଙ୍ଗତରେ
ଆମ୍ଭେ ତିନଜଣ ଏହି ବ୍ରହ୍ମ ଜାଣିବାକୁ
ପଚାରି ବୁଝିଲୁ ଯାହା କହିବା ତୁମ୍ଭଙ୍କୁ ।
ସାବଧାନ ହୋଇ ବତ୍ସ ଶୁଣ ମନଦେଇ
ଯେମନ୍ତ ଭାବରେ ବ୍ରହ୍ମ ନିରୂପଣ ହୋଇ ।
ସକଳ ବେଦରେ ପରମ୍ବ୍ରହ୍ମ ସନାତନ
ହୋଇଛି ପରମ ଆତ୍ମାରୂପେ ବିଦ୍ୟମାନ ।
ଯେଉଁ ଯେଉଁ କର୍ମ ପ୍ରାଣୀ କରୁଥାଏ ନିତ୍ୟେ
ସାକ୍ଷୀରୂପେ ତାହା ବୁଝୁଥାନ୍ତି ସେ ଜାଗ୍ରତେ ।
ଜୀବର ଯେ ପଞ୍ଚପ୍ରାଣ ଦେବ ନାରାୟଣ
ମନରୂପେ ବିରାଜିତ କମଳଆସନ ।
ଅଶେଷ ଜ୍ଞାନ ସ୍ୱରୂପେ ପ୍ରକାଶଇ ମୂର୍ତ୍ତି
ପ୍ରକୃତି ଦେବୀ ରହନ୍ତି ଶକ୍ତିରୂପ ହୋଇ ।
ଆତ୍ମାର ଅଧୀନ ଆମ୍ଭେ ସମସ୍ତେ ସେଠାରେ
ନିଯୁକ୍ତ ହୋଇଣ ଥାଉଁ ଯେ ଯାହା କର୍ମରେ ।
ଆତ୍ମା ଯେବେ ଗୁଡ଼ିଯାଏ ତାକୁ ଅନୁସରି
ଯାଉ ରଜାଙ୍କର ପଛେ ପ୍ରଜା ଯେହ୍ନେ ପରି ।
ଯେଉଁରୂପେ ଜଳପାତ୍ରେ ଚନ୍ଦ୍ର ସୂର୍ଯ୍ୟଙ୍କର
ପ୍ରତିବିମ୍ବ ପଡ଼ୁଥାଏ ସେରୂପେ ଆତ୍ମାର ।
ଏହିରୂପେ ହୋଇ ଜୀବ ସୁଖ ଦୁଃଖମାନ
ଭୋଗ କରୁଥାଏ କର୍ମ ଅନୁସାରେ ଜାଣ ।
ଜଳପାତ୍ର ଭାଙ୍ଗିଗଲେ ଯେବଣ ପ୍ରକାରେ
ଚନ୍ଦ୍ର ସୂର୍ଯ୍ୟ ବିମ୍ବ ଲୀନ ହୁଏ ସେହିଠାରେ ।
ସୃଷ୍ଟି ସଂହାର କାଳରେ ଜୀବ ଯାଇକରି
ପରମ ବ୍ରହ୍ମରେ ଲୀନ ହୁଅଇ ସେପରି ।
ଯୁଗକ୍ଷୟେ ଏକାହୋଇ ବ୍ରହ୍ମ ରହିଥାନ୍ତି
ଚରାଚର ଜୀବ ତାଙ୍କଠାରେ ମିଶିଯାନ୍ତି ।
ଆମ୍ଭେମାନେ ମଧ୍ୟ ତାଙ୍କଠାରେ ଲୀନ ହେଉଁ
ପୁଣି ସୃଷ୍ଟି ହେବାଯାଏ ଅପ୍ରକାଶେ ଥାଉଁ ।

ସେ ପ୍ରଭୁ ମଣ୍ଡଳାକାର ତେଜ ସ୍ୱରୂପରେ
ପ୍ରକାଶନ୍ତି କୋଟିସୂର୍ଯ୍ୟ ସମାନ ଦୀପ୍ତିରେ ।
ସକଳ ସ୍ଥାନରେ ପୂରି ଆକାଶ ସଦୃଶ
ଦେଖାଯାନ୍ତି ଯେହ୍ନେ ଚନ୍ଦ୍ର କିରଣ ପ୍ରକାଶ ।
ମହାତପୀ ଯୋଗୀଜନେ ତାଙ୍କ ରୂପ ଦେଖି
ଆନନ୍ଦ ଲଭ କରନ୍ତି ହୋଇ ମହାସୁଖୀ ॥
ପରଂବ୍ରହ୍ମ ବୋଲି ତାଙ୍କୁ ଭାବି ମାନସରେ
ଧ୍ୟାନ କରୁଥାନ୍ତି ବସି ଦିବସ ନିଶିରେ ।
ସ୍ୱେଚ୍ଛାମୟ ନିରାକାର ପରମ ପୁରୁଷ
ସକଳ ଜୀବର ହେତୁ ଦେବତଶ୍ରେଶ ।
ପରମ ଆନନ୍ଦରୂପ ଆନନ୍ଦ କାରଣ
ପ୍ରକୃତିରେ ହେତୁ ସେହି ପ୍ରଭୁ ନାରାୟଣ ।
ସମସ୍ତ ଜୀବସ୍ୱରୂପ ପ୍ରକୃତି ତହିଁରେ
ଲୀନ ହୋଇଥାଏ କାଳେ ବିଧି ଅନୁସାରେ ।
ଯେଉଁରୂପେ ଅନଳରେ ଦାହିକା ଶକତି
ସୂର୍ଯ୍ୟଙ୍କ ଦେହରେ ପ୍ରଭା କରିଥାଏ ସ୍ଥିତି ।
ଦୁଗ୍ଧରେ ଧବଳ ରୂପ ଜଳେ ଶୀତଳତା
ଆକାଶରେ ଶବ୍ଦ ମହୀଠାରେ ଗନ୍ଧବତ୍ତା ।
ସେହିରୂପେ ବ୍ରହ୍ମଠାରେ ପ୍ରକୃତି ସୁନ୍ଦରୀ
ଅଭେଦ ଭାବରେ ଥାନ୍ତି ଲୀନ ହୋଇକରି ।
ତାହାଙ୍କ ଯୋଗରେ ବ୍ରହ୍ମ ପୁରୁଷ ବୋଲନ୍ତି
ସୃଷ୍ଟି ଆରମ୍ଭରେ ଦୁହେଁ ପ୍ରକାଶ ହୁଅନ୍ତି ।
ସେ ପ୍ରକୃତି ମହାମାୟା ତିନଗୁଣେ ପରି
ବିରାଜମାନ ହୁଅନ୍ତି ସ୍ତ୍ରୀରୂପ ଧରି ।
ଯେଉଁରୂପେ କୁମ୍ଭକାର ମାଟିପିଣ୍ଡ ନେଇ
ନିର୍ମାଣ କରଇ ଘଟ ଚକପରେ ଥୋଇ ।
ସେରୂପେ ପରମବ୍ରହ୍ମ ପ୍ରକୃତିକୁ ନେଇ
ସର୍ଜନା କରନ୍ତି ସୃଷ୍ଟି ଜାଣ ଆହେ ମୁନି ।
ଏ ବାହାରେ ସ୍ୱର୍ଣ୍ଣକାର କୁଣ୍ଡଳ ଯେରୂପେ
ଘଟଣା କରଇ ସ୍ୱର୍ଣ୍ଣରତ୍ନ ନେଇ ଆପେ ।
ବ୍ରହ୍ମ ପ୍ରକୃତିଙ୍କ କାର୍ଯ୍ୟ ତେମନ୍ତ ପ୍ରକାର
ଏଥିରେ ସଂଶୟ କିଛି ନାହିଁ ମୁନିବର ।
କିନ୍ତୁ ସେ ସୁବର୍ଣ୍ଣକାର କୁମ୍ଭାରଙ୍କ କାର୍ଯ୍ୟ
ଅନିତ୍ୟ ଅଟଇ ବୋଲି ମାନସରେ ହେଜ
ପରମବ୍ରହ୍ମ ପ୍ରକୃତି ହୋଇଣ ମିଳିତ
ସଂସାର ମଧ୍ୟରେ ସେହି ଅଟନ୍ତି ନିତ୍ୟ ।

ପୁରୁଷଠାରୁ ପ୍ରକୃତି ନୁହନ୍ତି ଅଧିକ
ସମାନ ବୋଲି କହନ୍ତି କେତେ ବିଜ୍ଞଲୋକ ।
ଭୂଗଳ ସୁବର୍ଣ୍ଣକାର ମୃତ୍ତିକା ସୁବର୍ଣ୍ଣ
ଆଣିବାକୁ ସମରଥ ହୁଅନ୍ତିଟି ଜାଣ ।
ମୃତ୍ତିକା ସୁବର୍ଣ୍ଣ ତାଙ୍କୁ ଆଣିବା ସକାଶେ
ସମରଥ କେତେବେଳେ ହୁଅନ୍ତି ବିଶେଷେ ।
ଏ ସକାଶୁ ବ୍ରହ୍ମ ଏକା ପ୍ରକୃତିଙ୍କଠାରୁ
ଉତ୍ତମ ବୋଲନ୍ତି ଆହେ ମୁନିଙ୍କର ଗୁରୁ ।
କେଉଁମାନେ କହନ୍ତି ସେ ବ୍ରହ୍ମ ସନାତନ
ପ୍ରକୃତିଠାରୁ କଦାପି ନ ଅଟନ୍ତି ଭିନ୍ନ ।
ଅନ୍ୟମାନଙ୍କ ମତରେ ବ୍ରହ୍ମରୁ ପ୍ରକୃତି
ବିଭିନ୍ନ ବୋଲି ନିର୍ଣ୍ଣୟ ହୋଇ ସେ ଅଛନ୍ତି ।
ସକଳ ଲୋକର ଆତ୍ମା ସର୍ବକର୍ମ ସାକ୍ଷୀ
ଅଟନ୍ତି ସେ ବ୍ରହ୍ମ ତାଙ୍କ ରୂପ ନୁହେ ଦେଖି ।
ନିର୍ଲିପ୍ତଭାବରେ ଥାନ୍ତି ସର୍ବଘଟେ ପୂରି
ଶ୍ରୁତି ଶାସ୍ତ୍ରେ ନିରୂପଣ ହୋଇଛି ଏପରି ।
ସମସ୍ତ ଜୀବନ ଆଦି କାରଣ ପ୍ରକୃତି
ତାହାକୁ ମୁନିଏ ବୋଲୁଥାନ୍ତି ବ୍ରହ୍ମଶକ୍ତି ।
ତେଜରୂପେ ସବୁଠାରେ ପ୍ରକାଶିତ ସେହି
ବସିଥାନ୍ତି ଯୋଗୀଜନେ ତାଙ୍କରୂପ ଧ୍ୟାୟି ।
ମାତ୍ର ବୈଷ୍ଣବମାନେ ସୂକ୍ଷ୍ମ ବୁଦ୍ଧି ଯେଣ
ସେ ତେଜକୁ ନ ଭାବନ୍ତି ଜାଣ ଆହେ ମୁନି ।
ତାଙ୍କ ମତେ ସେ ତେଜର ମଧ୍ୟରେ ପୁରୁଷ
ହୁଅନ୍ତି ଜାଜ୍ୱଲ୍ୟମାନ ରୂପରେ ପ୍ରକାଶ ।
କାରଣ ନ ଥିଲେ କାର୍ଯ୍ୟ ନ ହୁଅଇ ଯେଣୁ
ବୈଷ୍ଣବେ ବିଶ୍ୱାସ ତାହା ନ କରନ୍ତି ତେଣୁ ।
କେବଳ ପୁରୁଷରୂପ ଧ୍ୟାନ ମାର୍ଗ ଦେଖି
ଆପଣ ର ମାନସରେ ହେଉଥାନ୍ତି ସୁଖୀ ।
ମଣ୍ଡଳ ଆକାରେ ଦିବ୍ୟ ସୁନ୍ଦର ସେ ତେଜ
କୋଟିସୂର୍ଯ୍ୟ କିରଣକୁ ଦିଅଇ ସେ ଲାଜ ।
ନିତ୍ୟସ୍ଥଳ ପ୍ରଭାମୟ ଜ୍ୟୋତିରେ ଆବୃତ
ଗୋଲୋକ ତାହାର ମଧ୍ୟେ ଅଟଇ ଅଦ୍ଭୁତ ।
ଲକ୍ଷେ କୋଟି ଯୋଜନ ତା ବିସ୍ତାର ଅଟଇ
ଚତୁରସ୍ର ଆକାରକୁ ବହିଅଛି ସେହି ।
ବେଷ୍ଟିତ ହେବାରୁ ବୃତ୍ତ ଦିଗରେ କିରଣ
ବର୍ତ୍ତୁଳ ଦିଶଇ ଚନ୍ଦ୍ର ମଣ୍ଡଳ ସମାନ ।

ଅଷ୍ଟରତ୍ନେ ଘଟନାରେ ହୋଇଛି ନିର୍ମିତ
ଦୂରକୁ ସେ ଦେଖାଯାଏ ଅତ୍ୟନ୍ତ ଅଦ୍ଭୁତ
ବଇକୁଣ୍ଠ ପୁରଠାରୁ ଊର୍ଦ୍ଧ୍ୱେ ପଞ୍ଚାଶତ
କୋଟି ଯୋଜନ ଅନ୍ତରେ ଶୂନ୍ୟମାର୍ଗେ ସ୍ଥିତ
ଗୋପାଳ ଗୋପିକାଗଣ ଆନନ୍ଦରେ ତହିଁ
ବାସ କରନ୍ତି ମହାସୁଖେ ଦିନ ନେଇ ।
ଏ ବାହାରେ କାମଧେନୁ ଅଛନ୍ତି ବହୁତ
ବୁଲୁଛନ୍ତି ନିଜ ନିଜ ବତ୍ସଙ୍କ ସହିତ ।
ବିଚିତ୍ର ରାସମଣ୍ଡଳ ଅତି ଶୋଭାବନ
ଦେଖିବା ତକ୍ଷଣେ ହରଇ ଯୋଗୀଙ୍କ ମନ ।
ବୃନ୍ଦାବନ ବନ ଶୋଭା ସବୁଠାରୁ ବଳି
ନନ୍ଦନ କାନନ ପ୍ରଭା ଦେଉଅଛି ଦଳି ।
ଶତଶୃଙ୍ଗ ବିରଜିତ ପର୍ବତରେ ପୁଣି
ପୂରିତ ହୋଇଛି ଜାଣ ଆହେ ମହାମୁନି ।
ଲକ୍ଷ ଲକ୍ଷ କୋଟି କୋଟି ଆଶ୍ରମ ଥିବାରୁ
ତପୋଧନ ପୁଣ୍ୟ ପରି ଦିଶୁଅଛି ଗୁରୁ ।
ଆବର ବହୁତ ଦିବ୍ୟ ଆବାସ ଭବନ
ଦେବାଳୟ ପୁଷ୍କରିଣୀ ପୁଷ୍ପ ଉପବନ ।
ଆବରଣ କରି ତାକୁ ଅଛଇ ସେଠାରେ
ପାଚେରି ବେଢ଼ାଇଅଛି ତା ଚାରିପାଖରେ ।
ଗମ୍ଭୀର ପରିଖା ତାର ନିକଟରେ ରହି
ଚକ୍ରଲୋହନେମିପରି ସୁନ୍ଦର ଦିଶଇ ।
ଗୃହମାନଙ୍କ ଉପରେ ସୁବର୍ଣ୍ଣ କଳଶ
ବସିଅଛି ଇନ୍ଦ୍ରନୀଳମଣି ତାର ପାଶ ।
ସ୍ଫଟିକ ସୋପାନଗଣ ଅତି ମନୋହର
ମଣି ଦର୍ପଣ ନିର୍ମିତ କବାଟ ଦୁଆର ।
ବିବିଧ ରଙ୍ଗ ବିଚିତ୍ର ରୂପରେ ସେ ପୁରୀ
ହୋଇଛି ଦେବତା ପୂର୍ଣ୍ଣ ପୁଷ୍ପଯାନ ପରି ।
ଷୋହଳଟି ଦ୍ୱାର ତାର ଭିତରକୁ ଅଛି
ରତ୍ନ ଦୀପାବଳୀ ତାହା ମଧ୍ୟରେ ଜଳୁଛି ।
ଅମୂଲ୍ୟ ରତ୍ନ ନିର୍ମିତ ଦିବ୍ୟ ସିଂହାସନ
ତେଜରେ ଦିଶଇ ପୁଣି ଅତି ଶୋଭାବନ ।
ପରମ ପୁରୁଷ ବିଷ୍ଣୁ ତା ମଧ୍ୟରେ ବସି
ମଧ୍ୟାହ୍ନ ଆଦିତ୍ୟ ପ୍ରାୟ ଯାଉଛନ୍ତି ଦିଶି ।
ନୂତନ ମେଘ ସଦୃଶ ଶ୍ୟାମଳ ବଦନ
କିଶୋର ବୟସ ବାଳ ରୂପ ଶୋଭାବନ ।

ଶରତ ଚନ୍ଦ୍ରମା ତୁଲ୍ୟ ଶ୍ରୀମୁଖ ସୁନ୍ଦର
ନୀଳୋତ୍ପଳଦଳ ନେତ୍ର ଦର୍ଶନ ମଧୁର ।
ରୂପକୁ କୋଟିଏ କାମ ନ ହୋଇବେ ସର
ପ୍ରସନ୍ନ ଗୁଣରେ ଲକ୍ଷଚନ୍ଦ୍ର ଶୋଭାଧାମ ।
ସସ୍ମିତ ମୁରଲୀହସ୍ତ ଦିବ୍ୟ ରୂପ ଗୁରୁ
ମଙ୍ଗଳମୟ ଶ୍ରୀହରି ଯୋଗୀଜନ ଗୁରୁ ।
ଅନଳ ଶୁଦ୍ଧ ବାସ ପରିଧାନ କରି
ଦଶନ୍ତ ବିଦ୍ୟୁତବର୍ଣ୍ଣ ନବଘନ ସରି ।
ସର୍ବାଙ୍ଗରେ ସୁବାସିତ ଚନ୍ଦନ ଲେପନ
ବକ୍ଷସ୍ଥଳେ କଉସ୍ତୁଭ ମଣି ଶୋଭମାନ ।
ମାଳତୀ କୁସୁମମାଳ ଜାନୁ ପରିଯନ୍ତେ
ଲମ୍ବିତ ହୋଇଣ ଶୋଭା ପାଏ ଅବିରତେ ।
ମଣି ମାଣିକ୍ୟ ସୁବର୍ଣ୍ଣ ଅଳଙ୍କାର ଦେହେ
ସୁନ୍ଦର ପ୍ରକାଶମାନ ଦିଶେ ଅତିଶୟେ ।
ମସ୍ତକ ଦେଶରେ କେକୀ ପୁଚ୍ଛ ଶୋଭାବନ
ଝଟ ଝଟ ଦିଶୁଥାଏ ନାନାଦି ଭୂଷଣ ।
କେୟୂର କଙ୍କଣ ଆଉ ପାଦରେ ନୂପୁର
ଲମ୍ବି ଅଛି କଣ୍ଠଦେଶେ ଅଷ୍ଟରତ୍ନ ହାର ।
ସୁବର୍ଣ୍ଣ କୁଣ୍ଡଳ ଦେନ କର୍ଣ୍ଣରେ ଶୋଭଇ
ଗଣ୍ଡସ୍ଥଳ କିରଣରେ ଉଜ୍ଜଳ ଦିଶଇ ।
ଶୁଭ୍ରଦନ୍ତ ପନ୍ତି ତାଙ୍କ ମୁକୁତା ପରାୟେ
ଅଧର ଶୋଭା ଦିଶଇ ପକ୍ୱ ବିମ୍ବ ପ୍ରାୟେ ।
ମୁଖର ଶୋଭା ବଢ଼ାଏ ଉନ୍ନତ ନାସିକା
ସଚେତ କୋଟି ବ୍ରହ୍ମାଣ୍ଡ ଶୋଭାଠୁଳ ଏକା ।
ହୋଇଣ ବେଷ୍ଟିତା ପ୍ରଭୁ ଗୋପୀକା ଗଣରେ
ଶୋଭା ପାବନ୍ତି ଚନ୍ଦ୍ର କି ତାରକା ମଧ୍ୟରେ ।
ସେ ସମସ୍ତ ବାଳାମାନେ ନବ ଯଉବନା
ମଣ୍ଡି ହୋଇଛନ୍ତି ରତ୍ନ ହେମମାଳା ଜଣୀ ।
ଆବର ନାନାଦି ଅଳଙ୍କାର ଶୋଭାପାଏ
ବରଣିବ ତାହାପୁଣି ମୁଖେ ଅବା କଏ ।
ଅନଙ୍ଗ ରସରେ ସର୍ବେ ମାନସ ମଜାଇ
ପ୍ରଭୁଙ୍କ ଶ୍ରୀମୁଖପଦ୍ମେ ଦୃଷ୍ଟି ଛନ୍ତି ଦେଇ ।
ସେହି ପ୍ରଭୁ ଅଟନ୍ତି ଯେ ସକଳ ବନ୍ଦିତ
ବ୍ରହ୍ମା ନାରାୟଣ ସାଥେ ମୁଁ ତାଙ୍କର ଭକ୍ତ ।
ରାଧାଙ୍କ ପରାଣ ଧନ ରାସ ଅଧୀଶ୍ୱର
ଅଟନ୍ତି ସେହି ଜଗତ ଜନଙ୍କ ଈଶ୍ୱର ।

ଗୋଲକରେ ତାହାଙ୍କର ବସତି ଅଟଇ
ସଦା ମୁନି ଋଷିଗଣେ ଧ୍ୟାନ ଛନ୍ତି ଦେଇ ।
ଆମ୍ଭର ପରମ ପୂଜ୍ୟ ଦେବତା ଟି ସେହି
ଅକ୍ଷୟ ବ୍ରହ୍ମ ବୋଲିଣ ତାହାଙ୍କୁ ଟି କହି ।
ଆବର ପ୍ରକୃତି ମଧ୍ୟ ଅଟନ୍ତି ସେ ଭିନ୍ନ
ସକଳ ଜୀବ ଆଧାର ବ୍ରହ୍ମ ସନାତନ ।
ତ୍ରିଲୋକ ଈଶ୍ୱର ସର୍ବପୂଜ୍ୟ ଫଳଦାତା
ସମସ୍ତ ଜୀବନ ଶୁଭ ଅଶୁଭ ବିଧାତା ।
ପ୍ରଧାନ ପୁରୁଷ ସେହି ଗୋଲକ ବିହାରୀ
ତ୍ରିଭୁଜ ବିଶାଳ ବକ୍ଷ ଅଟଇ ତାଙ୍କର ।
ନିଜେ ପ୍ରକାଶିତ ହୋଇ ଗୋପାଳ ବେଶରେ
ରହିଛନ୍ତି ପାରିଷଦ ଗଣଙ୍କ ସଙ୍ଗରେ ।
ତାଙ୍କ ସହିତରେ ରାଧା ଆଦି ଗୋପନାରୀ
ବିହାର କରନ୍ତି ନାନା ସୁଖେ ରାସପୁରୀ ।
ସକଳ ପ୍ରାଣୀଙ୍କ ହୃଦେ ଥାନ୍ତି ସେ ପୁରୁଷ
ଜୀବ ଆତ୍ମା ସ୍ୱରୂପରେ ଅଟନ୍ତି ପ୍ରକାଶ ।
ତାହାଙ୍କର ଆଦି ଆଉ ଅନ୍ତ କିଛି ନାହିଁ
ଯେମନ୍ତ ଭାବରେ ଯେହ୍ନେ ଭଜେ ସେହ୍ନେ ପାଇ ।
ସର୍ବଦା ନୂତନ ସେହ୍ନେ ନୁହେଁ ପୁରାତନ
କ୍ଷୟ ନାହିଁ ବୃଦ୍ଧି ନାହିଁ ନାହିଁ ଭିନ୍ନାଭିନ୍ନ ।
ସକଳ ଆଦି ପୁରୁଷ ଅଟନ୍ତି ଶ୍ରୀହରି
ତେଣୁ ତାହାଙ୍କର ନାମ କୃଷ୍ଣ ବୋଲି କରି ।
ତାହାଙ୍କର ଏକ ଅଂଶ ଅଛି ବୈକୁଣ୍ଠରେ
ନାରାୟଣ ନାମେ ଶୋଭା ପାଆନ୍ତି ତ୍ରିପୁରେ ।
ଅତି ମନୋହର ରୂପ ତାଙ୍କର ଅଟଇ
ପାରିଷଦ ଗଣ ମଧ୍ୟେ ବିରାଜନ୍ତି ସେହି ।
ଜଗତ ପାଳନ କର୍ତ୍ତା କମଳାଙ୍କ ବର
ବିଷ୍ଣୁ କଳା ରୂପେ ସେହ୍ନେ ରଖନ୍ତି ସଂସାର ।
ସିନ୍ଧୁସୁତା ଲକ୍ଷ୍ମୀଙ୍କର ସେ ପରାଣ ନାଥ
ମୁନିଗଣ ମାନଙ୍କର ଅଟନ୍ତି ବନ୍ଦିତ ।
ବ୍ରହ୍ମ ତତ୍ତ୍ୱ କଥା ଯାହା ପଚାରିଲେ ମୋରେ
କହିଲି ତ ବିସ୍ତାରିଣ ମୁଁ ତୁମ୍ଭ ଆଗରେ ।
ଏବେ ତବ ଇଚ୍ଛା ହେଉଅଛି ଯାହାକର
ଏପରି କହି ମଉନ ହୋଇଲେ ଈଶ୍ୱର ।
ନାରଦ ଶୁଣିଣ ତାହା ହରଷ ହୋଇଲେ
ଗନ୍ଧର୍ବରାଜ ସ୍ତୋତ୍ରରେ ତାଙ୍କୁ ସ୍ତୁତି କଲେ ।

ତାଙ୍କର ସ୍ତବେ ତୁଷ୍ଟ ହୋଇଣ ଈଶ୍ୱର
ମୃତ୍ୟୁଞ୍ଜୟ ମନ୍ତ୍ର ତୁଲେ ଯାଚିଦେଲେ ବର ।
ସେ ବର ଲଭିଣ ମୁନି ଆନନ୍ଦ ହୋଇଲେ
କରଯୋଡ଼ି ଯିବାପାଇଁ ଅନୁଜ୍ଞା ମାଗିଲେ ।
ଆଦେଶ କରିଲେ ଯହୁଁ ବୃଷଭ ବାହନ
ନାରାୟଣାଶ୍ରମେ ଗଲେ କହେ ଶୌଚ ଦୀନ ।

—*ঃ*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଶିବଙ୍କଠାରୁ ନାରଦଙ୍କର ବ୍ରହ୍ମଜ୍ଞାନ ଶ୍ରବଣେ ନାମ ବତ୍ରିଂଶ ଅଧ୍ୟାୟଃ ।

# ତେତ୍ରିଂଶ ଅଧ୍ୟାୟ

## ନାରାୟଣଙ୍କ ଆଶ୍ରମରେ ନାରଦଙ୍କର ପ୍ରବେଶ

ଶୁଣ ୨ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ ।
ସଉତି ବୋଇଲେ ଶୁଣ ଆହେ ଶଉନକ
ଏଥୁ ଅନନ୍ତରେ ପୁଣି ଋଷିଙ୍କ ନାୟକ ।
ନାରାୟଣଙ୍କ ଆଶ୍ରମେ ପ୍ରବେଶ ହୋଇଲେ
ଅପୂର୍ବ ପୁର ଦର୍ଶନ କରି ମୁଗ୍ଧ ହେଲେ ।
ପୂରିଅଛି ସବୁଆଡ଼େ କଦମ୍ବ କାନନ
ଆବର ନାନାଦି ଲତା ଆଉ ଗୁଳ୍ମମାନ ।
କୋକିଳ କାକଳୀ ବସି ପତ୍ର ଗହଳରେ
କୁହୁ କୁହୁ ତାନେ ରବ କରନ୍ତି ହର୍ଷରେ ।
ସିଂହ ଶାର୍ଦ୍ଦୂଳ ଆବର ହରିଣ ଭଲ୍ଲୁକ
ଏକାନ୍ତେ ବୁଲୁଅଛନ୍ତି ହୋଇଣ ନିର୍ଭୀକ ।
ବାଦହଂସା ଖଳେ କାହା ପ୍ରତିକାର ନାହିଁ
ଏକ ଜନନୀ ସନ୍ତାନ ପରିଛନ୍ତି ରହି ।
ପୁଣି ସେଠାକରେ ଯେଉଁ କାନନ ରହିଛି
ନନ୍ଦନ ବନ ତା ସଙ୍ଗେ ସମ ନୋହେ କିଛି ।
ବହୁ ଚନ୍ଦନ ପାଦପ ସେଠାରେ ଶୋଭଇ
ସୁବାସରେ ମନ୍ଦ ମନ୍ଦ ବାୟୁ ଚମକଇ ।
ଏହିପରି ଦେଖି ୨ ନାରଦ ମହର୍ଷି
ଗଲେ ହରଷରେ ମନେ ହୋଇ ଅତି ତୋଷି ।
ଦେଖିଲେ ଏକ ଆଶ୍ରମ ମଧ୍ୟେ ତପୀମାନେ
ସଭା କରୁଛନ୍ତି ବସି ଆନନ୍ଦିତ ମନେ ।
ତାହାଙ୍କ ମଧ୍ୟରେ ନାରାୟଣ ବସିଛନ୍ତି
ସୂର୍ଯ୍ୟତେଜ ପରିହରେ ତାଙ୍କ ଅଙ୍ଗ ଜ୍ୟୋତି ।
ଯେତେ ମୁନିମାନେ ସେଠି ହୋଇଛନ୍ତି ଠୁଳ
କଳନା କରିବାପାଇଁ ନାହିଁ ତାର ବଳ ।
ଅପ୍ସରା ମାନେ ମିଳିଣ ନୃତ୍ୟ କରୁଛନ୍ତି
ଦେଖିବା ବ୍ୟକ୍ତିଙ୍କ ମନ ହରଣ କରନ୍ତି ।
ଆବର ବାଦ୍ୟବାଦନ କରି ଆନନ୍ଦରେ
ନାଚନ୍ତି କିନ୍ନର ଗଣ ହରଷେ ସେଠାରେ ।
ସଭିଙ୍କ ମୁଖରେ ଶୋଭେ ନାରାୟଣ ନାମ
ଗଦ ଗଦ କଣ୍ଠେ ସେହି ସୁର ଅବିରାମ ।
ରତ୍ନ ସିଂହାସନ ପରେ ବିଜେ କରିବାରୁ
ମନୋହର ଦିଶନ୍ତି ସେ ଯୋଗୀଙ୍କର ଗୁରୁ ।
ପରମବ୍ରହ୍ମ ଶ୍ରୀକୃଷ୍ଣ ମନ୍ତ୍ରକୁ ସତତେ
ଜପ କରୁଛନ୍ତି ବସି ନିଜ ହୃଦଗତେ ।
ଏହିରୂପେ ନାରାୟଣ ମୁନିଙ୍କୁ ନାରଦ
ଦେଖିକରି ଆନନ୍ଦରେ ମନେ ବହି ମୋଦ ।
ପ୍ରଣାମ କରିଣ ଆଗେ ଠିଆ ହେଲେ ଯାଇ
ତାଙ୍କୁ ଦେଖି ନାରାୟଣ ଋଷିକୁଳ ସାଇଁ ।
ଆଶୀର୍ବାଦ କରି ବେଗେ ଆସନୁ ଉଠିଲେ
ବେନିଭୁଜେ ଧରି ଗାଢ଼େ ଆଲିଙ୍ଗନ କଲେ ।
ସେ ଅନ୍ତରେ ପୁଚ୍ଛାକରି କୁଶଳ ବାରତା
ସୁବର୍ଣ୍ଣ ଆସନେ ବସାଇଲେ ଛାଡ଼ି ଚିନ୍ତା ।
ଏ ବାହାରେ ଫଳମୂଳ ଜଳ ଆଣିଦେଇ
ଅତିଥି ସତ୍କାର କଲେ ଆନନ୍ଦିତ ହୋଇ ।
ସେ ସକାଶୁଁ ମୁନିବର ନାରଦ ମହର୍ଷି
ପଥଶ୍ରମ ନିବାରିଲେ ମୁହୂର୍ତ୍ତେକ ବସି ।
ନାରାୟଣ ମୁନିଙ୍କର ମୁଖକୁ ଅନାଇ
ପଚାରିଲେ ସେ ଅନ୍ତରେ ବିନୟକୁ ବହି ।
ବୋଇଲେ ହେ ମୁନିଗଣ ମସ୍ତକ ମଣ୍ଡନ
ଆପଣ ଅଟନ୍ତି ଜ୍ଞାନୀମାନଙ୍କ ରତନ ।

ବେଦଶାସ୍ତ୍ର ଶିକ୍ଷାକରି ପିତାଙ୍କ ମୁଖରୁ
ମନ୍ତ୍ର ଗ୍ରହଣ କଲି ମୁଁ ଶଙ୍କରଙ୍କଠାରୁ ।
ତଥାପି ମୋହର ମନ ନ ହୋଇଲା ତୋଷ
ସେ ସେନ ଆସିଲି ଖୋଜି ଆପଣଙ୍କ ପାଶ ।
ଶ୍ରୀକୃଷ୍ଣ ଚରିତାମୃତ ଶୁଣିବାପାଇଁକି
ବହୁତ ଦିନରୁ ମୁହିଁ ଇଚ୍ଛାଅଛି ଟାକି ।
ଆପଣଙ୍କ ପ୍ରସାଦରେ ପୂର୍ଣ୍ଣ ମନୋରଥ
ହେବ ବୋଲି ହବଅଛି ଆହେ ତପୋବନ୍ତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଆଦି କରି
ଚିନ୍ତା କରନ୍ତି ଯାହାକୁ ମନରେ ବିଚାରି ।
ଏ ବାହାରେ ମୁନିମାନେ ଦିବ୍ୟଚକ୍ଷୁ ଯେଣ
କେଉଁରୂପେ ଦରଶନ କରନ୍ତି ହେ ମୁନି ।
ଅଶେଷ ବ୍ରହ୍ମାଣ୍ଡ ଯାହାଠାରୁ ହୁଏ ଜାତ
ଅନ୍ତଃକାଳେ ପୁଣି କେଉଁଠାରେ ହୁଏ ଲୁପ୍ତ ।
କିଏସେ ବୋଲନ୍ତି ସର୍ବ ଦେବତାଙ୍କ ଈଶ
କିରୂପେ ସର୍ବ ଲୋକରେ ଅଟେ ତାଙ୍କବାସ ।
ସ୍ୱରୂପ କର୍ମ ତାଙ୍କର କେମନ୍ତ ପ୍ରକାରେ
ଏ ସମସ୍ତ ଦୟାକରି କୁହନ୍ତୁ ମୋହରେ ।
ଶ୍ରବଣ କରିଣ ଆପଣଙ୍କ ମୁଖରୁଁ ମୁହିଁ
କୃତାର୍ଥ ହୋଇବି ଜାଣ ଆହେ ତପୀସାଇଁ ।
ନାରଦଙ୍କର ବଚନ ଶୁଣି ଏହିପରି
ହସିହସି ବୋଇଲେକ ଶଙ୍ଖ ଚକ୍ରଧାରୀ ।
ପରମ ଶ୍ରୀକୃଷ୍ଣ ଗାଥା ଆରମ୍ଭ କରିଲେ
ସେ ହରିଙ୍କ ପାଦ ଚିନ୍ତି ନକ୍ଷେବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନାରଦଙ୍କର ନାରାୟଣାଶ୍ରମେ ଗମନ ଓ
ନାରାୟଣଙ୍କ ସହିତ କଥୋପ କଥନେ ନାମ ତ୍ରୟୋତ୍ରିଂଶୋଽଧ୍ୟାୟଃ



## ଚଉତ୍ରିଂଶ ଅଧ୍ୟାୟ

### ଶ୍ରୀକୃଷ୍ଣଙ୍କର ସ୍ୱରୂପ ନାରାୟଣଙ୍କଠାରୁ ନାରଦଙ୍କର ଶ୍ରବଣ ।

ସୌତି ବୋଇଲେ ସକଳ ଋଷିଙ୍କୁ ଅନାଇ
ଏହାପରେ ଯାହାହେଲା ଶୁଣ ମନଦେଇ ।
ନାରଦଙ୍କ ମୁଖରୁଁ ଶୁଣି ଦେବନାରାୟଣ
ବୋଇଲେ ପୁଚ୍ଛିଲ ଯାହା ମନଦେଇ ଶୁଣ ।
ଶ୍ରୀକୃଷ୍ଣଙ୍କ ରୂପଗୁଣ ଅଟଇ ଅପାର
ଶୁଣିବାକୁ ଯେବେ ମନ କଲଛ ତୁମ୍ଭର ।
ସନ୍ତୋଷ ମନରେ ବସି କର ହେ ଶ୍ରବଣ
କହିବା ଶ୍ରୀକୃଷ୍ଣଙ୍କର ରୂପ ଆଉ ଗୁଣ ।
ପରମବ୍ରହ୍ମ ସ୍ୱରୂପ ଶ୍ରୀକୃଷ୍ଣ ଅଟନ୍ତି
ତାଙ୍କଠାରୁ ଚରାଚର ହୁଏ ଉତପତ୍ତି ।
ହରିହର ଗଣପତି ବ୍ରହ୍ମା ଆଦିସୁରେ
ମହାଲକ୍ଷ୍ମୀ ସରସ୍ୱତୀ ଦେବୀ ସଙ୍ଗତରେ ।
ସେ ବ୍ରହ୍ମାଙ୍କ ପାଦ ପଦ୍ମତଳେ କରି ଧ୍ୟାନ
ଏକାନ୍ତ ଦିବସ ରାତ୍ରୀ ଶୁଣ ଦେଇ ମନ ।
ଏ ସଂସାର ଅଟେ ମହା ଗମ୍ଭୀର ସାଗର
ଥଳ ଆଉ କୂଳ କେହି ନ ଜାଣନ୍ତି ଯାର ।
କେତେ ନଦନଦୀ ଆଉ ସାଗର ପର୍ବତ
କେତେ ସ୍ଥଳ କେତେ ଜୀବ ଅଛନ୍ତି ପୂରିତ ।
ତାହା ସହଜରେ କେହି ନ ପାରନ୍ତି ଜାଣି
କିଛିମାତ୍ର ଜାଣିଛନ୍ତି ଦେବ ଶୂଳପାଣି ।
ନିଜେ ଧାତା ଏ ଜଗତ ସର୍ଜନା କରିଛି
କିନ୍ତୁ ତାର ଆଦି ଅନ୍ତ ପାଇନାହିଁ କିଛି ।
ସମସ୍ତ ବ୍ରହ୍ମଙ୍କ ଅଙ୍ଗେ ହୋଇଛନ୍ତି ଲୀନ
ବ୍ରହ୍ମ ସ୍ୱରୂପୀ ଅଟନ୍ତି ବିଷ୍ଣୁ ଭଗବାନ ।
ସେ କୃଷ୍ଣ ଚରଣେ ରହେ ଯାହାଙ୍କର ମତି
ଏ ଭବ ସାଗରୁ ଏକା ସେମାନେ ତରନ୍ତି ।
ବରାହ ରୂପରେ ଦିନେ ଦନ୍ତ ଅଗ୍ରେ ମହୀ
ଟେକି ଧରିଥିଲେ ଭଗବାନ ଦୟାବହି ।
ତାହାଙ୍କ ଲୋମ କୂପରୁ ସଂସାର ଉଆଣ
ମନଦେଇ ଆହେ ବିଧାତାଙ୍କ ସୁତ ଶୁଣ ।
ଏମନ୍ତ ଅଟନ୍ତି ଯେଉଁ ବ୍ରହ୍ମ ସନାତନ
ସହଜେ ଜାଣିବ ଅବା ତାଙ୍କୁ କେଉଁଜନ ।

ହେ ନାରଦ ମୁନି ତୁମ୍ଭେ ପରମ ଆଦରେ
ପ୍ରଣାମ କର ସେ ଦେବ ଦେବଙ୍କ ପଦ୍ମରେ ।
ତୁମ୍ଭ ଆମ୍ଭ ସମସ୍ତରେ ସିଦ୍ଧ ମୁନିଗଣ
ତାହାଙ୍କର ଏକ ଏକ ଅଂଶ ବୋଲି ଜାଣ ।
ଆବର ଦେବତା ଯକ୍ଷ ରାକ୍ଷସ ଗନ୍ଧର୍ବ
ଏକ ଏକ କଳା ଅଂଶ ଅଟନ୍ତି ସେ ସର୍ବ ।
ସେହି ଅନାଦିଙ୍କ ନାଥ ବୈକୁଣ୍ଠ ପୁରୁଷ
ଅଶେଷ ବ୍ରହ୍ମାଣ୍ଡ ଅଟେ ତାହାଙ୍କର ଅଂଶ ।
ଧର୍ମ ଅବତାରେ ନର ପୃଷ୍ଠେ ବସୁନ୍ଧରା
ରଖିଲେ ଗଜ ଶରୀରେ ମସା ଥିଲାପରା ।
ସେହି କୃଷ୍ଣଙ୍କ କଳାରୁ କଚ୍ଛପ ଜନ୍ମିଣ
ବହିଥିଲା ପୃଥିବୀକୁ ସୁଚିତ୍ତରେ ଶୁଣ ।
ଗୋଲୋକର ନାଥ ଶ୍ରୀ କୃଷ୍ଣଙ୍କ ଯଶଗାନ
ବେଦ ପୁରାଣରେ ହୋଇ ନପାରେ ବର୍ଣ୍ଣନ ।
ପଞ୍ଚ ପୁରାଣାଦି ଯେତେ ଇତିହାସ ଗ୍ରନ୍ଥ
ପ୍ରଭୁଙ୍କ ଯଶ ବର୍ଣ୍ଣନେ ନୁହନ୍ତି ସମର୍ଥ ।
ଏ ସକାଶୁ ବୋଲୁଅଛୁ ଆହେ ବତ୍ସପୁତ୍ର
ତାହାଙ୍କୁ ଭଜିଲେ ତୁମ୍ଭେ ହୋଇବ ପବିତ୍ର ।
ବିଶ୍ୱ ଜଗତରେ ତାଙ୍କ ପର କେହି ନାହିଁ
ବ୍ରହ୍ମା ବିଷ୍ଣୁ ରୁଦ୍ର ତାଙ୍କ ଅଂଶ ବୋଲି କହି ।
ସେମାନଙ୍କଠାରୁ ବେଦ ଦେବେ ଦେବେଜାତ
ମାତ୍ର ନ ଜାଣନ୍ତି କେହି ପ୍ରଭୁଙ୍କର ତତ୍ତ୍ୱ ।
ଜଗତଜନନୀ ଦେବୀ ପ୍ରକୃତିଙ୍କୁ ସେହି
ଶ୍ରୀକୃଷ୍ଣ ସର୍ଜନା କଲେ ଜାଣ କହୁଥାଇ ।
ତାଙ୍କଠାରୁ ସୃଷ୍ଟି ଜାତ କଲେ ସେ ଅନ୍ତରେ
ସ୍ଥାବର ଜଙ୍ଗମ ପ୍ରାଣୀ ବିବିଧ ପ୍ରକାରେ ।
ବ୍ରହ୍ମା ଆଦି ଦେବଗଣ ସେହି ପ୍ରକୃତିଙ୍କୁ
ଭଜନ କରନ୍ତି ମନେ ବହୁଣ ପ୍ରୀତିକୁ ।
ପରମ ବ୍ରହ୍ମରୁ ସେହି ନ ଅଟନ୍ତି ଭିନ୍ନ
ଯେଣୁ ତାଙ୍କ ଯୋଗେ ସୃଷ୍ଟି କଲେ ଜନାର୍ଦ୍ଦନ ।
ଯୋଗମାୟା ଆଦିକରି ସମସ୍ତ ଦେବତା
ପ୍ରକୃତିଙ୍କ ମାୟାବଳେ ହୁଅନ୍ତି ମୋହିତା ।
ପରମ ପୁରୁଷଙ୍କର ଶକ୍ତିରୂପା ସେହି
ତାହାଙ୍କର ତତ୍ତ୍ୱ ଜାଣି ନ ପାରଇ କେହି ।
ତାଙ୍କ ବିନା ପରମାତ୍ମା ପଦାର୍ଥ ଘଟନା
କରି ନ ପାରନ୍ତି ଜାଣ ଆହେ ମହାମନା ।

ଏବେ ଆମ୍ଭ ବୋଲକରି ବେଗ ହୋଇ ତୁମ୍ଭେ
ଘରକୁ ଯାଇ ବିବାହ କର ବୋଲୁଁ ଆମ୍ଭେ ।
ପିତାଙ୍କ ଆଦେଶ ରକ୍ଷା ନ କଲେ ତୁମ୍ଭର
ମଙ୍ଗଳ ନୋହିବ ଜାଣ ଆହେ ତପୀବର ।
ଆନନ୍ଦରେ ପାଳଇ ଯେ ପିତାଙ୍କର କଥା
ସବୁଠାରେ ପୂଜ୍ୟ ସେହି ହୁଅନ୍ତି ସର୍ବଥା ।
ଆପଣାର ଭାର୍ଯ୍ୟାକୁ ବସ୍ତ୍ର ଅଳଙ୍କାର
ଚନ୍ଦନ କୁଙ୍କୁମ ଦେଇ ଯେ ପୁରୁଷବର ।
ସନ୍ତୋଷ କରଇ ନିତ୍ୟେ ତାଠାରେ ପ୍ରକୃତି
ସନ୍ତୁଷ୍ଟ ହୋଇଣ ତାର ମଙ୍ଗଳ କରନ୍ତି ।
ଯେରୂପେ ବିପ୍ରଙ୍କଠାରୁ ପୂଜା ପାଇକରି
ଆନନ୍ଦ ଲାଭ କରନ୍ତି ପ୍ରଭୁ ନରହରି ।
ସେରୂପେ କାମିନୀ ପୂଜା କଲେ ମହାମାୟା ।
ପ୍ରକୃତି ସନ୍ତୋଷ ହୋଇ କରନ୍ତି ସୁଦୟା
କାମିନୀ ରୂପରେ ସେହି ପ୍ରକୃତିଟି ଜାଣ
ଜଗତ ମଧ୍ୟରେ କରୁଅଛନ୍ତି ଭ୍ରମଣ ।
କାମିନୀଙ୍କୁ ଅପମାନ କରେ ଯେଉଁ ଲୋକ
ତା ଠାରେ ପ୍ରକୃତି ନଷ୍ଟ ହୁଅନ୍ତି ବିମୁଖ ।
ପତି ପୁତ୍ର ସମ୍ପତ୍ତିରେ ସତୀ ରମଣୀକି
ପୂଜା କଲେ ଯେଉଁ ଲୋକ ବଢାଏ ପ୍ରୀତିକି ।
ପ୍ରକୃତିଙ୍କ ଦୟାବଳେ ତାହାର କଲ୍ୟାଣ
ହୁଅଇ ସନ୍ଦେହ ଏଥି ନାହିଁ କହୁଁ ଜାଣ ।
ପୂର୍ଣ୍ଣବ୍ରହ୍ମ ସ୍ୱରୂପଣୀ ସେ ମୂଳ ପ୍ରକୃତି
ଆପଣାକୁ ପାଞ୍ଚଭାଗ କରି ସେ ଅଛନ୍ତି ।
ପରମାତ୍ମ ଶ୍ରୀକୃଷ୍ଣଙ୍କ ଦ୍ୱିତୀୟ ଜୀବନ
ଅଟନ୍ତି ରାଧିକା ବୋଲି ଯାହାଙ୍କର ନାମ ।
ସେହିଟି ପ୍ରଥମଭାଗ ପ୍ରକୃତି ବୋଲନ୍ତି
ଯେଉଁ ଦେବୀ ନାରାୟଣଙ୍କର ପ୍ରିୟବତୀ ।
ମହାଲକ୍ଷ୍ମୀ ବୋଲି ନାମ ଅଟେ ତାହାଙ୍କର
ପାଳନ କରନ୍ତି ସେହି ଅଶେଷ ଭଣ୍ଡାର ।
ପ୍ରକୃତି ଦ୍ୱିତୀୟଭାଗ ବୋଲି ତାଙ୍କୁ ଜାଣ
ବଚନ ଦେବତା ସେହୁ ଅଟନ୍ତି ସେ ପୁଣ ।
ସକଳ ଲୋକରେ ପୂଜ୍ୟ ନାମ ସରସ୍ୱତୀ
ପ୍ରକୃତି ଦେବୀ ତୃତୀୟ ଭାଗ ସେ ଅଟନ୍ତି ।
ବିଧାତାଙ୍କ ପ୍ରିୟା ସେହୁ ସର୍ବ ବେଦ ମାତା
ସାବିତ୍ରୀ ତାହାଙ୍କ ନାମ ସର୍ବ ପତିବ୍ରତା ।

ଏ ଜୀବ ମାନଙ୍କ ପାଇଁ ଦୁଇ ଗୋଟି ପଥ
ସୃଷ୍ଟି ଆରମ୍ଭରୁ ବ୍ରହ୍ମ କରିଛନ୍ତି ପ୍ରସ୍ତୁତ ।
ପାପ ଆଉ ପୁଣ୍ୟ ଏହି ଦୁଇ ଗୋଟି ଜାଣ
ଅଟଇ ଅସଲ ମାର୍ଗ ମନଦେଇ ଶୁଣ ।
ପୁଣ୍ୟ କଥାକୁ କହିଲି ସଂକ୍ଷେପରେ ମୁହିଁ
ପାପର ଗାଥା ଶୁଣନ୍ତୁ ମନକର୍ଣ୍ଣ ଦେଇ ।
ଜୀବନରେ ଦୟା ନ କରେ ଯେବଣଟି ଜନ
ମହା ପାତକୀ ମାନଙ୍କ ମଧ୍ୟେ ହୁଏ ଗଣ୍ୟ ।
ଆହୁରି ମଧ୍ୟ ଅନେକ ସୁର ଅଛିରହି
ଗୋଟି ୨ କରି ତାହା ଶୁଣ ମନଦେଇ ।
ପରଧନ ଦେଖି ଯେହୁ ହାଇଁପାଇଁ ହୁଏ
ରଜନୀ ଅର୍ଦ୍ଧରେ ଆସି ଚୋରିକରି ନିଏ ।
ଆଉରି ପର ରମଣୀ ଦେଖି ଲୋଭକରେ
ନାନା ଅତ୍ୟାଚାର କରେ ତାହାର ସାଙ୍ଗରେ ।
ଅତିଥି ଅଭ୍ୟାଗତଙ୍କୁ ଦେଖିଲେ ଦୁଆରେ
ଭିକ୍ଷା ନ ଦେଇ ଫେରାଇ ଦିଏ ନିରାଶରେ ।
ପୁଣି ଗୋପନରେ କରେ ଯେହୁ ଭ୍ରୂଣହତ୍ୟା
ଆଉରି ଯେ ହୁଏ ପରନିନ୍ଦା କାତରତା ।
ମହାପାପୀଙ୍କର ମଧ୍ୟେ ଗଣା ସେ ହୁଅଇ
ବସୁଧା ତାହାର ଭାର ସହି ନ ପାରଇ
ଅନନ୍ତ ମୁଖରୁ ଅଗ୍ନି ହୋଇ ଉଦ୍‌ଗାରଣ
ଦହଇ ପାତାଳ ସପ୍ତରେ ତ୍ରିଭୁବନ ।
ତାପରେ ଜଳ ବରଷେ ରଜନୀ ଦିବସ
ତା ଦେଖି ବ୍ରହ୍ମ ପୁରୁଷ ହୁଅନ୍ତି ଅଦୃଶ୍ୟ ।
ଆକାଶକୁ ବ୍ୟାପି ଜଳମାନ ବ୍ୟାପିଯାଏ
ସକଳ ଜୀବ ଜଗତ ନାଶ ହୋଇଯାଏ ।

ବିରାଟ ପୁରୁଷ ତାହା ଦେଖି ନୟନରେ
ସକଳ ଜୀବ ମାନଙ୍କୁ ଭରିଣ ଗର୍ଭରେ ।
ମହାଶୂନ୍ୟ ପୁରେ ଯାଇ ବିଶ୍ରାମ କରନ୍ତି
ଏହିପରକାରେ କେତେ ଯୁଗଯାଏ ବିତି ।
ତାପରେ ମନେ ବିଚାରି ସେ ବ୍ରହ୍ମ ପୁରୁଷ
ନିଦ୍ରା ତେଜି ଚାରିଆଡ଼େ ଦେଖନ୍ତି ଅବଶ୍ୟ ।
ସ୍ଥଳ ନାହିଁ ତିଳେମାତ୍ର ଘୋଟିଅଛି ଜଳ
ଗୋଟିଏ ନାହାନ୍ତି ଜୀବ ସକଳେ ନିର୍ମୂଳ ।
ତେଣୁ ନିମିଷକ ମଧ୍ୟେ ମନରେ ବିଚାରି
ଅଙ୍ଗରୁ ପୁରୁଷ ଏକ ଦିଅନ୍ତି ଜାତକରି ।
ସେହି ପୁରୁଷ ଅଟଇ ପ୍ରଥମ ପୁରୁଷ
ତାହାଙ୍କୁ ଆଦେଶ ଦିଅନ୍ତି ପ୍ରଭୁ ପୀତବାସ
ବ୍ରହ୍ମରୂପୀ ନାରାୟଣଙ୍କର ଆଦେଶରେ
ଅରୂପରୁ ରୂପ ଜାତ ହୁଅଇ ମର୍ତ୍ତ୍ୟରେ ।
ତାପରେ ଏହି ଜଗତ ହୁଅଇ ନିର୍ମାଣ
ସଭିଙ୍କ ମୂଳରେ ବ୍ରହ୍ମସାର ଅଟେ ଜାଣ ।
ବ୍ରହ୍ମ ଏକମାତ୍ର ମୂଳ ଆଉ ସର୍ବେ ଡାଳ
ଡାଳରୁ ଶାଖା ପ୍ରଶାଖା ପତ୍ର ଫୁଲ ଫଳ ।
ସବୁ ଯାକ ହୋଇଅଛି ବ୍ରହ୍ମଠାରୁ ଜାତ
ପ୍ରତ୍ୟେକ ଜୀବର ବ୍ରହ୍ମ ହୋଇଛନ୍ତି ସୃଷ୍ଟ ।
ଏଣୁ ସାଧୁ ସୁଜ୍ଞ ପାଦେ କରେ ନମସ୍କାର
ବ୍ରହ୍ମ ନାମ ଜପି ଏ ସଂସାରୁ ହୁଅ ପାର ।
ଏହି ବ୍ରହ୍ମ ସନାତନ ସର୍ବ ପଠେ ସାର
ଅଧମ କ୍ଷେତ୍ର ମୋହନ ସେ ପାଦେ ଜୁହାର
ପ୍ରଥମ ଖଣ୍ଡ ଏଠାରେ ହୋଇଲା ସମ୍ପୂର୍ଣ୍ଣ
ନ ଧରିବ ମୋର ଦୋଷ ସାଧୁ ସୁଜ୍ଞଜନ ।

## ପ୍ରଥମଖଣ୍ଡ ସମାପ୍ତ



ମୁଦ୍ରାକର— ଶଶୀ ବେଓ୍ୟା, ଶୈଳା ପ୍ରିଣ୍ଟିଂ ପ୍ରେସ୍ ଅଲିଶା ବଜାର, କଟକ ୨